

ଡକ୍ଟର ହରିଶ୍ଚନ୍ଦ୍ର ସାହୁ (୧୯୫୮) ଦର୍ଶନ ଶାସ୍ତ୍ର ଅଧ୍ୟାପକ ଭାବରେ ଓଡ଼ିଶାରେ ସୁପରିଚିତ। ରେଭେନ୍ସା, ଗଙ୍ଗାଧର ମେହେର ଓ ବିଜେବି ଭଳି ଖ୍ୟାତିସମ୍ପନ୍ନ କଲେଜରେ ଶିକ୍ଷାଦାନ କରି ସୁନାମ ଅର୍ଜନ କରିଛନ୍ତି। ଅନେକ ଉପାଦେୟ ପୁସ୍ତକ ରଚନା କରିବା ସହିତ ଗବେଷଣା ଓ ଶିକ୍ଷାଦାନ କ୍ଷେତ୍ରରେ ସେ ନିଜର କୃତିତ୍ୱ ପ୍ରଦର୍ଶନ କରିଛନ୍ତି। ସମ୍ପ୍ରତି କିସ୍ ମାନିତ ବିଶ୍ୱବିଦ୍ୟାଳୟରେ ୨୦୧୯ ମସିହାରୁ ଭୀମ ଭୋଇ ରିସର୍ଚ୍ଚ ଚେୟାର ପ୍ରଫେସର ଭାବରେ ଅବସ୍ଥାପିତ। ଭୀମ ଭୋଇଙ୍କ ଅନବଦ୍ୟ କୃତି ଗୁଡ଼ିକୁ ଲୋକଲୋଚନକୁ ଆଣିବା ଓ ବିଶ୍ୱଜନାଦୃତ କରିବା ଲକ୍ଷ୍ୟରେ ତାଙ୍କର ଉଦ୍ୟମ ଜାରି ରହିଛି। ଡକ୍ଟର ସାହୁଙ୍କ ସମ୍ପାଦିତ ଇଂରାଜୀ ପ୍ରବନ୍ଧ ସଂକଳନ *The Philosophy of Bhima Bhoi and Mahima Dharma* ଓ *The Philosophical Reflections on Bhima Bhoi and Mahima Dharma* କିସ୍ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କରିଅଛି।

"ଯେହ୍ନେ ଜଳଧାର ସେହି ପରକାର
ଯନ୍ତ୍ରରେ ସୂତ୍ରକୁ ଧରି ।
ଚିଆଁଇ ଚୈତନ୍ୟ ଜୀବ-ପରମକୁ
ଭେଟାଭେଟି କର ହରି ॥"

– ସନ୍ଥକବି ଭୀମ ଭୋଇ

# ଦିବ୍ୟଦ୍ରଷ୍ଟା ଭୀମଭୋଇ

ସଂପାଦନା

**ହରିଶ୍ଚନ୍ଦ୍ର ସାହୁ**




କିସ୍ ମାନିତ ବିଶ୍ୱବିଦ୍ୟାଳୟ

ଭୁବନେଶ୍ୱର

**ଦିବ୍ୟଦ୍ରଷ୍ଟା ଭୀମଭୋଇ**

ସଂପାଦନା :

**ହରିଶ୍ଚନ୍ଦ୍ର ସାହୁ**

ପ୍ରଫେସର, ଭୀମଭୋଇ ରିସର୍ଚ୍ଚ ଚେୟାର

କିସ୍ ମାନିତ ବିଶ୍ୱବିଦ୍ୟାଳୟ

ଭୁବନେଶ୍ୱର, ଓଡ଼ିଶା

ପ୍ରକାଶକ: **କୁଳସଚିବ,**

କିସ୍ ମାନିତ ବିଶ୍ୱବିଦ୍ୟାଳୟ

ଭୁବନେଶ୍ୱର - ୭୫୧୦୨୪

ପ୍ରଥମ ପ୍ରକାଶ: ୨୦୨୨

ମୁଦ୍ରଣ: ପ୍ରିଣ୍ଟଟେକ୍ ଅଫ୍‌ସେଟ୍ ପ୍ରା.ଲି., ଭୁବନେଶ୍ୱର

ମୂଲ୍ୟ : ₹ ୪୦୦

**Dibyadrasta Bhima Bhoi**

Edited by :

**Harischandra Sahoo**

Professor, Bhima Bhoi Research Chair

Kalinga Institute of Social Sciences (KISS)

Deemed to be University, Bhubaneswar, Odisha

Publisher **Registrar,**

Kalinga Institute of Social Sciences (KISS)

Deemed to be University, Bhubaneswar - 751024

1st Edition : 2022

ISBN 978-81-957941-0-2



Printed at : Print-Tech Offset Pvt. Ltd. BBSR -24

Price : ₹ 400

# ଅଗ୍ରଲେଖ



ଜନଜାତି ଆଦିବାସୀ ଛାତ୍ରଙ୍କର ଶିକ୍ଷାର ପ୍ରସାର ପାଇଁ ଆବାସିକ ଶିକ୍ଷାନୁଷ୍ଠାନ ଭାବରେ କିସ୍ ବିଶ୍ୱବିଦ୍ୟାଳୟ ସାରାବିଶ୍ୱରେ ସ୍ୱତନ୍ତ୍ର ସ୍ଥାନାଧିକାର କରିଛି। ଶିକ୍ଷାଦାନ ସହ ଏଠାରେ ଛାତ୍ରମାନଙ୍କର ଶାରିରୀକ, ମାନସିକ ବିକାଶ ପାଇଁ ସେମାନଙ୍କର କ୍ରୀଡା, କଳା ଇତ୍ୟାଦିରେ ଥିବା ରୁଚିକୁ ଅଗ୍ରାଧିକାର ଦିଆଯାଇଛି। ଉଚ୍ଚତର ଗବେଷଣା ପାଇଁ ବିଶେଷ କରି ଏ ଜାତିର ଚିର ନମସ୍ୟ ଓ ପ୍ରାତଃ ସ୍ମରଣୀୟ ମହାପୁରୁଷମାନଙ୍କ ନାମରେ ସାତଟି ରିସର୍ଚ୍ଚ ଚେୟାର ପ୍ରତିଷ୍ଠା କରାଯାଇଛି। ସେ ଗୁଡିକ ହେଲା ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ, ସନ୍ଥକବି ଭୀମ ଭୋଇ, ପ୍ରବାଦପୁରୁଷ ବିଜୁପଟ୍ଟନାୟକ, ବାବାସାହେବ ଭୀମରାଓ ଆମ୍ବେଦକର, ସହୀଦ ଲକ୍ଷ୍ମଣ ନାୟକ ଓ ଭଗବାନ ବିର୍ସାମୁଣ୍ଡା ଗବେଷଣା ଚେୟାର। ଗବେଷଣା ଚେୟାର ମାଧ୍ୟମରେ ଏସବୁକୁ ଉତ୍କର୍ଷ କେନ୍ଦ୍ରଭାବରେ ଗଢ଼ିତୋଳିବା ଲକ୍ଷ୍ୟରେ ବିଭିନ୍ନ ଗବେଷଣାତ୍ମକ ପୁସ୍ତକ ରଚନା କରିବା ଓ କର୍ମଶାଳା ତଥା ଆଲୋଚନାଚକ୍ର ଆୟୋଜନ କରି ଏମାନଙ୍କର ଅନାଲୋଚିତଦିଗଗୁଡିକୁ ଲୋକଲୋଚନକୁ ଆଣିବା ଲକ୍ଷରେ ଚେୟାର ପ୍ରଫେସରମାନେ ସର୍ବଦା ଚେଷ୍ଟିତ।

ସନ୍ଥକବି ଭୀମ ଭୋଇ ମହିମା ଧର୍ମର ପ୍ରବକ୍ତା ଥିଲେ। ଜଣେ କ୍ରାନ୍ତିକାରୀ ବ୍ୟକ୍ତିତ୍ୱ ଭାବରେ ତତ୍କାଳୀନ ସମାଜରେ ଥିବା କୁସଂସ୍କାର, ଜାତିପ୍ରଥା, ମୂର୍ତ୍ତିପୂଜା ବିରୁଦ୍ଧରେ ସଂଗ୍ରାମ କରି ଏବଂ ଆଦର୍ଶ ମାନବ ସମାଜ ଗଢି ତୋଳିବା ତାଙ୍କର ଉଦ୍ଦେଶ୍ୟ ଥିଲା। ସେ ସମନ୍ୱୟବାଦୀ ଧାର୍ମିକ ଚେତନାର ଉଦ୍‌ଗାତା ଏବଂ ଜନଜାଗରଣର ଜଣେ ମହାନ୍ ଯୁଗପ୍ରବର୍ତ୍ତକ ଥିଲେ। ସେ ନିଜ ଚିନ୍ତାଧାରାକୁ ଲୋକଙ୍କ ଭାଷାରେ ପ୍ରକାଶ କରିଥିଲେ ଯାହାକି ଭଗବତପ୍ରାପ୍ତି ନିମିତ୍ତ ଏବଂ ସାଧନାର ପଥ ପ୍ରଦର୍ଶନ ପାଇଁ ଉଦ୍ଦିଷ୍ଟ। ନିଃସନ୍ଦେହରେ ସେ ଜଣେ ଅନାସକ୍ତ ଯୋଗୀ ଏବଂ ସନ୍ଥ ଥିଲେ ଯେକି ବିଶ୍ୱର କଲ୍ୟାଣ ପାଇଁ ପରମ କାରୁଣିକ ମହିମାଙ୍କର ଶରଣାପନ୍ନ ହୋଇ ନିଜର ଜୀବନକୁ ଉତ୍ସର୍ଗୀକୃତ କରିଥିଲେ। ସାଂପ୍ରତିକ ସମାଜ ପାଇଁ ଭୀମ ଭୋଇଙ୍କ ଚିନ୍ତାଧାରାର ପ୍ରାସଙ୍ଗିକତା ଯେ ରହିଛି ତାହା ସହଜରେ ଅନୁମେୟ। ଭୀମ ଭୋଇ ଏକ ବିଦ୍ୟଦ୍ରଷ୍ଟା ଯାହାଙ୍କ ବାଣୀ କେବଳ ତତ୍କାଳୀନ ସମାଜ ପାଇଁ ଉପାଦେୟ ତା ନୁହେଁ, ବରଂ ସେ ଆଗାମୀ ଯୁଗ ପାଇଁ ମଧ୍ୟ ଏକ ନୂତନ ଆଲୋକର ବାର୍ତ୍ତାବହ। ଏହି ପୁସ୍ତକଟି ସମସ୍ତଙ୍କ ପାଇଁ ଯେ ଏକ ଅଧ୍ୟାତ୍ମିକ ଚେତନାର ଉଦ୍ରେକ କରିପାରିବ ଏବଂ ଏକ ନୈତିକ ମାନବ ସମାଜର ଗଠନ କରିପାରିବ ତାହା କୁହାଯାଇପାରେ। ଏହାର ସଂକଳକ ପ୍ରଫେସର ହରିଶ୍ଚନ୍ଦ୍ର ସାହୁଙ୍କୁ ମୁଁ ସାଧୁବାଦ ଜଣାଉଛି।

**ପ୍ରଫେସର ଡକ୍ଟର ଅଚ୍ୟୁତ ସାମନ୍ତ**

ପ୍ରତିଷ୍ଠାତା କିଟ୍ ଓ କିସ୍

ପ୍ରଫେସର ଦୀପକ କୁମାର ବେହେରା
କୁଳପତି
କିସ୍ ମାନିତ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର



# ଅଭିମତ

ସନ୍ଥ ପରମ୍ପରାର ଅନ୍ୟତମ ବ୍ୟକ୍ତିତ୍ୱ ହେଲେ କବି ଭୀମ ଭୋଇ। ସର୍ବଭାରତୀୟ ସ୍ତରରେ କବୀର, ନାନକ, ତୁକାରାମ ଇତ୍ୟାଦିଙ୍କ ଭଳି ତାଙ୍କୁ ସନ୍ଥକବିର ମାନ୍ୟତା ଦିଆଯାଇଛି। ତାଙ୍କର କାଳଜୟୀ ଭଜନ, ଜଣାଣ, ସ୍ତୁତି ଇତ୍ୟାଦି କବି ସାରଳା ଦାସ, ସାଲବେଗ, ଜୟଦେବ ଇତ୍ୟାଦିଙ୍କ କୃତି ଭଳି ଓଡ଼ିଶାର ପୁରପଲ୍ଲୀରେ ବିଶେଷ କରି ମହିମାପନ୍ଥୀମାନଙ୍କ ମଧ୍ୟରେ ଆଦୃତ। ଏ ଜୀବ ଜଗତର ସ୍ରଷ୍ଟା ଏକ ଏବଂ ଅଦ୍ୱିତୀୟ। ସେ ହେଉଛନ୍ତି ମହିମା ମହାମେରୁ। ଭୀମ ମହିମା ଗୋସାଇଁଙ୍କୁ ଜଗତର କଲ୍ୟାଣ ପାଇଁ ପ୍ରାର୍ଥନା କରିଛନ୍ତି। ଓଡ଼ିଶାରେ ଭକ୍ତିଧାରାର ଆଲୋଡ଼ନ ସୃଷ୍ଟି କରିଥିବା ଶ୍ରୀ ଚୈତନ୍ୟ ଓ ପଞ୍ଚସଖା ପରମ୍ପରା ସହ ତାଙ୍କର ଭାବଗତ ସାମଞ୍ଜସ୍ୟ ଥିବାର ଲକ୍ଷ୍ୟ କରାଯାଏ। ବ୍ରହ୍ମାନୁଭବ କରିବା ମନୁଷ୍ୟ ଜୀବନର ଚରମ ଲକ୍ଷ୍ୟ । ନିଷ୍କାମ ଭକ୍ତି ଓ ଶ୍ରଦ୍ଧା ମାଧ୍ୟମରେ ଈଶ୍ୱରଙ୍କ ସାନ୍ନିଧ୍ୟ ଲାଭ କରିହେବ- ଏହାହିଁ ଥିଲା ତତ୍ତ୍ୱଦର୍ଶୀ ଓ ଦିବ୍ୟଦ୍ରଷ୍ଟା ଭୀମ ଭୋଇଙ୍କ ଦର୍ଶନର ମୂଳମନ୍ତ୍ର। ଅଭିଜ୍ଞ ପ୍ରାବନ୍ଧିକମାନଙ୍କ ପ୍ରବନ୍ଧଗୁଡ଼ିକ ସଂକଳନ କରିଛନ୍ତି କିସ୍ ବିଶ୍ୱବିଦ୍ୟାଳୟର ଭୀମ ଭୋଇ ରିସର୍ଚ୍ଚ ଚେୟାର ପ୍ରଫେସର ହରିଶ୍ଚନ୍ଦ୍ର ସାହୁ। ଏହି ପୁସ୍ତକ ପ୍ରକାଶନ ଅବକାଶରେ ପ୍ରଫେସର ସାହୁଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଇବା ସହ ପୁସ୍ତକଟିର ଲୋକପ୍ରିୟତା କାମନା କରୁଛି।

ପ୍ରଫେସର ଦୀପକ କୁମାର ବେହେରା

# ଉପକ୍ରମଣିକା

ଏକ ଯୁଗ-ସନ୍ଧିରେ, ପଥ-ଭ୍ରଷ୍ଟ ସମାଜକୁ ଦିଗଦର୍ଶନ ଦେବାପାଇଁ ଓ ସତ୍ୟ ଧର୍ମର ପ୍ରତିଷ୍ଠାପାଇଁ ମହିମା ସ୍ୱାମୀଙ୍କର ଧରାବତରଣ ହୁଏ। ଧର୍ମାନ୍ଧତା, ଅନ୍ୟାୟ, ଅତ୍ୟାଚାର, ଅସାଧୁତା ଓ ମୂଲ୍ୟବୋଧର ଅବକ୍ଷୟ, ସମାଜକୁ କଳୁଷିତ କରିଥିଲା ଏହି ସମୟରେ। ମହିମା ଗୋସାଇଁ ସାଧନାରେ ସିଦ୍ଧି ଲାଭ କଲାପରେ ଗୋବିନ୍ଦ ଦାସଙ୍କୁ ପ୍ରଥମ ଶିଷ୍ୟ ଭାବରେ ଓ ପରବର୍ତ୍ତୀ ସମୟରେ ଭୀମ ଭୋଇଙ୍କୁ ଦ୍ୱିତୀୟ ଶିଷ୍ୟ ଭାବରେ ଗ୍ରହଣକରି, ମହିମା ଧର୍ମରେ ଦୀକ୍ଷିତ କରାଇଲେ। ଭୀମଙ୍କ ପଦାବଳୀ ରଚନାର ଦକ୍ଷତା ଅନୁଭବ କରି ତାଙ୍କୁ କାବ୍ୟକବିତା ରଚନା କରିବାକୁ ନିର୍ଦ୍ଦେଶ ଦେଲେ। ସାଧାରଣ ଜନତା ପାଖରେ ଏହି ନୂତନ ଧର୍ମ କିପରି ପହଞ୍ଚିପାରିବ ସେଥିପାଇଁ ଭୀମଙ୍କୁ ସେ ଆଜ୍ଞା ଦେଲେ। ମହିମାଙ୍କର ଅପାର କୃପାଲାଭକରି ଭୀମ ଆଶୁକବି ପାଲଟିଗଲେ। ମୁଖରୁ ତାଙ୍କର ଉଚ୍ଚାରିତ ହେଲା ଅଶେଷ ପଦ୍ୟାବଳୀ। ଏହା ଥିଲା ଗୁରୁଙ୍କର ଆଶୀର୍ବାଦ। ସେ ହେଲେ ଦିବ୍ୟଦ୍ରଷ୍ଟା ଓ ଅର୍ନ୍ତଦୃଷ୍ଟିରେ ଜାଣିପାରିଲେ ଯେ ସଂସାରର ଏହି କଳୁଷିତ ବାତାବରଣର ବିଲୋପ ପାଇଁ ଜନ ସଚେତନା ଓ ଜନଜାଗରଣ ଆବଶ୍ୟକ। ସାଧାରଣ ଲୋକଙ୍କ ବୋଧଗମ୍ୟ ହେଲା ଭଳି, ସେମାନଙ୍କର ଭାଷାରେ ଭୀମ ରଚନା କରି ଚାଲିଲେ ଅସଂଖ୍ୟ ଜଣାଣ, ଭଜନ ଓ ଚଉତିଶା ଯାହା ଗୁରୁ ମହିମା ସ୍ୱାମୀଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଥିଲା। ଏ ପୃଥିବୀରୁ ପାପଭାର ନାଶକରି କିପରି ସତ୍ୟ ମହିମା ଧର୍ମ ପ୍ରତିଷ୍ଠା ହେବ ତାହାହିଁ ଥିଲା ଭୀମଙ୍କ ଏକ ମାତ୍ର ଲକ୍ଷ୍ୟ। କବିତା ଗୁଡିକ ରଚନା ହେଲା ପରେ ସେସବୁ ଗୁରୁଙ୍କ ଅନୁମୋଦନ ପାଇଁ ପଠାଯାଉଥିଲା ଓ ଗୁରୁଙ୍କର ଆଜ୍ଞାରେ ସେସବୁ ଜନସାଧାରଣଙ୍କ ନିକଟରେ ସୁଲଳିତ କଣ୍ଠରେ ଉପସ୍ଥାପନା କରାଯାଉଥିଲା। ଏ ପରି ଭାବରେ ଘଟଣା ଚକ୍ରରେ ସାଧାରଣ ଭୀମସେନ ଭୋଇ ପାଲଟିଗଲେ ଦିବ୍ୟଦ୍ରଷ୍ଟା କବି ଭୀମ ଭୋଇ। କବି ଭୀମଙ୍କ

କବିତ୍ୱରେ ଅନୁପ୍ରାଣିତ ହୋଇ ମହିମା ଧର୍ମାବଲମ୍ବୀ ହେବା ପାଇଁ ଜନସାଧାରଣଙ୍କ ଭିତରେ ଉତ୍ସାହ ସୃଷ୍ଟି ହେଲା । ଓଡ଼ିଶାର ପୁରପଲ୍ଲୀରେ ଭୀମଙ୍କ ଭଜନ ଆଦୃତ ହେଲା । ମହିମା ଧର୍ମ ଓଡ଼ିଶା ଓ ଏହାର ନିକଟବର୍ତ୍ତୀ ରାଜ୍ୟମାନଙ୍କୁ ପ୍ରସାରିତ ହେଲା । ମହିମା ଧର୍ମ ପାଲଟିଗଲା ସାଧାରଣ ଲୋକଙ୍କର ଧର୍ମ ।

ସଂକଳିତ ପ୍ରବନ୍ଧଗୁଡ଼ିକରେ ରହିଛି ମହିମା ଧର୍ମ ଓ ଭୀମ ଭୋଇଙ୍କ ସମ୍ପର୍କରେ ଗବେଷଣାତ୍ମକ ଆଲେଖ୍ୟ । ଏ ସଂକ୍ରାନ୍ତରେ ଦେବେନ୍ଦ୍ର କୁମାର ଦାଶଙ୍କ ବିଶ୍ଳେଷଣ ଅତ୍ୟନ୍ତ ଉପାଦେୟ । ସେହି ଭଳି ଭୀମ ଭୋଇଙ୍କୁ କିପରି ବିଜୟଚନ୍ଦ୍ର ମଜୁମଦାର ଲୋକଲୋଚନକୁ ଆଣିଲେ ସେ ବିଷୟରେ ପ୍ରଫେସର ବସନ୍ତ କୁମାର ପଣ୍ଡାଙ୍କ ଆଲେଖ୍ୟ ଆମକୁ ସୂଚନା ଦେଇଥାଏ । ପ୍ରଫେସର ମଧୁସୂଦନ ପତି ଭୀମ ଭୋଇଙ୍କ ଜୀବନକାଳ ଭିତରେ ଘଟିଥିବା ନୈରାଶ୍ୟ, ଦୈନ୍ୟ ଭାବ ଓ ଯନ୍ତ୍ରଣାର ଚିତ୍ର ବର୍ଣ୍ଣନା କରିଛନ୍ତି । ଡଃ ସତ୍ୟାନନ୍ଦ ସ୍ୱାଇଁ ଓ ଡଃ ଆଦିକନ୍ଦ ସାହୁ ଭୀମ ଭୋଇଙ୍କୁ ଦିବ୍ୟଦ୍ରଷ୍ଟା ଓ ଯୁଗ ସ୍ରଷ୍ଟା ଭାବରେ ବର୍ଣ୍ଣନା କରିଛନ୍ତି । ପ୍ରଫେସର ବୈଷ୍ଣବ ଚରଣ ସାମଲ ଓ ଡଃ ହରିଶ୍ଚନ୍ଦ୍ର ସାହୁଙ୍କ ସନ୍ଦର୍ଭ ଭୀମ ଭୋଇଙ୍କୁ ଭକ୍ତି ଧାରାର ପ୍ରବକ୍ତା, ଉତ୍ତମ କବି ଓ ଦାର୍ଶନିକର ମାନ୍ୟତା ପ୍ରଦାନ କରିଛନ୍ତି, ଭୀମଙ୍କ ଜ୍ଞାନମିଶ୍ରାଭକ୍ତିର ସପକ୍ଷରେ ନିଜର ମତଦାନ କରିଛନ୍ତି । ଅଧ୍ୟାପକ ବିଶ୍ୱରଞ୍ଜନ ସନ୍ଥକବି ଭୀମ ଭୋଇ ଓ ଉତ୍କଳମଣି ଗୋପବନ୍ଧୁଙ୍କର ଏକ ତୁଳନାତ୍ମକ ଚିତ୍ର ପ୍ରଦାନ କରି ଦୁଇ ମନୀଷୀଙ୍କର ବିଶ୍ୱ-ଚେତନା ଓ ଆଧ୍ୟାତ୍ମିକ ମାନବବାଦ ବିଷୟରେ ବର୍ଣ୍ଣନା କରିଛନ୍ତି । ଭୀମ ଭୋଇଙ୍କ ରଚନାକୁ (ସ୍ତୁତି ଚିନ୍ତାମଣି) ଡଃ ବିଜୟ କୁମାର ନନ୍ଦ ପଞ୍ଚସଖାର ସର୍ବ କନିଷ୍ଠ ସନ୍ଥ ଶିଶୁ ଅନନ୍ତଙ୍କ ରଚିତ 'ହେତୁ ଉଦୟଭାଗବତ' ସହ ତୁଳନା କରିଛନ୍ତି । ଭୀମ ଭୋଇଙ୍କ ରଚନାକୁ ଡଃ ପ୍ରଦୀପ କୁମାର ପଣ୍ଡା ବଳରାମ ଦାସଙ୍କ ରଚନା ସହ ତୁଳନା କରିଛନ୍ତି । ପ୍ରଫେସର ଶରତ ଚନ୍ଦ୍ର ପାଣିଗ୍ରାହୀ ସନ୍ଥ ପରମ୍ପରାର ଅନ୍ୟତମ ପ୍ରବକ୍ତା କବୀର ଓ ଭୀମ ଭୋଇଙ୍କ ମଧ୍ୟରେ ଥିବା ସାମଞ୍ଜସ୍ୟକୁ ଉପସ୍ଥାପନ କରିଛନ୍ତି । ପ୍ରଫେସର ବିଜୟାନନ୍ଦ ସିଂହ ଭୀମଙ୍କୁ ଊନବିଂଶ ଶତାବ୍ଦୀର ବିସ୍ମୟ ଭାବରେ ଅଭିହିତ କରିଛନ୍ତି ।

ଏହି ସଂକଳନର ପ୍ରସ୍ତୁତି ପରିପ୍ରେକ୍ଷୀରେ କିସ୍ ପ୍ରତିଷ୍ଠାତା ପ୍ରଫେସର ଡଃ ଅଚ୍ୟୁତ ସାମନ୍ତଙ୍କୁ ମୋର କୃତଜ୍ଞତା ଜ୍ଞାପନ କରୁଛି । କିସ୍‌ର କୁଳପତି ପ୍ରଫେସର ଦୀପକ କୁମାର ବେହେରା ଓ କୁଳସଚିବ ଡଃ ପ୍ରଶାନ୍ତ କୁମାର ରାଉତରାୟଙ୍କ ଦିଗ୍‌ଦର୍ଶନ ଏ

କ୍ଷେତ୍ରରେ ପାଥେୟ ହୋଇଛି । କିସ୍‌ର ଗବେଷଣା ଚେୟାର ପ୍ରଫେସର ଅଗ୍ରଜ ପ୍ରତିମ ଯୁଗଳ କିଶୋର ମିଶ୍ର, ଅନୁଜ ପ୍ରତିମ ପ୍ରଫେସର ବିଜୟାନନ୍ଦ ସିଂହଙ୍କୁ ମୋର ଶ୍ରଦ୍ଧା ଓ ସମ୍ମାନ ଜଣାଉଛି । ଭୀମ ଭୋଇଙ୍କ ଉପରେ ଅଧିକ ଗବେଷଣା କରିବା ପାଇଁ ମୋତେ ଶ୍ରୀଯୁକ୍ତ ବିଷ୍ଣୁପଦ ସେଠୀ, I.A.S., ବିଶିଷ୍ଟ ଗବେଷକ ଦେବେନ୍ଦ୍ର କୁମାର ଦାଶ, ପ୍ରଫେସର ଶରତ ଚନ୍ଦ୍ର ପାଣିଗ୍ରାହୀ, ଡଃ ଅଶୋକ ଦାସ, ପ୍ରଫେସର କାଳିଦାସ ମିଶ୍ର, ଶ୍ରୀଯୁକ୍ତ ହୃଷୀକେଶ ତ୍ରିପାଠୀ, I.A.S.,(Retd.),ଶ୍ରୀଯୁକ୍ତ ମନୋରଞ୍ଜନ ପାଣିଗ୍ରାହୀ, I.R.S., ପ୍ରଫେସର ହରେକୃଷ୍ଣ ଶତପଥି, ପ୍ରଫେସର ଏନ୍. ନାଗରାଜୁ, ପ୍ରଫେସର ବସନ୍ତ କୁମାର ପଣ୍ଡା ଓ ଶ୍ରୀଯୁକ୍ତ ଶରତ ଦାଶ, I.R.S., ଇତ୍ୟାଦି ପ୍ରେରଣା ଦେଇଥିବାରୁ ମୁଁ ତାଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ମୋର ଧର୍ମପତ୍ନୀ ବିଦ୍ୟୁତ୍ ପ୍ରଭା ଓ କନ୍ୟା ଡଃ ସୋନାଲୀ ପ୍ରିୟଦର୍ଶିନୀକୁ ସହଯୋଗ ପାଇଁ ସାଧୁବାଦ ଜଣାଉଛି ।

ମହିମା ଧର୍ମର ଦାର୍ଶନିକ ତତ୍ତ୍ୱ ଓ ଭୀମ ଭୋଇଙ୍କର କଳାକୃତିର ଆଲୋଚନା ସହ ଏହି ସଂକଳନଟିର ପ୍ରସ୍ତୁତି ବେଳେ ନିରପେକ୍ଷତା ଅବଲମ୍ବନ କରିବାକୁ ଚେଷ୍ଟା କରାଯାଇଛି । ମହିମାପ୍ରେମୀ, ଭୀମ ଭୋଇଙ୍କ ଅନୁରକ୍ତ ଓ ଗୁଣମୁଗ୍ଧ ପାଠକଙ୍କ ପାଖରେ ଏହି ସଙ୍କଳନଟି ପହଞ୍ଚିପାରିଲେ ମୁଁ ଆନନ୍ଦିତ ହେବି ।

**ହରିଶ୍ଚନ୍ଦ୍ର ସାହୁ**
ପ୍ରଫେସର, ଭୀମ ଭୋଇ ରିସର୍ଚ୍ଚ ଚେୟାର
କିସ୍ ମାନିତ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

# ସୂଚୀପତ୍ର



-o-

# ନିର୍ମଳ କବିତ୍ୱ, ଭକ୍ତିଭାବନା ଓ ଦାର୍ଶନିକତାର ଅପୂର୍ବ ମିଶ୍ରରାଗ : ସନ୍ଥକବି ଭୀମଭୋଇ

**ବୈଷ୍ଣବ ଚରଣ ସାମଲ**

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ କନ୍ଧ କବି ଓଡ଼ିଆ ସାହିତ୍ୟରେ ତତ୍‌କାଳୀନ ଅଭିଜାତ କବିମାନଙ୍କ ଭିତରେ ଥିଲେ ଯଥାର୍ଥରେ ଏକ ବିସ୍ମୟ; କେବଳ କବିତ୍ୱରେ ନୁହେଁ; ଦାର୍ଶନିକ ଅବବୋଧରେ ମଧ୍ୟ । ସେତେବେଳେ ଯେଉଁ କବି ବା ଲେଖକମାନେ ଥିଲେ ପ୍ରାୟ ସମସ୍ତେ ଇଂରେଜ-ଶିକ୍ଷାପ୍ରାପ୍ତ ଅଭିଜାତ ବର୍ଗର । ଅଥଚ୍ ସେହି ସମୟରେ ଭୀମ ଭୋଇ ପଶ୍ଚିମ ଓଡ଼ିଶାର ଆରଣ୍ୟକ ପରିବେଶ ଭିତର କନ୍ଧ ସମାଜରେ ଅସହାୟ ଭାବରେ ଜୀବନ ବିତେଇ ଗାଁ ଲୋକଙ୍କ ଗାଈ ଚରେଇ, ଭାତ ତୋରାଣି ଜାଉ ପେଜ ପିଇ ଷୋହଳ ବର୍ଷ ବୟସରେ ଭଗ୍ନ କୂଅ ଭିତରେ ପଡ଼ିଥିଲା ବେଳେ ମହିମା ସ୍ୱାମୀ ତାଙ୍କୁ କୂଅ ଭିତରୁ ଉଦ୍ଧାର କରି ଦିବ୍ୟ କବିତ୍ୱ ଶକ୍ତି ଓ ଦିବ୍ୟ ଦୃଷ୍ଟି ପ୍ରଦାନ କରିଥିଲେ । ୧୮୭୧ ମସିହାରୁ ଭୀମଙ୍କ ଜୀବନର ନୂତନ ଦିଗନ୍ତ ଉଦ୍‌ଭସିତ ହୋଇ ଉଠିଲା । ସେ ହେଲେ ମହିମା ଧର୍ମର ପ୍ରଥମ କବି ଓ ପ୍ରଥମ ଦାର୍ଶନିକ । ବିଧିବଦ୍ଧ ଭାବରେ ସେ ଦର୍ଶନ କ'ଣ ଜାଣନ୍ତି ନାହିଁ; ଦାର୍ଶନିକ ମଧ୍ୟ ନୁହଁନ୍ତି । ଆବାଲ୍ୟରୁ ଶିକ୍ଷା ସହିତ ସଂପର୍କ ନାହିଁ । କୌଣସି ଅଭିଜାତ ବର୍ଗର ମଣିଷମାନଙ୍କ ସହିତ ସଂପର୍କ ନାହିଁ । ଅଥଚ ସେ ରଚନା କଲେ କବିତା; ଅର୍ଥାତ୍ ସେ ଆଶୁ କବିତ୍ୱର ପରିଚୟ ଦେଇ ସ୍ୱତଃ କବିତା ପରେ କବିତା ମୁହେଁ ମୁହେଁ ଡାକିଗଲେ, ମହିମା ସ୍ୱାମୀଙ୍କ ନିର୍ଦ୍ଦେଶରେ ହରି ପଣ୍ଡା ଓ ବାସୁ ପଣ୍ଡା ନାମକ ଦୁଇଜଣ ବ୍ରାହ୍ମଣ ତାହାକୁ ଲେଖନୀରେ ଲେଖିଗଲେ । ତାଙ୍କ ପୂର୍ବରୁ ଯଦିଓ ମହିମା ସ୍ୱାମୀଙ୍କର

ଜଗନ୍ନାଥ ବାବା, ନୃସିଂହ ବାବା ଓ ଅନ୍ୟାନ୍ୟ ସିଦ୍ଧ ଶିଷ୍ୟମାନେ ଥିଲେ ମାତ୍ର କେହି କବିତା ଲେଖି ନଥିଲେ । ଗ୍ରନ୍ଥ ମଧ୍ୟ ରଚନା କରି ନଥିଲେ । ମହିମା ଧର୍ମ କ'ଣ ? ତାହାର ତତ୍ତ୍ୱ ଓ ଦର୍ଶନ କ'ଣ ? ଏ ଧର୍ମର ଉପାସ୍ୟ କିଏ ? ମହିମା ସ୍ୱାମୀ କିଏ ? ଏ ଧର୍ମର ଲକ୍ଷ୍ୟ କ'ଣ ? ଏ ସଂପର୍କରେ କୌଣସି ରଚନା ନ ଥିଲା । ଭୀମ ଭୋଇ ହିଁ ହେଲେ ଏହି ଧର୍ମର ପ୍ରଥମ କବି ଓ ପ୍ରଥମ ଦାର୍ଶନିକ, ଯାହାଙ୍କ ରଚନା ମାତ୍ର ପାଞ୍ଚବର୍ଷ ଭିତରେ (୧୮୭୧-୧୮୭୬) ମହିମା ସ୍ୱାମୀଙ୍କ ବ୍ରହ୍ମଲୀନ ହେଲା ପର୍ଯ୍ୟନ୍ତ ସାରା ଓଡ଼ିଶାରେ ପ୍ରସାରିତ ହୋଇଗଲା । ବିଶେଷତଃ ସାଧାରଣ ସରଳ ଗ୍ରାମାଞ୍ଚଳର ନରନାରୀମାନେ ତାଙ୍କ ଭଜନ ଜଣାଣ ଚଉତିଶା ଆଦିକୁ ଖଂଜଣି ବଜାଇ ସନ୍ଧ୍ୟା ସମୟରେ ଜନପଦକୁ ମୁଖରିତ କରିଦେଲେ । ୧୮୭୬ ରୁ ୧୮୯୫ ମସିହା ପର୍ଯ୍ୟନ୍ତ ପ୍ରାୟ ଉଣେଇଶି / କୋଡ଼ିଏ ବର୍ଷ ଭିତରେ ଭୀମ ହୋଇଗଲେ ଓଡ଼ିଶାର ନବଜାଗରରଣ ମାନ୍ତ୍ରିକ, ସେ କାଳର ଅଭିଜାତ ନବଶିକ୍ଷିତ କବି ଓ ଲେଖକମାନଙ୍କଠାରୁ ସ୍ୱତନ୍ତ୍ର । ମାଟି ଓ ମଣିଷକୁ ଧରି ତାଙ୍କ କବିତାର ହେଲା ଦୁର୍ବାର ଗତି । ତାଙ୍କ ପାଇଁ ପତ୍ରପତ୍ରିକା ନଥିଲା; ଶିକ୍ଷିତବର୍ଗ ମଧ୍ୟ ନ ଥିଲେ । ଥିଲେ କିନ୍ତୁ ସାଧାରଣ ସରଳ ଧର୍ମପ୍ରାଣ ଜନଗଣ । ତାଙ୍କ ପ୍ରତି ବିରୋଧ ହୋଇଥିଲା; ପ୍ରଥମତଃ ଅଭିଜାତବର୍ଗଙ୍କ ତରଫରୁ, ବ୍ରାହ୍ମଣ ଓ ପୁରୋହିତ ବର୍ଗଙ୍କ ତରଫରୁ । ଦ୍ୱିତୀୟତଃ, ସେ କାଳର ମହିମାଧର୍ମର କେତେକ ସନ୍ନ୍ୟାସୀଙ୍କ ତରଫରୁ । ଭୀମ କିନ୍ତୁ ଏସବୁ ପ୍ରତି ଦୃଷ୍ଟି ନ ଦେଇ ନିଜର ଆତ୍ମବିଶ୍ୱାସ ଓ ଆଦର୍ଶକୁ ଗୁରୁତ୍ୱ ଦେଇ ଅବାରିତ ଭାବରେ କବିତା ରଚନା କରି ଚାଲିଥିଲେ । ସେ ବିବାହ କରିଥିଲେ, ଗୃହୀ ଥିଲେ ମାତ୍ର ଗୃହ ତାଙ୍କୁ ବାନ୍ଧି ପାରି ନଥିଲା । ତାଙ୍କର ଆଦର୍ଶ ଥିଲା ଗୃହକୁଧରି, ସଂସାରକୁ ଧରି ବ୍ରହ୍ମାଶ୍ରିତ ହୋଇ ପାରିଲେ ଜୀବନ ଧନ୍ୟ ହୁଏ । ତେଣୁ ତାଙ୍କର ଲକ୍ଷ୍ୟ ଥିଲା ଗୃହଧର୍ମ, ସଂସାରଧର୍ମକୁ ଠିକ୍ ମାର୍ଗକୁ ଆଣିବା ଓ ଜାତି, ବର୍ଣ୍ଣ, ଧର୍ମ, ଉଚ୍ଚ, ନୀଚ ନିର୍ବିଶେଷରେ ଆଧ୍ୟାତ୍ମିକ ସମାଜବାଦ ସୃଷ୍ଟି କରିବା ।

ଭୀମ ଭୋଇଙ୍କ ସଂପର୍କରେ ଅଲୋଚନା କରିବାକୁ ହେଲେ ଗୋଟିଏ ପ୍ରସଙ୍ଗ ମନକୁ ଆସେ । ତାହାହେଲା ସେ କ'ଣ କନ୍ଧ କୁଳରେ ଜାତ କିମ୍ବା କୌଣସି ଅଭିଜାତ କୁଳ ସଂଭୂତ ? ସୋନପୁରର ଲୋକଶ୍ରୁତି ଅନୁସାରେ ଜନ୍ମ ପରେ ତାଙ୍କୁ ଅସହାୟ ଅବସ୍ଥାରେ କୌଣସି ପୋଖରୀ ହୁଡ଼ାରେ ପରିତ୍ୟାଗ କରି ତାଙ୍କର ପିତାମାତା

ଚାଲିଯାଇଥିଲେ । ସେହି ନବଜାତ ଶିଶୁକୁ ଜନୈକ କନ୍ଧ ବ୍ୟକ୍ତି (ଦନାର) ପାଇ ନିଜ ଘରେ ଲାଳନପାଳନ କରିଥିଲେ । ତେଣୁ ଭୀମ କନ୍ଧ ପରିବାରରେ, ସମାଜରେ ବଢ଼ ହେଲେ । ଚାରି ବର୍ଷ ବୟସରୁ ତାଙ୍କର ହେତୁ ହେଲା, ସେତେବେଳେ ଗାଁ ଦାଣ୍ଡରେ ସେ ମହିମା ସ୍ୱାମୀଙ୍କୁ ଦେଖିଲେ । ପରେ ସାତ ବର୍ଷ ବୟସ ବେଳକୁ ଗାଈ ଜଗିଲେ । ଏମିତି କଟିଗଲା ଷୋଳ ବର୍ଷ । ପାଠ ପଢ଼ି ନାହାନ୍ତି । ହଁ, ଏହା ସତ୍ୟ ଯେ ସେ ଚାଟଶାଳୀ ଯାଇ ନାହାନ୍ତି ବା ବିଦ୍ୟା ଅଧ୍ୟୟନ କରି ନାହାନ୍ତି । ସେ କିନ୍ତୁ ମୂର୍ଖ ନ ଥିଲେ । ପାଠ ନ ନପଢ଼ି ମଧ୍ୟ ପଣ୍ଡିତ ଥିଲେ । ତାଙ୍କ ଭିତରେ ଯେଉଁ ଶ୍ରଦ୍ଧା ଥିଲା ତାହାହିଁ ତାଙ୍କୁ ସ୍ୱତଃ ଜ୍ଞାନୀ କରିଥିଲା । ସେ ହୁଏତ ସେତେବେଳେ ଶୁଣିଥିବେ ପୁରାଣ ପାଠ କରାଯାଉଥିବା ସ୍ଥାନରେ ପୁରାଣ କଥା, ବେଦବେଦାନ୍ତ ଚର୍ଚ୍ଚା । ତାଙ୍କ ଭିତରେ ଯେଉଁ ପ୍ରତିଭା ଥିଲା ତାହାରି ବଳରେ ସେ ସବୁ କଥା ମନେ ରଖିପାରୁଥିଲେ । ଯେତେବେଳେ ସେ କବିତା ଚରନା ଆରମ୍ଭ କରିଛନ୍ତି ସେତେବେଳେ ସ୍ୱତଃ ତାଙ୍କ ଭିତରକୁ ପୁରାଣ ଓ ଉପନିଷଦ କଥାମାନ ଆସିଯାଇଛି । ପୁରାଣକଥାକୁ ନେଇଛନ୍ତି, ଧର୍ମ କଥାକୁ ନେଇଛନ୍ତି, ଜଗନ୍ନାଥ – ରାମ – କୃଷ୍ଣ କଥାକୁ ନେଇଛନ୍ତି, ସମକାଳୀନ ସମାଜ ଓ ସଂସ୍କୃତି କଥାକୁ ନେଇଛନ୍ତି; ତାହାରି ଭିତରେ ସେ ନିଜର ଦୃଷ୍ଟି ଓ ଦର୍ଶନକୁ ବଳିଷ୍ଠ କରିଦେଇଛନ୍ତି । ଚାହିଁଛନ୍ତି ଗୋଟିଏ ଜାତି – ମଣିଷ ଜାତି; ଗୋଟିଏ ସମାଜ – ମଣିଷ ସମାଜ, ଗୋଟିଏ ଧର୍ମ – ମାନବ ଧର୍ମ, ଯାହାକୁ ସେ ମହିମାଧର୍ମ ବୋଲି କହିଛନ୍ତି । ଚାହିଁଛନ୍ତି ମଧ୍ୟ ଏକ ବ୍ରହ୍ମ ଉପାସନା – ଯିଏ ଅରୂପ, ଅଣାକାର, ଅବ୍ୟକ୍ତ, ଶୂନ୍ୟ । ତେଣୁ ମୂର୍ତ୍ତିପୂଜାକୁ ସେ ବିରୋଧ କରିଛନ୍ତି । ଭ୍ରାନ୍ତିପୂର୍ଣ୍ଣ ଆଚାରଗୁଡ଼ାକୁ ନିନ୍ଦା କରିଛନ୍ତି । ବ୍ରାହ୍ମଣ୍ୟପ୍ରଥାକୁ ବିରୋଧ କରିଛନ୍ତି । ରାଜା ବା କ୍ଷମତା ସିଂହାସନକୁ ବିରୋଧ କରିଛନ୍ତି । ସମର୍ଥନ କରିଛନ୍ତି ସତ୍ୟ, ଶାନ୍ତି, ଦୟା, କ୍ଷମା, ଶୀଳ ଓ ଅହିଂସାକୁ । ଅହଂକାର, ବଳ, ଦର୍ପ, କାମ, କ୍ରୋଧ ଓ ପରିଗ୍ରହକୁ କଡ଼ା ସମାଲୋଚନା କରିଛନ୍ତି । କର୍ମୈଷଣା ଉପରେ ଗୁରୁତ୍ୱ ଦେଇଛନ୍ତି । ସ୍ୱାବଲମ୍ବନଶୀଳତା ପ୍ରତି ଶ୍ରଦ୍ଧା ଜଣାଇଛନ୍ତି । ଗୁରୁବାଦକୁ ସ୍ୱୀକାର କରିଛନ୍ତି, ନାମ ଭକ୍ତିକୁ ପ୍ରାଧାନ୍ୟ ଦେଇଛନ୍ତି; ଧର୍ମ ନାମରେ ଯାବତୀୟ ଆଡ଼ମ୍ବର ଓ ବିଳାସକୁ ନିନ୍ଦା କରିଛନ୍ତି । ତେଣୁ ମହିମାଧର୍ମକୁ ବିଶ୍ୱଧର୍ମର ମାନ୍ୟତା ଦେଇଛନ୍ତି । ଏହି ସବୁ ଦୃଷ୍ଟିକୋଣକୁ ଗୁରୁତ୍ୱ ଦେଇ ସେ ରଚନା କରି ଯାଇଛନ୍ତି ନିର୍ବେଦ ସାଧନ, ଶ୍ରୁତିନିଷେଧ ଗୀତା, ଅଷ୍ଟକବିହାରୀ ଗୀତା, ଆଦି ଅନ୍ତଗୀତା, ବ୍ରହ୍ମନିରୂପଣ ଗୀତା, ପଦ୍ମକଳ୍ପ, ସ୍ତୁତିଚିନ୍ତାମଣି, ବ୍ରହ୍ମଚାଳକ ଆଦି ନାନା ଗ୍ରନ୍ଥ। ଏଥି

ସହିତ ମଧ୍ୟ ସେ ରଚନା କରିଯାଇଛନ୍ତି ରାଶି ରାଶି ଭଜନ, ଜଣାଣ, ଚଉତିଶା, ଚଉପଦୀ, ଓଲଟ ଚଉତିଶା ଆଦି ଅନେକ । ଏସବୁ ଏବେ ମଧ୍ୟ ଗ୍ରାମାଞ୍ଚଳର ଜନଗଣଙ୍କ ହୃଦୟରେ ସଶ୍ରଦ୍ଧ ଆସନ ପାରି ନେଇଛନ୍ତି । ଏହା ସତ୍ୟ ଯେ ଏସବୁ ରସ ସାହିତ୍ୟ ନୁହେଁ, ଆଳଙ୍କାରିକ ସାହିତ୍ୟ ନୁହେଁ, ତଥାକଥିତ ବୌଦ୍ଧିକ ଇସ୍ତାହାର ନୁହେଁ; ଏସବୁ ଗାନଧର୍ମୀ, ସରଳ ସାବଲୀଳ; ଅଥଚ ତତ୍ତ୍ୱଧର୍ମୀ । ଦର୍ଶନ କବିତା ସହିତ ତଲ୍ଲୀନ ହୋଇ ଗତି କରିଯାଇଛି । ଭକ୍ତି ଓ ସମର୍ପଣ ହୋଇ ଯାଇଛି ମୁଖ୍ୟ ବିଭବ । ଅତଏବ ଭୀମଭୋଇ ମହିମାଧର୍ମର ଆଦିକବି । ସେ ନିରୋଳା କବି ମାତ୍ର ନୁହଁନ୍ତି, ଦାର୍ଶନିକ ମଧ୍ୟ । ସେ ମଧ୍ୟ ଜ୍ଞାନୀ ଓ ଭକ୍ତ । ଅଲେଖ ମହିମା ଦର୍ଶନର ସାର୍ଥକ ରୂପକାର ।

ଊନବିଂଶ ଶତାବ୍ଦୀ ଓଡ଼ିଶାରେ ଦେଖାଦେଇଛି ସଂକଟ, ସଂଘର୍ଷ ଓ ମରଣର ବିଭୀଷିକା । ରାଜା ଓ ଜମିଦାରଗଣ ହୋଇଯାଇଛନ୍ତି ବିଳାସୀ, ଉପଭୋଗୀ ଓ ବ୍ରିଟିଶ ସରକାରଙ୍କ ସ୍ତାବକ । ହିନ୍ଦୁ ଧର୍ମରେ ଦେଖା ଦେଇଛନ୍ତି ନାନା ଅବକ୍ଷୟ । କୁସଂସ୍କାର ଓ ଅନ୍ଧବିଶ୍ୱାସ ପୂରି ରହିଛି । ନାରୀମାନଙ୍କୁ ପଣ୍ୟ କରି ଦିଆଯାଇଛି । ପିତୁଳା ପୂଜା ନାମରେ ଭ୍ରାନ୍ତ ଆଡ଼ମ୍ବର ସୃଷ୍ଟି ହୋଇଛି । ଇଂରେଜ ବଣିକ ଶାସନ ଫଳରେ ଚାଲିଛି ନିର୍ବିରୋଧ ଶୋଷଣ ଓ ପୀଡ଼ନ । ଲୋକେ ହୋଇଛନ୍ତି ନିର୍ବାକ ଓ ଆତ୍ମବିଲୁପ୍ତ । ଇଂରେଜ ଶିକ୍ଷା ପ୍ରଚଳିତ ହୋଇଛି । ସେଥିରୁ ସୃଷ୍ଟି ହୋଇଛି ବାବୁ ଶ୍ରେଣୀ । ଏ ଶ୍ରେଣୀର ସମାଜ, ମଣିଷ, ସଂସ୍କୃତି ସହିତ ସଂପର୍କ ନାହିଁ । ଏପରି ଅବସ୍ଥାରେ ବ୍ରାହ୍ମଧର୍ମର ସୃଷ୍ଟି ହୋଇଛି ମାତ୍ର ଏହା ସହରୀ କେନ୍ଦ୍ରିକ ଅଭିଜାତ ବର୍ଗ ଭିତରେ ଆବଦ୍ଧ । ଆର୍ଯ୍ୟ ସମାଜର ଉନ୍ମେଷ ଘଟିଛି । ଅପର ପକ୍ଷରେ ଖ୍ରୀଷ୍ଟ ଧର୍ମ ପ୍ରଭାବ ବିସ୍ତାର କରିଛି । ସେଥିରେ ପୁଣି ୧୮୬୬ ମସିହାର ନଅଙ୍କ ଦୁର୍ଭିକ୍ଷ ସୃଷ୍ଟି କରିଛି ମୃତ୍ୟୁ-ନାଚ । ଏହା ଫଳରେ ଆବିର୍ଭାବ ଘଟିଚି ଗୋଟାଏ ପତିତ ଶ୍ରେଣୀ । ସେମାନଙ୍କୁ ସମାଜର ମୁଖ୍ୟ ସ୍ରୋତ ସହିତ ମିଶିବାକୁ ବାଧା ଦିଆଯାଇଛି । ଏହିପରି ଏକ ସଂକଟ କାଳରେ ମହିମାଧର୍ମର ଆବିର୍ଭାବ । ମହିମା ସ୍ୱାମୀ ତା'ର ପ୍ରତିଷ୍ଠାତା । ଭୀମ ଭୋଇ ତତ୍ତ୍ୱ, ଦର୍ଶନ, ଆଭିମୁଖ୍ୟକୁ କବିତା ମାଧ୍ୟମରେ ରୂପ ଦେଲେ । ତେଣୁ ମହିମାଧର୍ମ ହୋଇଗଲା ଏକ ବୈପ୍ଲବିକ ଧର୍ମ ଓ ଭୀମ ଭୋଇ ହେଲେ ଏହାର ପ୍ରଥମ ବିପ୍ଳବୀ କବି । ତାଙ୍କ ବିପ୍ଳବର ଲକ୍ଷ୍ୟ ହେଲା ଧର୍ମକୁ ଯାବତୀୟ ଖୋଳପାରୁ ମୁକ୍ତ କରି ତାହାକୁ ମାନବ ଅଭିମୁଖୀ କରାଇବା ଓ ସବୁ ମଣିଷଙ୍କୁ ଧର୍ମ ଭିତ୍ତିରେ ଏ ଧରାତଳକୁ

ଆଣି ଆଧ୍ୟାତ୍ମିକ ସମାଜବାଦ ପ୍ରତିଷ୍ଠା କରିବା । ତେଣୁ ମହିମାଧର୍ମ ହୋଇଗଲା ମଣିଷଙ୍କ ଧର୍ମ, ଲୋକ-ଧର୍ମ । ଏହି ଧର୍ମରେ ବ୍ରହ୍ମ, ଜୀବ ଓ ଜଗତ ଏକ ବିନ୍ଦୁରେ ମିଳିଗଲେ । ଉଦ୍ଦେଶ୍ୟ ହେଲା ବ୍ରହ୍ମ ସତ୍ୟ ଓ ସେହି ଏକ ବ୍ରହ୍ମଙ୍କୁ ମାନି ନେଇ ସକଳ ମଣିଷ ଓ ଜୀବଙ୍କୁ ଭଲ ପାଇ ଜଗତକୁ ଏକ ପରିବାରଭୁକ୍ତ କରିବା, ତାହାହିଁ ଭୀମ ଭୋଇଙ୍କ ଦୃଷ୍ଟିରେ ମହିମା ପରିବାର ।

ଭୀମଙ୍କ ଦୃଷ୍ଟିରେ ବ୍ରହ୍ମ ଶୂନ୍ୟ, ଶୂନ୍ୟ, ମହାଶୂନ୍ୟ । ସେ ଶୂନ୍ୟ ହୋଇ ମଧ୍ୟ ନକାରାତ୍ମକ ନୁହଁନ୍ତି, ସକାରାତ୍ମକ । ସେ ଉପନିଷଦ୍‌ର ଶୂନ୍ୟବ୍ରହ୍ମଙ୍କୁ ମାନିଛନ୍ତି, ଯାହାଙ୍କଠାରୁ ସକଳ ବ୍ରହ୍ମାଣ୍ଡ ଓ ଜୀବଜଗତ ସୃଷ୍ଟି ହୋଇଅଛି । ମୁଣ୍ଡକ ଉପନିଷଦ୍, କଠ ଉପନିଷଦ୍, ପ୍ରଶ୍ନ ଉପନିଷଦ୍, ଛାନ୍ଦୋଗ୍ୟ ଉପନିଷଦ୍ ଆଦି ନାନା ଉପନିଷଦ୍‌ରେ ବ୍ରହ୍ମଙ୍କ ସଂପର୍କରେ ଦିବ୍ୟଦ୍ରଷ୍ଟା ଋଷିମାନେ ଯାହା କହି ଯାଇଛନ୍ତି ତାହାହିଁ ଭୀମଙ୍କ ସକଳ ସାରସ୍ୱତ ସୃଷ୍ଟିରେ ହୋଇଛି ପ୍ରତିଧ୍ୱନିତ । ସେ ବ୍ରହ୍ମ ସର୍ବଜ୍ଞ, ସର୍ବବିଦ୍ୟମାନ, ସର୍ବଶକ୍ତିମାନ, ଜ୍ଞାନମୟ, ଅମୃତସ୍ୱରୂପ ଏବଂ ଦ୍ରଷ୍ଟା ସର୍ବଶ୍ରୋତା, ବିଜ୍ଞାନାତ୍ମା, ପରମେଶ୍ୱର ।(୧) ଏହି ବ୍ରହ୍ମଙ୍କଠାରୁ ହିରଣ୍ୟଗର୍ଭ ନାମ ରୂପ ଓ ଅନ୍ନ ଜାତ ହୁଏ । ଯିଏ ସେହି ପରମ, ଅମୃତ ଓ ସର୍ବସ୍ୱରୂପ ବ୍ରହ୍ମଙ୍କୁ ଜାଣନ୍ତି, ଉପଲବଧି କରନ୍ତି ଓ ସକଳ ଭୂତରେ ତାଙ୍କ ଅବସ୍ଥିତିକୁ ଅନୁଭବ କରନ୍ତି । ତାଙ୍କର ସକଳ ଅବିଦ୍ୟା ଗ୍ରନ୍ଥି ଛିନ୍ନ ହୋଇଯାଏ । ସେହି ବ୍ୟକ୍ତି ହୁଅନ୍ତି ଯଥାର୍ଥ ବିଦ୍ୱାନ୍ । ଏହି ବ୍ରହ୍ମଙ୍କୁ ଭୀମ ଏକମାତ୍ର ସତ୍ୟ ବୋଲି ମାନି ନେଇ ଅଛନ୍ତି ଓ ସକଳ ଭୂତରେ ସେହି ଏକ ବ୍ରହ୍ମ ବା ତାଙ୍କର ଅଂଶଭୂତ ଆତ୍ମାକୁ ଉପଲବଧି କରିଥିବାରୁ ଜାତିବର୍ଣ୍ଣ ଧର୍ମ ଉଚ୍ଚନୀଚ ନିର୍ବିଶେଷରେ ସକଳ ମଣିଷଙ୍କୁ ସମଦୃଷ୍ଟିରେ ଦେଖିଛନ୍ତି । ସେ ହୋଇ ଯାଇଛନ୍ତି ବ୍ରହ୍ମଭୂତ ପ୍ରସନ୍ନାତ୍ମା । ତେଣୁ ତାଙ୍କର କୌଣସି ପାର୍ଥିବ ଆକାଂକ୍ଷା ବା ଶୋଚନା ନ ଥିଲା । ମହିମା ସ୍ୱାମୀ ସେହି ଏକ ଅଦ୍ୱିତୀୟ ବ୍ରହ୍ମଙ୍କ କଥା କହିଛନ୍ତି । ତାଙ୍କ ମତରେ ବ୍ରହ୍ମ ମହାଶୂନ୍ୟ ଓ ମହାନିତ୍ୟବାସୀ । ମାୟାବିଜଡ଼ିତ ମଣିଷ ସେହି ଶୂନ୍ୟ ଅଲେଖ ବ୍ରହ୍ମଙ୍କୁ ଜାଣି ନ ପାରି ନାନା ଦେବଦେବୀଙ୍କ ରୂପ କଳ୍ପନା କରିଚି ଓ ନାନା ପ୍ରକାର ତନ୍ତ୍ର ମନ୍ତ୍ର ପୂଜାପାର୍ବଣର ବ୍ୟବସ୍ଥା କରିଛି । ଏପରି ଚିନ୍ତାଧାରା ମଣିଷତ୍ୱର ଉତ୍ତରଣ ଘଟାଇ ପାରିନାହିଁ । ବରଂ ମଣିଷକୁ ସଂକୀର୍ଣ୍ଣ କରିଦେଇଛି । ଫଳରେ ଭ୍ରାନ୍ତ ଜାତିପ୍ରଥା

ଓ ସଂପ୍ରଦାୟ ସୃଷ୍ଟି ହୋଇ ପରସ୍ପର ଭିତରେ ସଂଘର୍ଷ ଲଗାଇ ଦେଇଚି । ଭୀମ ଏହି କଥାକୁ ମର୍ମେ ମର୍ମେ ଉପଲବଧି କରିଛନ୍ତି । ତେଣୁ ସେ କହନ୍ତି –

ଅଶେଷ ଭୁବନ କରତା । ସକଳ ଜୀବ ପିତାମାତା ।
ତାହାଙ୍କ ବର୍ଣ୍ଣ ଚିହ୍ନ ନାହିଁ । ଅରୂପାନନ୍ଦ ସେ ବୋଲାଇ ।

– ଶ୍ରୁତିନିଷେଧ ଗୀତା – ୧ମ ଅ.

ଭୀମଙ୍କ ଦୃଷ୍ଟି ସାଧାରଣ ଦୃଷ୍ଟି ନୁହେଁ । ଏହା ଉଭୟ ବୈଶ୍ୱାନର ଓ ତୈଜସ ଦୃଷ୍ଟିର ମଧୁର ସମନ୍ୱୟ । ତେଣୁ ତାଙ୍କ ଦୃଷ୍ଟିରେ ବ୍ରହ୍ମ ପୂର୍ଣ୍ଣାନନ୍ଦ । ତାଙ୍କର ଜାତି ଅଜାତି କିଛି ନାହିଁ । ସେ ନିତ୍ୟ ଆନନ୍ଦମୟ ଓ ଅମୃତମୟ । ସକଳ ଜୀବଙ୍କୁ ସେ ସମ ଭାବରେ ପାଳନ କରନ୍ତି । ଭୀମ ତେଣୁ କହନ୍ତି –

ଏକୌଶ ବ୍ରହ୍ମାଣ୍ଡରେ ଜାଣ । ଲାଗିଛି ଜନ୍ମମୃତ୍ୟୁ ମାନ ।
ତହିଁ ଆଗକୁ ନାହିଁ କିଛି । ଅଭୟ ବ୍ରହ୍ମ ପୂରିଅଛି ।

× × ×

ପୂର୍ଣ୍ଣାନନ୍ଦଟି ପୂର୍ଣ୍ଣ ବ୍ରହ୍ମ । ନିଷ୍କାମ ନିର୍ମୋହ ସେ ଧର୍ମ ।

× × ×

ଜାତି ଅଜାତି ତାର ନାହିଁ । ପୂରିଛି ସର୍ବ ଘଟେ ସେହି ।
ତାହାର ନାହିଁ ଘଡ଼ି ବେଳା । ସଦା ଆନନ୍ଦ ମତି ଭୋଳା ।
ପାଇ ସର୍ବ ଆତ୍ମା ଜୀବ । ସର୍ବ ଶରୀରେ ସମଭାବ ।
ଏମନ୍ତ ବ୍ରହ୍ମ ସେ ବୋଲାଇ । ଆଶ୍ରୟ କଲେ ମୁକ୍ତି ପାଇ ।

– ଶ୍ରୁତିନିଷେଧ ଗୀତା – ୧ମ ଅ.

ନିରାକାର ବ୍ରହ୍ମଙ୍କ କଥା କହୁ କହୁ ଭୀମ ତାଙ୍କର ରଚନାମାନଙ୍କରେ ଅଣାକାର ବ୍ରହ୍ମ, ଅଣବ୍ରହ୍ମ, ଅଣରୂପ ବ୍ରହ୍ମ, ଇତ୍ୟାଦି ରୂପେ ମଧ୍ୟ ଉଲ୍ଲେଖ କରିଛନ୍ତି । ଏହା ଦ୍ୱାରା ସେ କହିବାକୁ ଚାହିଁଛନ୍ତି ବ୍ରହ୍ମ ଅରୂପ, ଅଲେଖ ଓ ଅବ୍ୟକ୍ତ ହେଲେ ହେଁ ନିଜ ଇଛାରେ ସେ ରୂପ ଧାରଣ କରନ୍ତି । ସେହି ରୂପ ତାଙ୍କର ଅଣରୂପ, ଅଣାକାର, ଅଣରୂପ ବ୍ରହ୍ମ । ଏହା ମାଧ୍ୟମରେ ବ୍ରହ୍ମ ଲୋକଙ୍କ ଭିତରେ ସେ ରୂପବନ୍ତ ହୋଇ ପ୍ରକୃତ ମାର୍ଗ ଦେଖାନ୍ତି, ଧର୍ମରୁ ବିଚ୍ୟୁତ ହୋଇ ପଡୁଥିବା ଲୋକଙ୍କ ଭିତରେ ଧର୍ମଭାବ

ସୃଷ୍ଟି କରନ୍ତି । 'ଅଣ' ଶବ୍ଦ ଲଗାଇ ଆମେ ଅନେକ ଶବ୍ଦ ଦେଖୁ; ଯେମିତି ଅଣପୁରୁଷା, ଅଣ ହଳଦିଆ, ଅଣ କଦଳିଆ, ଇତ୍ୟାଦି । ଏହା ଭିତରେ ଆମେ ଗୋଟିଏ ରୂପକୁ ଦେଖୁ ମାତ୍ର ତା' ଭିତରେ ବ୍ୟଂଜିତ ହୁଏ ଅନ୍ୟ ରୂପ । ସେହିପରି ଅଣରୂପବ୍ରହ୍ମ, ଅଣବ୍ରହ୍ମ ଇତ୍ୟାଦି ଭିତରେ ଗୋଟିଏ ରୂପ ହୁଏତ ଦ୍ୟୋତିତ ହୁଏ ମାତ୍ର ତା' ଭିତରେ ଥାଆନ୍ତି ସେହି ପରମ ବ୍ରହ୍ମ । ମହିମା ସ୍ୱାମୀ ସେହି ଅଣରୂପ ବ୍ରହ୍ମ । ଭୀମ ଏପରି ବର୍ଣ୍ଣନା ମାଧ୍ୟମରେ ରୂପକୁ ସ୍ୱୀକାର କରିଥିଲେ ମଧ୍ୟ କହନ୍ତି – 'ରୂପଟି ପାପ ବୋଲି ଜାଣ' । ରୂପକୁ ଧରିଲେ ମଣିଷ ଭିତରେ ଭ୍ରାନ୍ତି ଓ ବିଭ୍ରମ ସୃଷ୍ଟି ହୋଇଯାଏ । ତେଣୁ ଭୀମ ବାରମ୍ବାର କହିଛନ୍ତି – ରୂପକୁ ଛାଡ଼ି ଅରୂପକୁ ଧରିବା ପାଇଁ । ତାଙ୍କର ଚେତାବନୀ – ରୂପଟି ପାପ । କଳ୍ପନା ଶତ୍ରୁ । 'ମୂର୍ତ୍ତି ପ୍ରତିମା ଶୁଷ୍କ କାଠ'କୁ ଈଶ୍ୱର ଭାବିବା ଭ୍ରମାତ୍ମକ । ଏହା କେବେହେଲେ ମଣିଷକୁ ବୈକୁଣ୍ଠକୁ ନେଇ ପାରେ ନାହିଁ । ଅନ୍ୟ ଅର୍ଥରେ ଏହା ମଣିଷ ଭିତରେ ପ୍ରକୃତ ଭକ୍ତିଭାବ ସୃଷ୍ଟି କରିପାରେ ନାହିଁ । କେବଳ ସୃଷ୍ଟି କରେ ଅସରନ୍ତି କାମନା । ଯିଏ ସେହି ଏକ ଅନାଦି ବ୍ରହ୍ମଙ୍କୁ ମାନେ ସିଏ 'ସର୍ବ ଶରୀରେ ସମ ଭାବ' ଉପଲବ୍ଧି କରେ । ତେଣୁ ଭୀମ ଭୋଇ ଗୁରୁତ୍ୱ ଦେଇଛନ୍ତି 'ନାମବ୍ରହ୍ମ' ଉପରେ । ନିଷ୍କାମ ଧର୍ମ, ନିଷ୍କାମ ଭକ୍ତି ଓ ନିଷ୍କାମ କର୍ମ ଉପରେ ଗୁରୁତ୍ୱ ଦେଇ ବ୍ରହ୍ମଙ୍କର ଶୂନ୍ୟ ନାମ ଭଜନ କରିବାକୁ ଉପଦେଶ ଦେଇଛନ୍ତି । ତେଣୁ ସେ କହନ୍ତି –

"ନାମ ବ୍ରହ୍ମକୁ ଆଶ୍ରାକର । ସଂସାରୁ ଯେବେ ହେବ ପାର ।'

ଶ୍ରୁତିନିଷେଧଗୀତାରେ ନାମ ବ୍ରହ୍ମର ମହତ୍ତ୍ୱକୁ ଦର୍ଶାଇ ନିର୍ବେଦ ସାଧନ ଗ୍ରନ୍ଥରେ ସେ ପୁଣି କହନ୍ତି–

ନାମଟି ଚାରିଯୁଗେ ସତ୍ୟ । ନାମ ଥାଇ କେଉଁ କୃତ୍ୟ ।
ଜଗତ ଜନ କଲେ ନିନ୍ଦା । ଭୁଲି ନୋହିବୁ ଚିତ୍ତେ ଧନ୍ଦା ।
ନାମକୁ ଧରିଥିଲେ ରଟି । ସଂଶୟ ପକାଇବୁ କାଟି ।
ନାମଟି ଅମୂଲ୍ୟ ରତନ । ସରି ନୁହଁଇ ତ୍ରିଭୁବନ ।

– ନିର୍ବେଦସାଧନ – ୧୪ ଅ.

ଏହିପରି ସେ 'ସ୍ତୁତିଚିନ୍ତାମଣି' ଗ୍ରନ୍ଥରେ ଉଦ୍‌ବୋଧନ ଦେଇଛନ୍ତି-

ଛତିଶକୁଳ ବାଉନ ଯେ ପାଟକ ଯେ ଅଛ ସ୍ତିରୀ ପୁରୁଷ
ଉଚ୍ଚ ନୀଚ ବୋଲି ବାରଣ ନ କରି ନାମରେ ଶରଣ ପଶ ।
କିବା ବେଶ୍ୟା ନାରୀ କିବା ଦୁରାଚାରୀ କିବା ପାଷାଣ୍ଡ ପୁରୁଷ
ଅଦ୍‌ଭୂତ ବିପତ୍ତି ଘୋଟି ଆସୁଛି ବେନିନେତ୍ରେ ସର୍ବେ ଦେଖ ।

- ସ୍ତୁତିଚିନ୍ତାମଣି - ୯୨ ବୋଲି

ସେହି 'ସ୍ତୁତିଚିନ୍ତାମଣି' ଗ୍ରନ୍ଥରେ ସେ ଜାତି ବର୍ଣ୍ଣ ଧର୍ମ ନିର୍ବିଶେଷରେ ନିଜ ନିଜର କର୍ମ ତ୍ୟାଗ ନ କରି ନିଷ୍ଠାପର ଭାବରେ କର୍ମ କରିବା ସଂଗେ ସଂଗେ ନାମ ବ୍ରହ୍ମଙ୍କ ନିକଟରେ ଶରଣ ପଶିବାକୁ କହିଛନ୍ତି-

ବ୍ୟାଧ ହୋଇ ଯେବେ ଜୀବମରା ବୃତ୍ତି ଜୀବ ବଧୁ ଥାଉ ପଛେ
ଅଲେଖ ମହିମା ଭଜୁଥାଉ ଏକା ଦୃଢ଼ କରିଥାଉ ନିଶ୍ଚେ ।
ତେବେ ସିନା ତାର ଜୀବ ବଧିବାର ଦୋଷରୁ ହୋଇବ ପାର
ସଦଗୁରୁ ଯେବେ ପ୍ରସନ୍ନ ହୋଇବେ ନିଶ୍ଚେ ହୋଇବ ଉଦ୍ଧାର ।
ଧୀବର ହୋଇଣ ମୀନ ମାରୁପଛେ ମହିମାକୁ ଥାଉ ଧ୍ୟାୟୀ
ତାହା ବୃତ୍ତି ତାକୁ ଦିଆ ହୋଇଛି କେମନ୍ତେ ଛାଡ଼ିବ ସେହି ।

× × ×

ମୋଚି ହୋଇ ଚର୍ମ କାଟୁଥାଉ ପଛେ ନାମରେ ଆଶ୍ରିତ ହେଉ,
ତାହାର ବୃତ୍ତି ସେ କେମନ୍ତେ ଛାଡ଼ିବ ରୋଜଗାର କରୁଥାଉ ।

× × ×

ହାଡ଼ି ହୋଇ ଯେବେ ଦାଣ୍ଡ ପହଁରଇ ବାଡ଼ିଘର ପଛେ ଖଟୁ
ଗୁରୁପାଦ ତଳେ ଚିତ୍ତବୃତ୍ତି ରଖି ଦୃଢ଼ ଚିତ୍ତେ ନାମ ରଟୁ ।
ତାହାର ବୃତ୍ତି ସେ ନ ରଖିବ ଯେବେ କେ କରିବ ସେହୁ କର୍ମ
ମୁଖେ ଯେବେ ଗୁରୁ ନାମ ଭଜୁଥିବ ଉଦ୍ଧାର କରିବେ ବ୍ରହ୍ମ ।

- ସ୍ତୁତିଚିନ୍ତାମଣି - ୯୧ ବୋଲି

ଭୀମ ଗୋଟିଏ ନାମ ଉପରେ ଗୁରୁତ୍ୱ ଦେଇଛନ୍ତି ତାହା ମହିମା ନାମ, ଅଲେଖ ନାମ, ଶୂନ୍ୟ ବ୍ରହ୍ମ ନାମ । ବାରମ୍ବାର ସେ କହିଛନ୍ତି – 'ଅଲେଖ ମହିମାକୁ ଭଜ / କିଛି ନ କର ଏଥେ ଲାଜ ।" (ନିର୍ବେଦ ସାଧନ) ଅଣାକାର ଶୂନ୍ୟ ବ୍ରହ୍ମ ଅଲେଖ ସ୍ୱାମୀଙ୍କୁ ଲୟ ଓ ଧ୍ୟାନ କରିବାକୁ ସେ କହିଛନ୍ତି । ତାଙ୍କ ଭକ୍ତିମାର୍ଗରେ ଜ୍ଞାନ, ଲୟ ଓ ଧ୍ୟାନ ଗୁରୁତ୍ୱ ନେଇଛି । ତାଙ୍କ ମତରେ ଅଣାକାର ଅଲେଖ ବ୍ରହ୍ମଙ୍କ ପାଖରେ ଉଚ୍ଚନୀଚ, ବଡ଼ସାନ, ପାପପୁଣ୍ୟ, ବିକାର, ଅବିକାର କିଛି ନାହିଁ । ସେହି ଅଣାକାରଙ୍କୁ ଲୟ କଲେ ମୃତ୍ୟୁ ଭୟ ଦୂରେଇ ଯାଏ । ମହିମାଙ୍କୁ ଭଜି ପାରିଲେ ଧରଣୀରେ ରହିପାରିବ (ଅଷ୍ଟକବିହାରୀ ଗୀତା) । ଶ୍ୱେତାଶ୍ୱତର ଉପନିଷଦ୍ ପରି ଭୀମ ମଧ୍ୟ ବ୍ରହ୍ମଙ୍କୁ ଏକାଧାରରେ ସ୍ତ୍ରୀ, ପୁରୁଷ, କୁମାର, କୁମାରୀ, ବାଳ, ବୃଦ୍ଧ ଭାବରେ ବିଚାର କରିଛନ୍ତି । ସେ ପୁଣି କହନ୍ତି –

ଏକ ବ୍ରହ୍ମ ଏକ ଧର୍ମ ଏକ କର୍ମ ଉଦେ ।
ଏକ ପାଦ ଏକ ଭେଦ ଏକ ବାକ୍ୟ ପଦେ ।
ଏକ ସ୍ଥିତା ଏକ ଦଣ୍ଡା ଏକାହ ମୂରତି
ଏକ ଧ୍ୟାନ ଏକ ଜ୍ଞାନ ବ୍ରହ୍ମର ବିଭୂତି ।
ଏକ ଧ୍ୟାନ ଏକ ଦ୍ୱାର ଏକାନ୍ତ ଭୋଜନ
ଅଣାକାର ନିର୍ବିକାର ସେ ବ୍ରହ୍ମ ନିର୍ଗୁଣ ।
ଏକ ସତ୍ୟ ଏକ ବ୍ରତ ଏକ ଦୃଢ଼ବାଣୀ
ଏକ ନାମୀ ଏକ ସ୍ୱାମୀ ଏକାନ୍ତରେ ଚିହ୍ନି ।
ଏକ ଚିତ୍ତ ଏକ ହିତ ଅଗୋଚର କଥା ।
ଏକ ତାତ ଏକ ବ୍ରତ ଏକ ତାର ଫନ୍ଦା
ଏକ ଦୃଢ଼ ଏକ ବ୍ରତ ବାସ ଶହେ ଫନ୍ଦା ।
ଏକ ପିତା ଏକ ମାତା ଏକ ଗୁରୁ ଶିଷ୍ୟ
ଏକ ମାନ ଏକ ମାନ୍ୟ ଏକ ଭାବେ ବଶ୍ୟ ।

– ବ୍ରହ୍ମନିରୂପଣ ଗୀତା – ୫ମ ଅ.

ମହିମା ଶୂନ୍ୟ ବ୍ରହ୍ମ ହେଲେହେଁ ସେ ପ୍ରତ୍ୟକ୍ଷ ମନୁଷ୍ୟ । ମୁନଷ୍ୟ ଭିତରେ ସେ ବ୍ରହ୍ମବୁଦ୍ଧି । ତାଙ୍କ ନିର୍ଦ୍ଦେଶରେ ସୃଷ୍ଟି ଆତଯାତ । ତାଙ୍କର ପାଦପାଣିନାହିଁ । ସେ

ମଧ ଶୂନ୍ୟଦେହୀ । ସେହି ବ୍ରହ୍ମ ମାଳା ତିଳକରେ ନାହାନ୍ତି । ଭୀମ ଭୋଇ ତେଣୁ କହନ୍ତି–

ମାଳାରେ ନଥାଇ ସେ ତ ଭଜନାରେ ନାହିଁ ।
ମାଳା ଭଜନାରେ ଜ୍ଞାନ ପାଇବ ସେ କାହିଁ ।

× × ×

ମାଳାରେ ନଥାଇ ସେ ତ ଭଜନରେ ନାହିଁ
ମନ୍ତ୍ର ଯନ୍ତ୍ର ନାହିଁ ମାଳ ଶୂନ୍ୟ ଅଛି ରହି ।
ସୋଽହଂସ ଭଜନ ସିନା ଅଟେ ବ୍ରହ୍ମମୂଳ
ଅକାମ ଭଜନ କୃତ ନାହିଁ ପ୍ରତିକୂଳ ।                    – ବ୍ରହ୍ମଚାଳକ

ସେ ପୁଣିକହନ୍ତି ବ୍ରହ୍ମ ସ୍ଥାବରୁ ଜଙ୍ଗମ କୀଟ ପତଙ୍ଗ ସକଳ ଘଟରେ ସମାନ ଭାବରେ ପୂରି ରହିଛନ୍ତି । ସେ 'ଭାବକୁ ନିକଟ ଅଭାବେ ଅଭେଟ ଭକତ ଭାବେ ପରାବଶ' । (ସ୍ତୁତିଚିନ୍ତାମଣି ୧୫ ବୋଲି) ଅଥଚ ସେ ତାଙ୍କର ଗୁହାରି ଶୁଣୁନାହାନ୍ତି । ସେ ପୁଣି ଗୁରୁ ନୁହନ୍ତି, ଶିଷ୍ୟ ନୁହନ୍ତି, ନୁହନ୍ତି ମଧ ସାଆନ୍ତ ଓ ସେବକ । ବ୍ରାହ୍ମଣ ନୁହଁନ୍ତି, ଚଣ୍ଡାଳ ନୁହଁନ୍ତି, ନୁହଁନ୍ତି ମଧ ବଡ଼ଲୋକ । ସେ ସ୍ତ୍ରୀ ନୁହଁନ୍ତି, ପୁରୁଷ ନୁହଁନ୍ତି, ନୁହଁନ୍ତି ମଧ ଅଣ୍ଡିରା କିମ୍ବା ମାଈ । ପିତା ନୁହନ୍ତି, ମାତା ନୁହନ୍ତି, ନୁହନ୍ତି ମଧ ଭଉଣୀ ଓ ଭାଇ । ନୀଳ ନୁହନ୍ତି, ବୀର ନୁହଁନ୍ତି, ନୁହଁନ୍ତି ମଧ କଷା ବା ପିତା । ତାଙ୍କର ଜାତି ନାହିଁ, ଗୋତ୍ର ନାହିଁ, ବାଛ ବିଚାର ନାହିଁ । ସେ ମଧ ଜଳ ନୁହନ୍ତି, ପବନ ନୁହନ୍ତି, ରୂପ ଅରୂପ, ଜ୍ଞାନ, ଅଜ୍ଞାନ କିଛି ନୁହଁନ୍ତି । (ସ୍ତୁତିଚିନ୍ତାମଣି, ୩୬ ବୋଲି) । ଅଥଚ ସେ ସବୁ କିଛି । ସେ ଘଟେ ଘଟେ ବିଦ୍ୟମାନ। ଯେହେତୁ ସେ ପ୍ରତି ଘଟରେ ଅଛନ୍ତି ତେଣୁ ପ୍ରତି ଘଟ ହିଁ ମନ୍ଦିର । ସେହି ଘଟରେ ବ୍ରହ୍ମଙ୍କୁ ଚିହ୍ନିଲେ ଫଳ ପୂର୍ଣ୍ଣତା ଲାଭ କରେ । ଘଟରୂପକ ଘରର ଘରଣୀ ହିଁ ଜୀବ । ତାକୁ ଘେନି ରତି କଲେ; ଅର୍ଥାତ ଆତ୍ମା ଓ ପରମାତ୍ମାଙ୍କ ମିଳନ ଘଟିଲେ ଶରୀର ମହତ୍ତ୍ୱ ଫୁଟି ଉଠେ । (ଶ୍ରୁତିନିଷେଧ ଗୀତା) । ତେଣୁ ଭୀମ ଭୋଇ କହନ୍ତି–

ଦୁର୍ଲଭ ଜନମ ପିଣ୍ଡ ସବୁଠାରୁସୁଖ,
ଜନ୍ମ ମରଣଟି ଏ ଦେହକୁ ବଡ଼ ଦୁଃଖ ।

– ବ୍ରହ୍ମନିରୂପଣ ଗୀତା – ୧ମ ଅ.

ନ ଥାଇ ପାଠ ଦୋଷ ଭୟ । ଦେହ ସର୍ବଦା ପୁଣ୍ୟମୟ ।
- ନିର୍ବେଦ ସାଧନ - ୧୧ଶ ଅ.

ଜୀବ ଯୁବତୀ ବୋଲୁଅଛି ଯେ ପ୍ରାଣନାଥ
ଦୁର୍ଲଭ ଶରୀର ଗୋଟି ଯେ ଏତେ ମତ ।
ଏ ଦେହରେ ଆଦି ଅନ୍ତ ଯେ କେ ନ ପାଇ
ଜନ୍ମ ଲଭି ଚାରିଯୁଗେ ଯେ ଗଲେ ବହି ।
- ଆଦି ଅନ୍ତ ଗୀତା

ଏ ପିଣ୍ଡ ବ୍ରହ୍ମାଣ୍ଡ ସଖୀ ଗୋ ଏକମତ
ଦୁର୍ଲଭ ଜନମ ଗୋଟିଗୋ ଅଟେ ହିତ ।
ମାନବ ଜନ୍ମରେ ଜ୍ଞାନ ଗୋ ହେବ କାହିଁ
ଅନେକ ଜନ୍ମିଲେ ତେହୁ ଗୋ ଚେତା ନାହିଁ । - ଆଦି ଅନ୍ତ ଗୀତା

ଚଉତିଶା, ଭଜନମାଳା, ସ୍ତୁତିଚିନ୍ତାମଣି ଆଦି ଗ୍ରନ୍ଥରେ ମଧ୍ୟ ଭୀମ ଅନନ୍ତ ପୁରୁଷ ମହିମା ସ୍ୱାମୀ, ଘଟ-ବ୍ରହ୍ମାଣ୍ଡ, ନାମ-ବ୍ରହ୍ମ ଓ ସର୍ବୋପରି ମାନବ ଜନ୍ମର ମହତ୍ତ୍ୱ ସଂପର୍କରେ ବର୍ଣ୍ଣନା କରିଅଛନ୍ତି । ସେ ବାରମ୍ବାର କହିଛନ୍ତି - 'ଦେହ ଶବ୍ଦେ ଭେଦ କର / ରୂପ ଚିହ୍ନି ଅରୂପକୁ ଧର', 'ଶରୀରକୁ ଅର୍ଥ କର ସାଧୁସନ୍ଥ ଭେଟିବ ବ୍ରହ୍ମଘର।' ଦୁର୍ଲଭ ଜନ୍ମପିଣ୍ଡେ ସକଳ ସିଦ୍ଧି (ଭଜନମାଳା), ଦୁର୍ଲଭ ଜନମ ମଣିଷ ଶରୀର ସଂସାରରେ କଲା ସାର' (ସ୍ତୁତିଚିନ୍ତାମଣି) ଆଦି ଉକ୍ତି ମାଧ୍ୟମରେ ଭୀମ ଯେପରି ମାନବ ଶରୀରକୁ ଗୁରୁତ୍ୱ ଦେଇ ଦେହ ମଧ୍ୟ ଦେଇ ଦେହାତୀତଙ୍କ ସାନ୍ନିଧ୍ୟ ଲାଭ ପାଇଁ କହିଛନ୍ତି ତାହା ଅନନ୍ୟ। ଏହାମଧ୍ୟ ଉପନିଷଦ, ଗୀତା, ଭାଗବତ ଆଦି ଗ୍ରନ୍ଥ ସହିତ ବିଭିନ୍ନ ସନ୍ଥ କବିଙ୍କ ରଚନାରେ ପରିଦୃଷ୍ଟ । ସେ ସକଳ ମଣିଷ ସମାଜକୁ ଉଦ୍‌ବୋଧନ ଦେଇ କହିଅଛନ୍ତି :

ମାନବ ଜନ୍ମରେ ସବୁ ଗୋ ଭଲ ଅଛି
ଆଉ ଜନ୍ମମାନଙ୍କରେ ଗୋ ନୋହି କିଛି ।
ଅଲେଖ ମହିମା ପାଦ ଗୋ ସାରବ୍ରହ୍ମ
ସେ ଘଟଣା କରିଚନ୍ତି ଗୋ ସର୍ବତମ ।
ଶୁଣିମା ସାଧୁ ସୁଜନେ ହୋ ମନେ ଦେଇ
ଏକ ବ୍ରହ୍ମ ବିନା ଆନ ହେ ନ ଜାଣଇ । - ଆଦି ଅନ୍ତ ଗୀତା

ସମ୍ବେଦନଶୀଳ ମଣିଷର ହୃଦୟରେ ଭୀମ ଭୋଇଙ୍କ ଅସ୍ତିତ୍ୱ । ଊନବିଂଶ ଶତାବ୍ଦୀର ବ୍ୟଥା ବ୍ୟର୍ଥତା ବେଦନାମୟ ଲୋକଙ୍କୁ ସେ ଦେଖିଛନ୍ତି । ଅନୁଭବିଛନ୍ତି ସମାଜପତି, ଶାସନମୁଖ୍ୟ ଓ ଧର୍ମ ନାମରେ ବ୍ୟଭିଚାର ତଥା ସ୍ୱେଚ୍ଛାଚାର ସୃଷ୍ଟି କରୁଥିବା ମଣିଷମାନଙ୍କର କ୍ଷୁଦ୍ରତା ଓ ସଂକୀର୍ଣ୍ଣତାକୁ । ତେଣୁ ସେ ମହିମା ସ୍ୱାମୀଙ୍କୁ ଅଣରୂପ ବ୍ରହ୍ମ ଭାବରେ ମାନି ନେଇ ଲେଖନୀ ମାଧ୍ୟମରେ ବିଦ୍ରୋହ ସୃଷ୍ଟି କରିଛନ୍ତି । ତାଙ୍କ ସମ୍ମୁଖରେ ଭାସି ଉଠିଛି ପ୍ରାଣୀଙ୍କ ଅଶ୍ରୁ ଓ କାରୁଣ୍ୟ । ତେଣୁ ସେ ଘୋଷଣା କରିଛନ୍ତି –

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେ ବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।

– ସ୍ତୁତିଚିନ୍ତାମଣି – ୨୭ଶ ବୋଲି

ତାଙ୍କ ପରବର୍ତ୍ତୀ ବିଂଶ ଶତାବ୍ଦୀର ଦ୍ୱିଦଶନ୍ଧି ଭିତରେ ସ୍ୱଭାବ କବି ଗଙ୍ଗାଧର ମେହେର ଓ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ କାବ୍ୟ କବିତାରେ ହୋଇଛି ପ୍ରତିଧ୍ୱନିତ । ଭୀମ ଧର୍ମକୁ ମାନିଛନ୍ତି, ଧର୍ମ ନାମରେ ଅତ୍ୟାଚାରକୁ, ବାହ୍ୟାଚାରକୁ, ପିତୁଳା ପୂଜାକୁ, ଧର୍ମଧ୍ୱଜୀଙ୍କ ଅହଂକାରକୁ ନିନ୍ଦା କରିଛନ୍ତି । ଧର୍ମର ଯାହା ମୁଖ୍ୟ ଆଧାର, ସତ୍ୟ, ଶାନ୍ତି, ଦୟା, କ୍ଷମାଶୀଳତା ଓ ଅହିଂସାକୁ ସେ ମାନିଛନ୍ତି ଓ ଏହା ଦ୍ୱାରା ମାନବ-ମୈତ୍ରୀ ଓ ବିଶ୍ୱ ପରିବାର ଉପରେ ଦେଇଛନ୍ତି ଗୁରୁତ୍ୱ । ତେଣୁ ତାଙ୍କର ଉପଦେଶ-ଧର୍ମକୁ ସ୍ଥାପ ଘରେ ଘରେ / ସତ୍ୟ ପ୍ରଚାର ନିରନ୍ତରେ / ଧରିତ୍ରୀ ଉଶ୍ୱାସ ହୋଇବ / ପାତକମାନ ପୋଡ଼ିଯିବ / ଧର୍ମ ପଥକୁ କର ଆଶା / ନାହିଁ ବା ଅନ୍ୟଟି ଭରସା / ଧର୍ମେ ଯେ ଆତଯାତ ହେବ / ସେ ପ୍ରାଣୀ ସଂସାରେ ରହିବ / ଧରିବ ଯେବେ ଦୃଢ଼ କରି / କଳି ଯୁଗକୁ ହେବ ପାରି' (ଅଷ୍ଟକବିହାରୀ ଗୀତା) । ଭୀମ ଭୋଇଙ୍କ ଦୃଷ୍ଟିରେ ମହିମା ସ୍ୱାମୀ ବୈଷ୍ଣବ ମୂର୍ତ୍ତିଧର । ସେ କିନ୍ତୁ ସ୍ୱୟଂ ମହିମା ସ୍ୱାମୀ । ତାଙ୍କ ସହିତ ସେ ବୈଷ୍ଣବଧର୍ମକୁ ମିଳାଇ ଦେଇଥିଲେ ମଧ୍ୟ ମହିମା ସ୍ୱାମୀ ହୋଇଛନ୍ତି ଆଦି ବିଷ୍ଣୁ ବା ନାରାୟଣଙ୍କ ପ୍ରତିରୂପ । ତେଣୁ ବୈଷ୍ଣବ ଧର୍ମର ଅଦ୍ୱୈତ ମତକୁ ସେ ଗ୍ରହଣ କରିନେଇଛନ୍ତି । ସେ ସତ୍ୟସ୍ୱରୂପ । ତାଙ୍କୁ ଆଶ୍ରୟ କଲେ, ଭଜନ କଲେ, କୌଣସି ପ୍ରକାର ମିଥ୍ୟା ଚଳେ ନାହିଁ, ପରଦାରା ଚଳେ ନାହିଁ, ହିଂସା ଚଳେ ନାହିଁ, ଖଟମିଛ ଚଳେ ନାହିଁ । ତାଙ୍କୁ ଭଜନ କଲେ ପରନାରୀ ହୋଇଯାଆନ୍ତି ମାତା ସମାନ ।

ପରପୁରୁଷ ମଧ୍ୟ ହୋଇଯାଆନ୍ତି ପିତା ସମାନ । ମହିମା ଭଜନରେ ସୁଖ, ଦୁଃଖ, ମାନଅପମାନ, ଶତ୍ରୁମିତ୍ର ସବୁ ସମାନ । ନାରୀ ପକ୍ଷରେ ପତି ସେବା ହୋଇଯାଏ ପରମ ଧର୍ମ । ମହିମା ଭଜନ କରି ପରପୁରୁଷଙ୍କୁ ଦେହ ଦାନ କରିବା ପାପ । ତେଣୁ ମହିମାଧର୍ମ ଏକ ସମାଜନିଷ୍ଠ ଓ ମାନବନିଷ୍ଠ ଧର୍ମ । ଭୀମଙ୍କ ଦୃଷ୍ଟିରେ ଅଲେଖ ମହିମା ବ୍ରହ୍ମ ସ୍ୱୟଂ ଧର୍ମ, ସତ୍ୟ, ଶାନ୍ତି, ଦୟା, କ୍ଷମାର ସେ ମୂର୍ତ୍ତିମନ୍ତ ଅବତାର । ସେହି ବ୍ରହ୍ମଙ୍କୁ ଯିଏ ବିଶୁଦ୍ଧ ଅନ୍ତରରେ ଉପଲବ୍ଧି କରେ ସେ ହୋଇଯାଏ ପ୍ରକୃତ ଧର୍ମନିରପେକ୍ଷ । ଏହା ଆଧୁନିକ ଭାରତବର୍ଷରେ ସାମ୍ବିଧାନିକ ଧର୍ମନିରପେକ୍ଷତା ନୁହେଁ । ଏଥିରେ ସବୁଧର୍ମକୁ ସମାନତା ପ୍ରଦାନ କରାଯାଇଥିଲେ ପ୍ରତ୍ୟେକ ଭିତରେ ସାଂପ୍ରଦାୟିକ ମୌଳବାଦୀ ଭାବ ଉଦଗ୍ର ହୋଇ ଉଠୁଛି । ପରସ୍ପର ପ୍ରତି ପ୍ରକାଶ ପାଉଛି ଅସହିଷ୍ଣୁତା । ତେଣୁ ସୃଷ୍ଟି ହେଉଛି ରକ୍ତାକ୍ତ ସଂଗ୍ରାମ । ମାତ୍ର ମହିମାଧର୍ମରେ କୌଣସି ରୂପବନ୍ତ ଦେବତା ନାହିଁ । କୌଣସି ସାଂପ୍ରଦାୟିକ ଧର୍ମର ମୋହର ମଧ୍ୟ ନାହିଁ । ବ୍ରହ୍ମ ଅରୂପ ଓ ଅଣାକର ହୋଇଥିବାରୁ ଓ ଏ ଧର୍ମରେ ପଣ୍ଡା ପଢ଼ିଆରୀ, ମୁଲ୍ଲା ମୌଲବୀ ଓ ଫାଦର୍ ନ ଥିବାରୁ ଏହା ପୂର୍ଣ୍ଣତଃ ହୋଇଛି ଧର୍ମନିରପେକ୍ଷ ଓ ଏକ ବ୍ରହ୍ମବାଦୀ । ଏ ଧର୍ମ ମଧ୍ୟ ବୌଦ୍ଧ ଧର୍ମର ଶେଷ ସ୍ମାରକ ନୁହେଁ। ଏ ଧର୍ମରେ ବ୍ରହ୍ମ ସତ୍ୟ ଓ ଏହା ମଣିଷ ତଥା ଜଗତକୁ ଧରି ଗତିଶୀଳ। ଜଗତ, ଜୀବନ ଓ ମଣିଷ ଭିତରେ ଏକମାତ୍ର ବ୍ରହ୍ମ ସତ୍ୟ । ଏ ଧର୍ମରେ ବୈରାଗ୍ୟ ଅଛି ମାତ୍ର ତାହା କରୁଣାତ୍ମକ ବୈରାଗ୍ୟ । ଏହା ଜୀବନ, ଜଗତ, ମଣିଷ ଓ ସଂସାରକୁ ତ୍ୟାଗ କରିବାକୁ କୁହେ ନାହିଁ; ଜଗତ ଓ ମଣିଷ ଭିତରେ ହିଁ ମଣିଷମାନଙ୍କୁ ଆଧ୍ୟାତ୍ମିକମାର୍ଗରେ ଉତ୍ତରଣ କରିବାକୁ ଗୁରୁତ୍ୱ ଦିଏ । ଜାତି ବର୍ଣ୍ଣ ବ୍ୟବସ୍ଥା, ଯାହା ସୁବିଧାବାଦୀ ମଣିଷର ସୃଷ୍ଟି, ତାହାକୁ ବିରୋଧ କରେ ରାଗ, ଦ୍ୱେଷ, ହିଂସା, ବାଦ, ବିବାଦ, ମିଥ୍ୟା ଓ ପାପକୁ ଘୃଣା କରେ । ବିଳାସ ଓ ଉପଭୋଗ ତୃଷ୍ଣାକୁ ବିରୋଧ କରି ସରଳ ଜୀବନ ପାଇଁ ପ୍ରେରଣା ଦିଏ। ମାଟି, ମଣିଷ ଓ ବ୍ରହ୍ମଙ୍କୁ ଏକ ଭାବବିନ୍ଦୁକୁ ନେଇ ଆସେ । ଭୀମ ସ୍ପଷ୍ଟ ଲକ୍ଷ୍ୟ କରିଛନ୍ତି କଳି ଯୁଗରେ ମୂର୍ତ୍ତିପୂଜା, ସାଂପ୍ରଦାୟକତା ଓ ଧର୍ମରେ ଭିନ୍ନତା ହୋଇଛି ସକଳ ବିପର୍ଯ୍ୟୟର କାରଣ । ମହିମାଙ୍କ ଆଜ୍ଞା ପାଳନ ଦ୍ୱାରା ଓ ତାଙ୍କଠାରେ ସଂପୂର୍ଣ୍ଣ ଶରଣ ଦ୍ୱାରା ମଣିଷ ପରମ ଶାନ୍ତି ଲାଭ କରେ । ସେ ଅନୁଭବ କରେ ମହିମା ନାମହିଁ କର୍ମବେଦ, ମାଆ, ମହାମାୟା, ମେଦିନୀ ଓ ଘଟ ଭିତରେ ଖେଳୁଥିବା ମୀନ । ତେଣୁ ସେ ମହୌଷଧି, ମହାପୁଣ୍ୟ, ପୂର୍ଣ୍ଣବ୍ରହ୍ମ, ମହାଶୂନ୍ୟ ଓ ଭକତମାନଙ୍କର

'ମୁକତି ପସରା' । ସେହି ମହିମାଙ୍କ ଅନନ୍ତ ଗର୍ଭରୁ ଚାରିବେଦ, ଶାନ୍ତଶୀଳ ଦୟା କ୍ଷମା ଚାରିଧର୍ମ, ଚାରି ଦିଗ, ଚାରି ଯୁଗ, ଅନନ୍ତ, ଶ୍ରୀରାମ, ଶ୍ରୀକୃଷ୍ଣ, ଜଗନ୍ନାଥ, ଚାରି ବ୍ରହ୍ମ, ବ୍ରହ୍ମା, ବିଷ୍ଣୁ, ଶିବ ତିନିପୁର, ସ୍ତ୍ରୀ-ପୁରୁଷ - ଚନ୍ଦ୍ର - ସୂର୍ଯ୍ୟ, ନବମେଦିନୀ, ନବକୋଟି ଦେବୀ, ଅଷ୍ଟ କୋଟି କ୍ରାନ୍ତାନୀ, ପଞ୍ଚଭୂତ, ପୁରୁଷ ଓ ସ୍ତ୍ରୀ ଦୁଇଟି ଜାତି , କାମଦେବ ରତି ରଜ ବୀର୍ଯ୍ୟ ଆଦି ଜନମ । ତେଣୁ ମହିମା ସର୍ବକାରଣର କାରଣ, ସର୍ବ ଶକ୍ତିମାନ ଓ ସବୁ କିଛିର ସ୍ରଷ୍ଟା ।

ଭୀମ ଭୋଇଙ୍କୁ ମହିମାଧର୍ମ ପାଇଁ କେତେ ଭର୍ତ୍ସନା ଶୁଣିବାକୁ ହୋଇଛି । ଯେତବେଳେ ସେ 'ମହିମା ମହିମା' କହିବାକୁ ନିବେଦନ କରିଛନ୍ତି ଲୋକେ ତାଙ୍କୁ 'କିରସ୍ତାନ' ହୋଇଗଲା କହି ନିନ୍ଦା କରିଛନ୍ତି । ଯେତେବେଳେ ସେ 'ଅଲେଖ ଅଲେଖ' କହିଛନ୍ତି ତାଙ୍କୁ ଦାରୁଣ କଷ୍ଟ ଦେଇଛନ୍ତି । 'ସତ୍ୟ ଧର୍ମ ସତ୍ୟ ଧର୍ମ' କହିବାରୁ ତାଙ୍କୁ ଗାଳି ଦେଇଛନ୍ତି । 'ଅବଧୂତ ଅବଧୂତ ' କହିବାରୁ ତାଙ୍କୁ 'ବାବନାଭୂତ' ବୋଲି କହିଛନ୍ତି । 'ନିଷ୍କାମ ନିଷ୍କାମ' କହିବାରୁ ନିଶରେ ହାତ ମାରି ଭୟ ଦେଖାଇଛନ୍ତି । 'ନିର୍ଗୁଣ ନିର୍ଗୁଣ' କହିବାରୁ ତାଙ୍କୁ ଗ୍ରାମରୁ ବାହାର କରିଦେଇଛନ୍ତି । ସେ ଯେତେବେଳେ କହିଲେ 'ନିର୍ବେଦ ନିର୍ବେଦ', 'ଏକବହ୍ମ ଏକ ବ୍ରହ୍ମ', 'ନାମ ଭଜ, ନାମ ଭଜ', 'ଧୁନି ଦେଖ ଧୁନି ଦେଖ', 'ଅରୂପା ଅରୂପା', 'ଅଜପା ଅଜପା' ଆଦି କଥା କହିଲେ ଲୋକେ ତାଙ୍କୁ ଅଛବ କହିଲେ, ତାଙ୍କୁ ଏକାକୀ ଛାଡ଼ିଗଲେ, ନାନା ଧମକ ଦେଲେ, ଜୀବନରେ ମାରିଦେବାକୁ ମଧ୍ୟ କହିଲେ । ଏସବୁ ସତ୍ତ୍ୱେ ଭୀମ ନିଜ ଭକ୍ତି ଓ ଆଦର୍ଶରେ ଥିଲେ ଅଟଳ । ସେ ଜାଣନ୍ତି ଏହି ଲୋକେ ନିଜ ବୁଦ୍ଧିରେ କିଛି କହୁନାହାନ୍ତି ବା କରୁନାହାନ୍ତି; କିଛି ସୁବିଧାବାଦୀ ଓ ବଡ଼ ବଡ଼ ଲୋକଙ୍କ ଦ୍ୱାରା ପ୍ରରୋଚିତ ହୋଇ କହୁଛନ୍ତି । ସକଳ ବିରୋଧକୁ ସାମନା କରି ଭୀମ ଭୋଇ ଏହି ନୂତନ ଧର୍ମର ବାଣୀ ଉଦାତ୍ତ କଣ୍ଠରେ ଶୁଣାଇଛନ୍ତି ।

ଅତଏବ ଭୀମ ଭୋଇ ମହିମାଧର୍ମର ଆଦି କବି ଓ ଆଦି ଦାର୍ଶନିକ ଭାବରେ ରାଶି ରାଶି ଗ୍ରନ୍ଥ ଭିତରେ ଯାହା ଲେଖି ଦେଇ ଯାଇଛନ୍ତି ତାହା ସଂପ୍ରତି କେବଳ ମହିମାଧର୍ମାବଲମ୍ବୀମାନଙ୍କ ପାଇଁ ନୁହେଁ, ସମଗ୍ର ଓଡ଼ିଶାର ସକଳ ମଣିଷମାନଙ୍କ ଉତ୍ପ୍ରେଣର ପାଇଁ ଉଦ୍ଦିଷ୍ଟ । ଏହି ଧର୍ମ ଜାତି, ବର୍ଣ୍ଣ, ପଦପଦବୀ, ସିଂହାସନ ଆଦିର

ବିରୋଧୀ । ସମର୍ଥନ କେବଳ ମଣିଷଙ୍କ ପ୍ରତି । ପ୍ରକୃତି, ସଂସ୍କୃତି ଓ ପରିବେଶର ସନ୍ତୁଳନ ପ୍ରତି ଶ୍ରଦ୍ଧାଶୀଳ । ଏକ ବ୍ରହ୍ମଙ୍କୁ ମାନିନେଲେ ଆଉ କୌଣସି ପ୍ରଫେଟ ନୁହେଁ, ମଣିଷଙ୍କୁ ଓ ଜଗତକୁ ମାନିନେବା ସହଜ ହୁଏ । ଭୀମଭୋଇ ତାଙ୍କର ଧର୍ମ, ଦର୍ଶନ ଓ କବିତ୍ୱପାଇଁ ଆଦିବାସୀଙ୍କଠାରୁ ଆରମ୍ଭ କରି ସଭ୍ୟ ଜନପଦବାସୀଙ୍କ ପାଖରେ ଆପଣାର ହୋଇଗଲେ । ଭୀମ ଭୋଇଙ୍କ କାବ୍ୟ କବିତା ହୋଇଗଲା ଓଡ଼ିଆ ସାରସ୍ୱତ ଭଣ୍ଡାରର ଅମୂଲ୍ୟ ରତ୍ନ । ତାହା କାଳର ହୋଇ ମଧ୍ୟ କାଳାତୀତ । ପୁରାତନ ହୋଇ ମଧ୍ୟ ସର୍ବାଧୁନିକ ମାନସିକତାର ମନ୍ମୟ ଅଭିବ୍ୟକ୍ତି । ତେଣୁ ଭୀମଭୋଇଙ୍କ କବିତା ନିର୍ମଳ ଭକ୍ତି, କବିତ୍ୱ ଓ ଦାର୍ଶନିକତାର ଯେ ଅପୂର୍ବ ତ୍ରିବେଣୀ ସଂଗମ; ଏକଥା କହିଲେ ସତ୍ୟର ଅପଳାପ ହେବ ନାହିଁ ।

–୦–

# ଭୀମ ଭୋଇ ଓ ମହିମାଧର୍ମ: ଇତିହାସର ସନ୍ଧାନରେ*

**ଦେବେନ୍ଦ୍ର କୁମାର ଦାଶ**

୧୯୫୧ ମସିହାରେ ଭୀମ ଭୋଇଙ୍କ କବିପ୍ରତିଭାର ବିଶ୍ଳେଷଣ କରି ଅଧ୍ୟାପକ ସର୍ବେଶ୍ୱର ଦାଶ ଲେଖିଥିଲେ:

"ଏକ ଶ୍ରେଣୀର କବି ଅଛନ୍ତି ଯେଉଁମାନଙ୍କୁ ଚିରାଚରିତ ପରଂପରାର ଅବଲମ୍ୱନରେ ହେଉ ଅଥବା ଅନ୍ୟବିଧ ସାର୍ଥକ ନାମକରଣର ଅଭାବ ଜନିତ ହେଉ ଜଗତରେ ସୁଧୀସମାଜ କବି ଆଖ୍ୟା ପ୍ରଦାନ କରିଥିଲେ ହେଁ, କଳ୍ପନାର ଯାଦୁ, କଥାର ବାଜିଗିରି, କବିତାର ଚତୁରୀ, ନିର୍ମାଣର କାରିଗରୀ, ଶବ୍ଦପରି ପ୍ରକାଶର ମଣ୍ଡନବିଧି, ବିଷୟବସ୍ତୁର ସଯତ୍ନବିନ୍ୟାସ ଏବଂ ରସାଦିର ସୁନିପୁଣ ସଂସ୍ଥାନ ପ୍ରତି ଏମାନଙ୍କର କେବେ ଆସ୍ଥା ବା ଆଗ୍ରହ ନ ଥାଏ; 'ମନ୍ଦଃ କବି ଯଶଃ ପ୍ରାର୍ଥୀ' ହେବାର ସ୍ୱପ୍ନ ଏମାନେ କେବେ ଦେଖନ୍ତିନି; କିନ୍ତୁ ଦର୍ଶକର ଚିତ୍ତବିନୋଦନ, ଶ୍ରୋତାର କର୍ଣ୍ଣରସାୟନ, ରସିକ ପାଠକର ତୃପ୍ତିବିଧାନ ଏବଂ କଠୋର ସମାଲୋଚକର ବଜ୍ରମୁଷ୍ଟିର ଶିଥିଳକରଣଠାରୁ ଆହୁରି ଉଚ୍ଚତର ଏବଂ ମହତ୍ତର ନିୟମ ପରମ୍ପରାଦ୍ୱାରା ଏମାନଙ୍କର କୃତି ସମୂହର ରୂପରେଖା ନିୟନ୍ତ୍ରିତ ହୋଇଥାଏ। ରୂପ, ରସ, ଗନ୍ଧ, ସ୍ପର୍ଶ, ଶବ୍ଦର ମଦିର ଆହ୍ୱାନ, ସୁମନୋହର ଇନ୍ଦ୍ରିୟଜଗତର ନିବିଡ଼ ଆକର୍ଷଣଠାରୁ ବହୁ ଊର୍ଦ୍ଧ୍ୱରେ ଅବସ୍ଥିତ ଏକ ଚିନ୍ମୟ ଆଧ୍ୟାତ୍ମଲୋକ ସହିତ ଏମାନଙ୍କ ଅନ୍ତରାତ୍ମା ଏକ ଅବିଚ୍ଛିନ୍ନ

---

* 'ଭୀମଭୋଇ ଓ ମହିମା ଧର୍ମ', ଏଷଣା – ୩୪ ଖଣ୍ଡ ଜୁନ୍ ୧୯୯୭ରୁ ଗୃହୀତ।
(ସଂପାଦକ)

ଯୋଗସୂତ୍ରରେ ଗ୍ରଥିତ । ହୃଦୟର ବାଣୀ, ଅନ୍ତରରର ଅନ୍ତର୍ନାଦ ଏବଂ ସ୍ୱଲୋକର ପୁଣ୍ୟ ଆଲୋକ ରୂପେ ଅନୁଭୂତ ଚିନ୍ମୟ ଧାମର ଇଙ୍ଗିତ ଓ ଆବେଗକୁ ଏମାନେ ଧର୍ମର ଆହ୍ୱାନ ଓ କର୍ତ୍ତବ୍ୟର ତାଡନାରେ ଜଗତରେ ପ୍ରଚାର କରିବାକୁ ଜୀବନର ସର୍ବଶ୍ରେଷ୍ଠ ସୁଖ ମଣିଥାନ୍ତି । ଜଗତ ଶୁଣୁ ବା ନ ଶୁଣୁ, ଜନସମାଜ ସମାଦାର କରୁ ବା ନକରୁ, ସାହିତ୍ୟର ଦରବାରରେ ସେମାନଙ୍କର କୃତିସମୂହ ନିନ୍ଦିତ ବା ବନ୍ଦିତ ହେଉ, ନିରାଲମ୍ବ ନିର୍ବିକାର ଚିତ୍ତରେ ସେମାନେ ସେମାନଙ୍କର କର୍ମ କରି ଚାଲିଯାଆନ୍ତି । ସେମାନଙ୍କୁ ସ୍ରଷ୍ଟା ନ କହି ଦ୍ରଷ୍ଟା, କବି ନ କହି ସାଧକ, ମୃଣ୍ମୟ ଚାରୁଚିତ୍ରକର ନ କହି ଚିନ୍ମୟଧାମର ସନ୍ଦେଶବାହକ ଦେବଦୂତ କୁହାଯିବା ଉଚିତ । ଭୀମଭୋଇ ଏହି ଅର୍ଥରେ କବି । ଓଡ଼ିଆ ସାହିତ୍ୟରେ ସେ ଅଚ୍ୟୁତାନନ୍ଦ, ଦେବଦୁର୍ଲ୍ଲଭ, ଜଗନ୍ନାଥ ଦର୍ଶିତ କାବ୍ୟ ସରଣୀର ଦେଶିକ, ସେମାନଙ୍କ କୃତି ସମୂହର ରସିକ ଗ୍ରାହକ, ସେହି କାବ୍ୟ ପରଂପରାର ସୁଯୋଗ୍ୟ ଦାୟାଦ ।" (ଦାଶ: ୧୯୫୧:ପୃ.୨୦୩-୨୦୪) ।

ଏହି ଦୀର୍ଘ ଉଦ୍ଧୃତିଟି ବିଶ୍ଳେଷଣ କଲେ ଦେଖାଯାଏ-ଇଙ୍ଗିତରେ ଏଥିରେ ତିନୋଟି କଥା ଉପସ୍ଥାପିତ: (କ) ଅନ୍ୟ କୌଣସି ଯଥାର୍ଥ ପରିଚିତି-ସୂଚକ ଶବ୍ଦ ନ ଥିବାରୁ 'ଭୀମ ଭୋଇ' କବି ଭାବରେ ଗୃହୀତ; ନହେଲେ କବିତାର ଯେଉଁ ଗୁଡ଼ିକ ସାଧାରଣ ଗୁଣ, ସେହିଗୁଣ ଗୁଡ଼ିକର ଅଭାବ ଭୀମଭୋଇଙ୍କ କବିତାରେ ରହିଛି; (ଖ) 'କବି' ଶବ୍ଦକୁ ସଂପ୍ରସାରିତ କରାଯାଇ ଓ କବିତାର ଗୁଣକୁ ପ୍ରସାରିତ କରାଯାଇ ଭୀମଭୋଇଙ୍କ କବିତାକୁ ବିଶ୍ଳେଷଣ କଲେ ଭୀମ ଭୋଇ ଜଣେ ଶ୍ରେଷ୍ଠ କବି ଭାବରେ ଗୃହୀତ ହେବେ; (ଗ) ଓଡ଼ିଶାରେ କବି ଭାବରେ ଗୃହୀତ ଅନ୍ୟ କେତେଜଣ ଲେଖକଙ୍କ ପଥର ପଥିକ ହୋଇଥିବାରୁ ତାଙ୍କୁ, ବସ୍ତୁତଃ, କବି କହିବାରେ କୌଣସି ଅସୁବିଧା ନାହିଁ ।

ଭୀମଭୋଇଙ୍କୁ ଜଣେ କବି ରୂପେ ଗ୍ରହଣ କରି ତାହାଙ୍କ ରଚନାକୁ 'କବିତା' ରୂପରେ ପ୍ରତିଷ୍ଠା କରିବାକୁ ଯାଇ ଆମର ସମାଲୋଚକମାନେ ଯେଉଁ ଭାଷାସଂକଟର ସମ୍ମୁଖୀନ ହୋଇଛନ୍ତି-ଉପରୋକ୍ତ ଉଦ୍ଧୃତି ତାହା ଦୃଷ୍ଟାନ୍ତ । 'ଭୀମ ଭୋଇ'ଙ୍କୁ 'ଭୀମଭୋଇ' ବୋଲି ସମ୍ବୋଧନ କରିବା ଭିତରେ ଯେ ଆମର ଏକ ବିଦ୍ୱାନ-ସୁଲଭ ହେୟ ମନୋଭାବ ରହିଛି, ତାହା ଅସ୍ୱୀକାର କରି ହେବନାହିଁ । କେବଳ ଅଧ୍ୟାପକ ସର୍ବେଶ୍ୱର ଦାଶ ନୁହନ୍ତି ଆମର ବହୁ ପ୍ରତିଷ୍ଠିତ ସମାଲୋଚକ/ଗବେଷକମାନେ

ଭୀମଙ୍କ ସଂପର୍କରେ ଆଲୋଚନା କଲାବେଳେ ଏଭଳି ଆତ୍ମ-ଦ୍ୱନ୍ଦର ସମ୍ମୁଖୀନ ହୋଇଥାନ୍ତି। କବିତାର ସଂଜ୍ଞା, ସ୍ୱରୂପ ନେଇ ସେମାନଙ୍କର ପରିଚିତ ଧାରଣା ଭୀମଙ୍କ ରଚନାକୁ 'କବିତା' ଭାବରେ ବିଶ୍ଳେଷଣ କଲାବେଳେ ହୁଏ ବିଡ଼ମ୍ବିତ। କେବଳ ଅଧ୍ୟାପକ ଦାଶ ନୁହନ୍ତି, ସୁସମାଲୋଚକ ଚିନ୍ତାମଣି ବେହେରାଙ୍କ ଉକ୍ତି ମଧ୍ୟ ଏହାର ଦୃଷ୍ଟାନ୍ତ-"ଅନ୍ଧ ଭୀମଭୋଇ ପ୍ରଥମେ ଭକ୍ତ, ପରେ କବି; ପ୍ରଥମେ ଦ୍ରଷ୍ଟା, ପରେ ସ୍ରଷ୍ଟା। ଅନ୍ଧ ଭୀମଭୋଇଙ୍କର ଭକ୍ତି ବିହ୍ୱଳ ଭାବତନ୍ମୟ ପ୍ରାଣର ଉଚ୍ଛ୍ୱସିତ ପରିପ୍ରକାଶ ହିଁ ତାଙ୍କର ରଚନାବଳୀ"। (ବେହେରା: ୧୯୬୦:ପୃ. ୧୧୦) ଜଣଙ୍କୁ ପ୍ରଥମରେ ଭକ୍ତ ଓ ପରେ କବି କହିବାରେ ହୁଏତ ସ୍ୱବିରୋଧ ନାହିଁ କିନ୍ତୁ ତାଙ୍କ କବିତାକୁ ବିଶ୍ଳେଷଣ କରିବାରେ ଥିବା ଅସୁବିଧାକୁ ଅତିକ୍ରମ କରିବାକୁ ଯାଇ କରାଯାଇଥିବା ଉପରୋକ୍ତ ମନ୍ତବ୍ୟ ସମାଲୋଚକଙ୍କ ଆପଣା ଭିତରେ ଥିବା ଆତ୍ମଦ୍ୱନ୍ଦ୍ୱରୁ ହିଁ ଉତ୍ସାରିତ। ଏହି ଆତ୍ମଦ୍ୱନ୍ଦ୍ୱର ପ୍ରଥମ ଓ ପ୍ରମୁଖ କାରଣ ହେଲା-ଆମ ଗବେଷକ, ସମାଲୋଚକ ଓ ଐତିହାସିକଗଣ ଯେଉଁ ଶ୍ରେଣୀରୁ ଉଦ୍ଭୁତ, ଭୀମ ଭୋଇଙ୍କର ସେହି ଶ୍ରେଣୀ/ସଂପ୍ରଦାୟ ସହ ଏକ ମୌଳ ବିରୋଧ ରହିଛି। ନାନା ଆବଶ୍ୟକତା ହେତୁ ଭୀମ ଭୋଇଙ୍କୁ ଆମ ବୌଦ୍ଧିତକ-ପରମ୍ପରାର ଅଙ୍ଗୀଭୂତ କରିବା ପାଇଁ ଆମେ ଚେଷ୍ଟା କରିଛୁ। ଏହି ପ୍ରଚେଷ୍ଟା ପଛଆଡେ ଯେଉଁ ସ୍ୱବିରୋଧ ରହିଛି, ତାହା ଅଧ୍ୟାପକ ଦାଶ ବା ଅଧ୍ୟାପକ ବେହେରାଙ୍କ ଆଲୋଚନାକୁ କେବଳ ଆକ୍ରାନ୍ତ କରିନାହିଁ; ବିଜୟଚନ୍ଦ୍ର ମଜୁମଦାର ଓ ନଗେନ୍ଦ୍ରନାଥ ବସୁଙ୍କ ଠାରୁ ପବିତ୍ରମୋହନ ନାୟକଙ୍କ ପର୍ଯ୍ୟନ୍ତ-ଭୀମଭୋଇଙ୍କ ସଂପର୍କରେ କିଛି ଆଲୋଚନା କରିଥିବା ସମସ୍ତ ଗବେଷକ/ ଆଲୋଚକ ଏହି ସ୍ୱିରୋଧରେ ପୀଡ଼ିତ। ଫଳରେ ଭୀମ ଭୋଇଙ୍କ ସଂପର୍କରେ ଦୁଇଟି ବିଷୟ କେବେ ବି ଆଲୋଚନା ହୋଇନାହିଁ: (କ) କେଉଁ ଐତିହାସିକ ବାଧବାଧକତାରେ କନ୍ଧ ଭୀମ ଭୋଇଙ୍କୁ ଆମେ ଜଣେ 'ସନ୍ଥ' ଭାବରେ ଗ୍ରହଣ କରିନେଇଛୁ; (ଖ) କେଉଁ କାରଣରୁ ଭୀମଭୋଇଙ୍କର ରଚନାଗୁଡ଼ିକ ଭିତରେ ସାହିତ୍ୟ-ମୂଲ୍ୟର ସନ୍ଧାନ କରି , ସେଗୁଡ଼ିକୁ ଉଚ୍ଚକୋଟୀର 'ସାହିତ୍ୟ' ବୋଲି ଆମେ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଛୁ। ଏହି ଦୁଇଟି ପ୍ରଶ୍ନର ସମ୍ମୁଖୀନ ହେବାକୁ ହେଲେ ସମକାଳୀନ ଓ ଠିକ୍ ପରବର୍ତ୍ତୀ କାଳରେ ଭୀମ କିଭଳି ସ୍ଥିତିରେ ଗୃହୀତ ହୋଇଥିଲେ, ତାହାର ଉପସ୍ଥାପନ ଓ ବିଶ୍ଳେଷଣ କରିବାକୁ ହେବ। କେଉଁ ପରିସ୍ଥିତିରେ ଗତ ଶତାବ୍ଦୀରେ ମଧ୍ୟଭାଗରେ ଜନ୍ମ ହୋଇଥିବା

ଜଣେ ବ୍ୟକ୍ତିଙ୍କୁ (ଯେତେବେଳେ ଆମେ ପଶ୍ଚିମୀ ଇତିହାସ ରଚନା-ରୀତି ସହିତ ପରିଚିତ ହୋଇ ସାରିଥିଲୁ) ଆମେ ଜଣେ ଇତିହାସ-ଦୂରବର୍ତ୍ତୀ ପୁରୁଷରେ କରିବାକୁ ବାଧ୍ୟ ହୋଇଥିଲୁଁ, ତାହା ମଧ୍ୟ ଆଲୋଚନା ବିଷୟ ଭାବରେ ଗୃହୀତ ହେବ। ଏଭଳି ବିଚାର-ବିଶ୍ଳେଷଣକୁ ଆଗେଇନେବା ପାଇଁ ଏହି ଆଲୋଚନା ସହିତ ପରିଶିଷ୍ଟ ଆକାରରେ ପାଞ୍ଚଟି ଦଲିଲ ଉପସ୍ଥାପିତ। ସେଥିରୁ ତିନୋଟି ଭୀମଭୋଇଙ୍କର ସମକାଳୀନ ହେଲାବେଳେ ଅନ୍ୟ ଦୁଇଟି ତାଙ୍କ ମୃତ୍ୟୁର ପନ୍ଦର ବର୍ଷ ଭିତରେ ଲିଖିତ।

(୨)

ଏଠାରେ ଉପସ୍ଥାପିତ ପାଞ୍ଚଟି ଉପାଦାନ ବା document ମଧ୍ୟରୁ ପ୍ରଥମଟି (କ) ଉତ୍କଳ ଦୀପିକା ସାପ୍ତାହିକ ସମ୍ବାଦପତ୍ରର ଷୋଡଶ ବର୍ଷ ଛୟାଳିଶ ସଂଖ୍ୟାରୁ (୧୯.୧୧.୧୮୮୧) ଗୃହୀତ। ପୂର୍ବରୁ ସେହି **ଉତ୍କଳ ଦୀପିକା**ର ତା ୨୬.୩.୧୮୮୧ ରିଖ ସଂଖ୍ୟାରେ ପ୍ରକାଶିତ ଗୋଟିଏ ସମ୍ବାଦର ଶେଷରେ କୁହାଯାଇଥିଲା;

"ଏହି ଅଲେଖ ସଂପ୍ରଦାୟଙ୍କ ମତି କିସ, ଏମାନଙ୍କର ଗୁରୁ କିଏ, ସେ କିପ୍ରକାରେ ଆପଣା ମତ ବିସ୍ତାର କରୁଅଛନ୍ତି, କେତେ ଲୋକ ତାହାଙ୍କର ମତାବଲମ୍ବୀ ହୋଇଅଛନ୍ତି, ସେମାନେ ପୂର୍ବେ କି ଜାତି ବା ଧର୍ମାବଲମ୍ବୀ ଥିଲେ ଏବଂ ଜଗନ୍ନାଥଙ୍କ ଉପରେ ତାହାଙ୍କର ଏତେ ଆକ୍ରୋଶ କାହିଁକି ଏ ସମସ୍ତ ବିଷୟ ଆମ୍ଭମାନଙ୍କ ସମ୍ବାଦଦାତା ଅନୁସନ୍ଧାନ କରି ଲେଖିଲେ ସର୍ବସାଧାରଣଙ୍କର ବଡ଼ ମନୋରଞ୍ଜନ ହୁଅନ୍ତା। ଏ ସଂପ୍ରଦାୟ ମଧ୍ୟରୁ ଯେଉଁମାନେ ଜେଲଖାନାରେ ଅଛନ୍ତି ସେମାନଙ୍କଠାରୁ ସମସ୍ତ କଥା ମିଳିପାରେ। ଅନୁମାନରେ ବୋଧ ହେଉଅଛି ଏମାନେ ସାନ୍ତାଳଙ୍କ ପରି ଅସଭ୍ୟ ବଣୁଆ ଜାତି ଅଟନ୍ତି ଏବଂ କୌଣସି ଚତୁର ଲୋକ ଏହାଙ୍କ ଗୁରୁ ହୋଇ ଏହାଙ୍କୁ ଠକି ଖାଉଅଛି। (ପଟ୍ଟନାୟକ: ୧୯୭୨: ପୃ.୬୯୦) ଏହି ସମ୍ବାଦ ପ୍ରକାଶିତ ହେବାର ସାତ ମାସ ବିତିଯାଇଥିଲେ ମଧ୍ୟ **ଉତ୍କଳ-ଦୀପିକା**ର ସମ୍ବାଦଦାତା ମହିମାଧର୍ମ ଓ ତାହାର ଗୁରୁଙ୍କ ସମ୍ପର୍କରେ କୌଣସି ଯଥାର୍ଥ ସମ୍ବାଦ ସଂଗ୍ରହ କରିପାରି ନାହାନ୍ତି। ଏହି ଅବସରରେ କଲିକତାରୁ ପ୍ରକାଶିତ ହେଉଥିବା କାଲକାଟା ଗେଜେଟ୍‌ରେ ମଧ୍ୟପ୍ରଦେଶର ଚିଫ୍ କମିସନର ଏହି ନୂତନ ଧର୍ମ ସଂପର୍କରେ ଦେଇଥିବା ବିବରଣୀ ପ୍ରକାଶିତ ହୋଇଛି। **କାଲ୍‌କାଟା ଗେଜେଟ୍‌**ରେ ପ୍ରକାଶିତ ବିବରଣୀ ସହ ନିଜର ସମ୍ବାଦଦାତା

ସଂଗ୍ରହ କରିଥିବା ସମ୍ବାଦକୁ ଏକତ୍ର କରି ଉତ୍କଳ ଦୀପିକାର ସଂପାଦକ 'କୁମ୍ଭୀପଟ ବାବାଜୀ' ଶୀର୍ଷରେ ଆଲୋଚ୍ୟ ସମ୍ବାଦଧର୍ମୀ ବିବରଣୀ ପ୍ରକାଶ କରିଛନ୍ତି;

ଏହି ବିବରଣୀର ପ୍ରଥମ ତିନୋଟି ଅନୁଚ୍ଛେଦରେ କଟକ ଜିଲ୍ଲାର ବାଙ୍କୀ ଅଞ୍ଚଳରେ 'ମହିମାଧର୍ମ'ର ପ୍ରଥମ ପ୍ରକାଶ, ସମ୍ବଲପୁର ଜିଲ୍ଲାରେ ଏହାର ବ୍ୟାପକ ପ୍ରସାର, ଢେଙ୍କାନାଳ ଜିଲ୍ଲାରେ ଏହି ଧର୍ମର ପ୍ରତିଷ୍ଠାତା ଅଲେଖ ସ୍ୱାମୀଙ୍କ ତିରୋଧାନ, ଏହି ଧର୍ମର ବିଭିନ୍ନ ସଂପ୍ରଦାୟ ତଥା ଏହାର ରୀତିନୀତି ଓ ବିଧିନିଷେଧ ଆଦି ଅବତାରଣା କରାଯାଇଛି । ଏହି ପ୍ରଥମ ତିନି ଅନୁଚ୍ଛେଦର ବିଷୟବସ୍ତୁ **କାଲ୍‌କାଟା ଗେଜେଟ୍‌**ରେ ପ୍ରକାଶିତ ବିବରଣୀକୁ ଭିତ୍ତିକରି ଉପସ୍ଥାପିତ । ଏହି ବିବରଣୀର ଚତୁର୍ଥ ଅନୁଚ୍ଛେଦରେ କବି ଭୀମ ଭୋଇଙ୍କ ପ୍ରସଙ୍ଗ ଆଲୋଚିତ । ପ୍ରଥମଥର ପାଇଁ କବି ଭୀମ ସମ୍ବାଦପତ୍ର ମାଧ୍ୟମରେ ଏହିଠାରେ ଆତ୍ମପ୍ରକାଶ କରିଛନ୍ତି । ଯଦିଓ ଭୀମଙ୍କ କବିତ୍ୱ-ଶକ୍ତିକୁ ଉତ୍କଳ ଦୀପିକାର ସଂପାଦକ ଉଚ୍ଚ ପ୍ରଶଂସା କରିଛନ୍ତି, ଭୀମଙ୍କ ବ୍ୟକ୍ତିଗତ ଜୀବନ ଓ ଆଚରଣ ସମ୍ପର୍କରେ ଉତ୍କଳଦୀପିକା ସମ୍ପାଦକ ଗୌରୀଶଙ୍କରଙ୍କର ମତାମତ ବଡ଼ କଠୋର । କେଉଁ ପରିସ୍ଥିତିରେ ସଂପୃକ୍ତ ବିବରଣୀ ପ୍ରକାଶିତ ହେବାର ଦୁଇ ବର୍ଷ ପୂର୍ବରୁ (ଅର୍ଥାତ୍ ୧୮୭୯ ମସିହାରେ) ମହିମା ଧର୍ମ ସାଂପ୍ରଦାୟିକ ବିଭେଦର ସମ୍ମୁଖୀନ ହେଲା, ତାହା ଗୌରୀଶଙ୍କର ଏଠାରେ ଉପସ୍ଥାପନ କରିଛନ୍ତି । ଭୀମଙ୍କ ସଂପର୍କିତ ବିବରଣୀ ଉପସ୍ଥାପନ କରୁଥିଲାବେଳେ ଦାସରାମ ପ୍ରମୁଖଙ୍କ ଦ୍ୱାରା ଜଗନ୍ନାଥ ମନ୍ଦିର ଆକ୍ରମଣ ପ୍ରସଙ୍ଗ ଉପସ୍ଥାପିତ । ତେଣୁ ଜଗନ୍ନାଥ ମନ୍ଦିର ଆକ୍ରମଣ ସହିତ ଭୀମଙ୍କୁ ସଂପୃକ୍ତ କରିବାର ପରୋକ୍ଷ ପ୍ରେରଣା ଏହି ବିବରଣୀରୁ ଆସିଥିବା ସମ୍ଭବ । ପରିଶେଷରେ 'ମହିମା ଧର୍ମ'ର ଥିବା ସକାରାତ୍ମକ ଭୂମିକା ମଧ୍ୟ ପ୍ରଶଂସିତ । ୧୮୭୬ ରେ ମହିମା ଗୋସାଇଁଙ୍କର ତିରୋଧାନ ପରେ 'ମହିମାଧର୍ମ' ଯେଉଁ ଦ୍ୱନ୍ଦ୍ୱ, ପରୀକ୍ଷା ଓ ସାମ୍ପ୍ରଦାୟିକ ବିଭେଦର ସମ୍ମୁଖୀନ ହୋଇଥିଲା (ଯାହା ଆଜି ପର୍ଯ୍ୟନ୍ତ ମହିମାଧର୍ମାବଲମ୍ବୀମାନଙ୍କ ମଧ୍ୟରେ ରହିଛି)- ତାହର ସୂଚନା ଏହି ବିବରଣୀରେ ସ୍ଥାନିତ ।

ଏଠାରେ ଉପସ୍ଥାପିତ ଦ୍ୱିତୀୟ (ଖ) ଦଲିଲଟି ଏସିଆଟିକ୍ ସୋସାଇଟୀ ଅଫ୍ ବେଙ୍ଗଲ୍‌ର ୧୮୮୨ ଜାନୁଆରୀ ମାସର କାର୍ଯ୍ୟ ବିବରଣୀରେ ପ୍ରକାଶିତ ଏହି ବିବରଣୀ ଉପସ୍ଥାପନ କରିବା ପୂର୍ବରୁ କୁହାଯାଇଛି:

"The secretary read a letter from the under-secretary to the Government of Bengal forwarding a copy of a letter from

the Commissioner of the Orissa Division, reporting on the origin and growth of the sect of the Hindu Dissenters who profess to be the followers of Alekh".

ଏଠାରେ ସୂଚନାଯୋଗ୍ୟ ଯେ ଦୁଇ ମାସ ପୂର୍ବରୁ କାଲକାଟା ଗେଜେଟ୍‌ରେ ଅନୁରୂପ ପ୍ରତିବେଦନ ଉପସ୍ଥାପିତ ହୋଇଥିଲା । ଏହି ପ୍ରତିବେଦନଟି 'ମହିମା ଧର୍ମ'ର ଉତ୍ପତ୍ତି ଓ ବିକାଶ ଆଲୋଚନା ଦୃଷ୍ଟିରୁ ଅଧିକ ତଥ୍ୟନିଷ୍ଠ ଓ ପୂର୍ଣ୍ଣାଙ୍ଗ । ଦଶଟି ଭାଗରେ ବିଭକ୍ତ ଏହି ପ୍ରତିବେଦନରେ 'ମହିମାଧର୍ମ'ର ଏକ ସଂକ୍ଷିପ୍ତ ଇତିହାସ ଉପସ୍ଥାପିତ । ମହିମାଧର୍ମର ପ୍ରତିଷ୍ଠାତା ମହିମା ଗୋସାଇଁଙ୍କର ଯେ ପ୍ରକୃତ ନାମ 'ମୁକୁନ୍ଦ ଦାସ' ତାହା ଏହି ରିପୋର୍ଟରେ ପ୍ରଥମଥର ପାଇଁ କୁହାଯାଇଛି । ପରବର୍ତ୍ତୀ ସମୟରେ ମହିମାଧର୍ମ ସହ ସମ୍ପୃକ୍ତ ଥାଇ ଯେଉଁମାନେ ଏହାର ଇତିହାସ ଆଲୋଚନା କରିଛନ୍ତି (ଯଥା- ବିଶ୍ୱନାଥ ବାବା କିମ୍ବା ଶ୍ରୀ ଶତ୍ରୁଘ୍ନ ନାଥ) ସେମାନେ ମୁକୁନ୍ଦ ଦାସଙ୍କୁ ମହିମାଧର୍ମର ପ୍ରତିଷ୍ଠାତା ବୋଲି ସ୍ୱୀକାର ନ କରି ମହିମା ଗୋସାଇଁଙ୍କର ଅନ୍ୟତମ ଭକ୍ତ ଭାବରେ ଉପସ୍ଥାପନ କରିଥାନ୍ତି (Nath, 1977 p.453) କିନ୍ତୁ ଏଠାରେ ସ୍ମରଣଯୋଗ୍ୟ ଯେ ଏହି ପ୍ରତିବେଦନ-ପ୍ରସ୍ତୁତି ସହିତ ସଂପୃକ୍ତ କେତେକ ବ୍ୟକ୍ତି ମହିମା ସ୍ୱାମୀଙ୍କ ପ୍ରତ୍ୟକ୍ଷ ସଂପର୍କରେ ଆସିଥିଲେ । ଉଦାହରଣ ସ୍ୱରୂପ: ଢେଙ୍କାନାଳର ତତ୍‌କାଳୀନ ମ୍ୟାନେଜର ଲେଖିଥିଲେ-"In the year 1874,while I was on tour in the interior Dhenkanal, the founder of the Mahima or Alekh religion went with me from place to place and was with me for about a week..." ତେଣୁ ତାରିଖ ଓ ମସିହାର ସାମାନ୍ୟ ବ୍ୟତିକ୍ରମ ଥିଲେ ବି ଏହି ରିପୋର୍ଟ ଯେ ମହିମାଧର୍ମର ପ୍ରଥମ ପ୍ରାମାଣିକ ଇତିହାସ ଉପସ୍ଥାପନ କରିଛି, ଏଥିରେ ସନ୍ଦେହ ନାହିଁ । ପୁନଶ୍ଚ ୧୮୮୧ ମସିହା ବେଳକୁ ମହିମାଧର୍ମର ପ୍ରଖ୍ୟାପକ ଓ କବି ଭାବରେ ଯେ ଭୀମଭୋଇ ପ୍ରତିଷ୍ଠା ଲାଭ କରିସାରିଥିଲେ, ତାହା ମଧ୍ୟ ଏହି ରୋପୋର୍ଟ ସ୍ପଷ୍ଟ କରେ: 'Most of these songs etc. are said to have been composed by Bhima Bhoi, a Khond, who is said to have been born blind, and afterwards endowed with sight by the Mahima Swami' । ଭୀମଙ୍କର ଅନ୍ଧତ୍ୱ ନେଇ ପରବର୍ତ୍ତୀ କାଳର ପରିଚର୍ଚ୍ଚାରେ ଏହି ମନ୍ତବ୍ୟଟି ଯଥାର୍ଥ ପରିପ୍ରେକ୍ଷୀରେ ବିଶ୍ଳେଷିତ ହୋଇଥିଲେ, ଏତେ ବିଭ୍ରାଟ ହୋଇ ନଥାନ୍ତା । ମହିମା ଗୋସ୍ୱାମୀଙ୍କ ସଂପର୍କରେ ଆସିବା ପୂର୍ବରୁ ଭୀମ ଅନ୍ଧ ଥିଲେ

କି ନାହିଁ- ସେଥିନେଇ ଦ୍ୱନ୍ଦ୍ୱ ହୋଇପାରେ; କିନ୍ତୁ ୧୮୮୧ ବେଳକୁ ଯେ ସେ ଅନ୍ଧ ନଥିଲେ, ତାହା ଉପରୋକ୍ତ ଉଦ୍ଧୃତାଂଶରୁ ସ୍ପଷ୍ଟ । ମୋଟ ଉପରେ ଆଭିମୁଖ୍ୟ ଦୃଷ୍ଟିରୁ ଏହି ପ୍ରତିବେଦନର ଅସଂପୂର୍ଣ୍ଣତା ଓ ପକ୍ଷପାତିତା ପ୍ରସଙ୍ଗ ଅବତାରଣା କରାଯାଇପାରେ କିନ୍ତୁ ତଥ୍ୟ ଦୃଷ୍ଟିରୁ ଏହା ଯେ ଏକ ମହାର୍ଘ ଉପାଦାନ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଦୁଃଖର ବିଷୟ ସ୍ୱର୍ଗୀୟା ଏସ୍‌ମାନଙ୍କୁ ଛାଡ଼ିଦେଲେ, ମହିମାଧର୍ମ ସଂପର୍କରେ ଆଲୋଚନା କରିଥିବା ପରବର୍ତ୍ତୀ ସମୟର ଅଧିକାଂଶ ଗବେଷକ ଏହି ରିପୋର୍ଟ ଉପରେ ଆଦୌ ଗୁରୁତ୍ୱ ଆରୋପ କରି ନାହାନ୍ତି ।

ତୃତୀୟ (ଗ) ଦଲିଲଟି ଏକ ପତ୍ର ଆକାରରେ ତା ୨୨.୨.୧୮୮୩ ରିଖରେ ଉତ୍କଳ-ଦୀପିକାର ସଂପାଦକ ନିକଟକୁ ଲିଖିତ ହୋଇଥିଲା ଓ ଏହା ଉତ୍କଳ ଦୀପିକାର ଅଷ୍ଟାଦଶ ବର୍ଷ ଏକାଦଶ ସଂଖ୍ୟା(ତା ୧୭.୦୨.୧୮୮୩ ରିଖ) ରେ ପ୍ରକାଶିତ ହୋଇଥିଲା । ପତ୍ରଟି କଟକରୁ ଲିଖିତ ହେଲେ ମଧ୍ୟ ଏହାର ଲେଖକ ଦାମୋଦର ପଟ୍ଟନାୟକ (ସଙ୍ଗୀତ ସାଗରର ସଂପାଦକ) ଢେଙ୍କାନାଳର ବାସିନ୍ଦା । ଏହି ପତ୍ର ଲେଖା ହେଲାବେଳେ ମହିମାଧର୍ମ ଭୀମଭୋଇ ଓ ତାଙ୍କର ଅନୁଗତମାନଙ୍କ କର୍ତ୍ତୃତ୍ୱକୁ ଚାଲିଆସିଥିଲା । ନ ହେଲେ ପତ୍ର-ଲେଖକଙ୍କର ଏହି ଧର୍ମ ସଂପର୍କରେ ଉଚ୍ଚଧାରଣା ଥିବା ମନେହୁଏ- "ଏଥିରେ ନୀଚ ଓ ଅସଭ୍ୟ ଲୋକମାନେ ଥିବାରୁ ଧର୍ମର ଗୌରବ ଓ ମହିମା ରହିପାରିଲା ନାହିଁ । ନଚେତ୍ ବ୍ରାହ୍ମଧର୍ମ ପରି ସମାଜର କୌଣସି ଉନ୍ନତି ହୋଇଥାଆନ୍ତା" ।ଏହି ପତ୍ରରେ ମହିମାଧର୍ମୀମାନେ ଦୁଇ ଦଳରେ ବିଭକ୍ତ ହେବା ଓ ଦୁଇଟି ସ୍ୱତନ୍ତ୍ର ଗାଦି ପ୍ରତିଷ୍ଠା କରିବା ବର୍ଣ୍ଣିତ । ମହିମା ଧର୍ମର ପରବର୍ତ୍ତୀ କାଳର ଇତିହାସରେ ନୃସିଂହ ଦାସ ଓ ତାଙ୍କର ମହୁଲପଡା ମଠ ପ୍ରାୟତଃ ଉପେକ୍ଷିତ । ଆଲୋଚ୍ୟ ପତ୍ରଟିରେ ଏହି ମହୁଲପଡା ମଠର ଚମତ୍କାର ବର୍ଣ୍ଣନା ରହିଛି । ଦାମୋଦର ପଟ୍ଟନାୟକଙ୍କର ମହିମା ଧର୍ମର ଏହି ଗୋଷ୍ଠୀ ଓ ଗାଦି ଥିବା ଆସକ୍ତି ସ୍ପଷ୍ଟ ବାରି ହୁଏ ।

ଚତୁର୍ଥ (ଘ) ଦଲିଲଟି ଏକ ପ୍ରବନ୍ଧ ଆକାରରେ ମୁକୁର ସାହିତ୍ୟ-ପତ୍ରର ଦ୍ୱିତୀୟ ବର୍ଷ ନବମ ଦଶମ ସଂଖ୍ୟା (ଡିସେମ୍ବର, ୧୯୦୭ ଓ ଜାନୁଆରୀ, ୧୯୦୮) ରେ ପ୍ରକାଶିତ । ସ୍ମରଣ ଯୋଗ୍ୟ ଯେ ଏହା ଭୀମଭୋଇଙ୍କ ସମ୍ପର୍କରେ ପ୍ରଥମ ପ୍ରବନ୍ଧ । ଏହି ପ୍ରବନ୍ଧର ଲେଖକ ଦାମୋଦର ମହାନ୍ତି ସୋନପୁର ରାଜାଙ୍କର ଜନୈକ ବରିଷ୍ଠ

କର୍ମଚାରୀ ଥିବାର ଜଣାଯାଏ। ଭୀମଭୋଇଙ୍କ ପ୍ରତ୍ୟକ୍ଷ ସଂପର୍କରେ ସେ ଆସିଥିବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ନପାରେ ତଥାପି ଏହି ପ୍ରବନ୍ଧକୁ ସେ ଏକ 'କିମ୍ବଦନ୍ତୀ' ବୋଲି କହିଛନ୍ତି। ଭୀମଭୋଇ ତାଙ୍କ ମୃତ୍ୟୁର ବାରବର୍ଷ ପରେ ଜଣେ 'କିମ୍ବଦନ୍ତୀ-ପୁରୁଷ'ରେ ପରିଣତ ହୋଇଥିଲେ, ଆଲୋଚ୍ୟ ପ୍ରବନ୍ଧ ତାର ଦୃଷ୍ଟାନ୍ତ। 'ଭୋଇ' ସାଙ୍ଗିଆ ଉପକୂଳବର୍ତ୍ତୀ ଓଡ଼ିଶାରେ 'ବାଉରି'ଜାତିର ଲୋକମାନେ ପ୍ରାୟତଃ ବ୍ୟବହାର କରିଥାନ୍ତି। କିନ୍ତୁ ପଶ୍ଚିମ ଓଡ଼ିଶାରେ କୁଲ୍‌ତା, ଗଉଡ଼ ଠାରୁ ଆରମ୍ଭ କରି କନ୍ଧ ପର୍ଯ୍ୟନ୍ତ ବିଭିନ୍ନ ଜାତି ଓ ସଂପ୍ରଦାୟର ଭୋଇ ସାଙ୍ଗିଆ ଧାରଣ କରିଥାନ୍ତି । କିନ୍ତୁ ପ୍ରବନ୍ଧଟିର ଲେଖକ ଭୀମଙ୍କୁ କାହିଁକି 'ବାଉରି' ଜାତିର ବୋଲି ହଠାତ୍ ସିଦ୍ଧାନ୍ତ କରି ବସିଲେ, ତାହା ଜାଣି ହୁଏ ନାହିଁ। ଏହି ପ୍ରବନ୍ଧକୁ ଦୁଇଟି ଭାବରେ ବିଭକ୍ତ କରାଯାଇପାରେ। ପ୍ରଥମ ଅଂଶରେ ରହିଛି ମହିମାଧର୍ମ ସଂପର୍କରେ ଏକ ସଂକ୍ଷିପ୍ତ ବିବରଣୀ ଓ ଦ୍ୱିତୀୟ ଭାଗରେ ରହିଛି ଭୀମଙ୍କ କବିତ୍ୱ-ପ୍ରାପ୍ତିର କାହାଣୀ। ଏହି କାହାଣୀଟିକୁ ସେ ସୋନପୁର ବା ଆଖପାଖର ଲୋକମାନଙ୍କଠାରୁ ସଂଗ୍ରହ କରିଥିବା ସମ୍ଭବ। ବିଂଶ ଶତାବ୍ଦୀର ଆଦ୍ୟ ଦଶକ ବେଳକୁ ଭୀମ ଓ ମହିମାଧର୍ମ ସଂପର୍କିତ ଏକ ଏବଂ କିଭଳି ଅଙ୍ଗାଙ୍ଗୀ ହୋଇପଡ଼ିଥିଲା- ଉପରୋକ୍ତ ପ୍ରବନ୍ଧ ତାହାର ଦୃଷ୍ଟାନ୍ତ।

ଏହି ପ୍ରବନ୍ଧର ବକ୍ତବ୍ୟ ହେଲା ଯେ ମହିମାଧର୍ମ ମହିମା ଗୋସାଇଁଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ପ୍ରଚାରିତ ହେଲେବି ବହୁ ଦିନ ପର୍ଯ୍ୟନ୍ତ ଏହାର କୌଣସି ଲିଖିତ ଶାସ୍ତ୍ର ନ ଥିଲା। ଏହାର ବିଧି ନିଷେଧ ଓ ଦାର୍ଶନିକ ତତ୍ତ୍ୱ ଠାରୁ ଆରମ୍ଭ କରି ସବୁ କିଛି ଥିଲା ମୌଖିକ। ଏଥିପାଇଁ ମହିମା ଗୋସାଇଁଙ୍କ ପରଲୋକ-ଗମନ ପରେ ପରେ ଏହି ଧର୍ମ ଏକ ଆତ୍ମସଙ୍କଟର ସମ୍ମୁଖୀନ ହେଲା। ଏହି ନୂତନ ଧର୍ମ ଲୋକଙ୍କ ମଧ୍ୟରେ ନିଜକୁ ପ୍ରତିଷ୍ଠା କରିବା ପୂର୍ବରୁ କ୍ରମଶଃ ସଙ୍କୁଚିତ ହେବାକୁ ଆରମ୍ଭ କରିଥିଲା। ଏହି ସମୟରେ ଭୀମଭୋଇଙ୍କ କବିତ୍ୱର ସ୍ଫୁର୍ତ୍ତି, ଭୀମଭୋଇଙ୍କ ବ୍ୟକ୍ତିତ୍ୱର ଦୀପ୍ତି ଓ କବିତ୍ୱର ଝଙ୍କାର ପୂର୍ବ ଓଡ଼ିଶାରେ ଜନ୍ମଲାଭ କରିଥିବା 'ମହିମାଧର୍ମକୁ' ପଶ୍ଚିମ ଓଡ଼ିଶାରେ ଲୋକପ୍ରିୟ କରିଥିଲା। ଏଠାରେ ଆଉ ଏକ ଉଲ୍ଲେଖଯୋଗ୍ୟ ବିଷୟ ହେଲା ଯେ ମାତ୍ର ସତେଇଶ ବର୍ଷ ତଳେ ଉତ୍କଳ-ଦୀପିକା ପୃଷ୍ଠାରେ ନିନ୍ଦିତ ହୋଇଥିବା 'ଭୀମ କନ୍ଧ' ଏଠାରେ ଜଣେ 'ଧର୍ମବୀର' ରେ ପରିଣତ ହୋଇଛନ୍ତି। ମୋଟ ଉପରେ 'ମହିମାଧର୍ମର' ଆଦି ପର୍ଯ୍ୟାୟର ପ୍ରଧାନ-ପୁରୁଷ ଯଦି ହୁଅନ୍ତି ମହିମାସ୍ୱାମୀ ଓରଫ୍ ମୁକୁନ୍ଦ ଦାସ,

ତେବେ ଦ୍ୱିତୀୟ ପର୍ଯ୍ୟାୟର ଶ୍ରେଷ୍ଠ ପୁରୁଷ ହେଉଛନ୍ତି ଭୀମଭୋଇ । ଜଣେ ଆପଣାର ନିଃସ୍ୱାର୍ଥପର ସେବା ମନୋଭାବ, ତ୍ୟାଗ ଓ ମାନବପ୍ରେମ ପାଇଁ ପ୍ରସିଦ୍ଧି ଲାଭ କରିବା ସହିତ ଜନଗଣଙ୍କୁ ସେହି ପଥରେ ବାଟ କଢେଇ ନେଲାବେଳେ ଅନ୍ୟଜଣେ ମୁକ୍ତି ଓ ପ୍ରୀତିର ସଙ୍ଗୀତ  ଗାଇ ଦଳିତ ସମାଜକୁ ଉଦବୋଧିତ କରିଛନ୍ତି, ସେମାନଙ୍କ ପାଇଁ ମୁକ୍ତିର ପଥ ସନ୍ଧାନ କରିଛନ୍ତି ।

ଏହି ଆଲୋଚନା ସହିତ  ସଂଯୋଜିତ ପଞ୍ଚମ (ଙ) ଦଲିଲଟି L.S.S. O'Malleyଙ୍କ Bengal District Gazetteer: Sambalpur ର ସଂଗୃହୀତ । ଏହାର ପ୍ରକାଶକାଳ ୧୯୦୯ ମସିହା । The People ଅଧ୍ୟାୟରେ ହିନ୍ଦୁଧର୍ମର ବିଭିନ୍ନ ସମ୍ପ୍ରଦାୟ ସମ୍ପର୍କରେ ଆଲୋଚନା ପ୍ରସଙ୍ଗରେ ମହିମାଧର୍ମୀମାନଙ୍କ ବିଷୟ ଉପ-ଶୀର୍ଷକରେ ଉପସ୍ଥାପିତ  ! 'Kumbhipatias' ହିନ୍ଦୁଧର୍ମର ବିଭିନ୍ନ ସଂପ୍ରଦାୟ-କବୀରପନ୍ଥୀ, ସନ୍‌ନାମୀ ଆଦି ସମ୍ପର୍କରେ ଆଲୋଚନା କରିଆସିଲା ପରେ ମହିମାଧର୍ମାବଲମ୍ବୀମାନଙ୍କ ବିଷୟ ଆଲୋଚନା କରିଛନ୍ତି । ସରକାରୀ ରିପୋର୍ଟ ଉପରେ ଆଧାରିତ ହୋଇଥିବାରୁ ଏଥିରୁ କୌଣସି ନୂତନ ବିଶ୍ଳେଷଣ ଆଶା କରିବା ବୃଥା । ମହିମାପନ୍ଥୀମାନଙ୍କୁ ସମ୍ବଲପୁରର ଏକ ବିଶେଷ ବା ନିଜସ୍ୱ ସଂପ୍ରଦାୟ କହିବା ତଥ୍ୟ ଦୃଷ୍ଟିରୁ ଭଲ । ଠିକ୍ ସେହିପରି କେତେଜଣ ମହିମାଧର୍ମାବଲମ୍ବୀ ୧୮୮୧ ମାର୍ଚ୍ଚ ୧ ତାରିଖରେ ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିଲେ, ଯାହା ଏଥିରେ ୧୮୮୦ ମସିହା ବୋଲି ଉଲ୍ଲିଖିତ । ମହିମାଧର୍ମର ଇତିହାସ ଉପସ୍ଥାପନ କରିବାକୁ ଯାଇ ୧୮୮୧ ମସିହାରେ କାଲ୍‌କାଟା ଗେଜେଟରେ ପ୍ରକାଶିତ ପୂର୍ବ-ସୂଚିତ ରିପୋର୍ଟ ଓ ୧୮୮୧ ମସିହାର ଜନଗଣା ରିପୋର୍ଟରେ ଅଲେଖଧର୍ମୀଙ୍କ ସଂପର୍କରେ ଥିବା ଉଲ୍ଲେଖ ଏଠାରେ ଉଦ୍ଧୃତ । ୧୮୮୨ ମସିହାରେ Proceedings of Asiatic Society of Bengal ପ୍ରକାଶିତ ପ୍ରତିବେଦନ ତୁଳନାରେ ଏହା ନୂତନତାହୀନ । ଏହାର ଶେଷ ଅନୁଚ୍ଛେଦରେ ଥିବା ବିଜୟଚନ୍ଦ୍ର ମଜୁମଦାରଙ୍କ ତଥ୍ୟ ହିଁ ନୂତନ । କାରଣ ଏ ପର୍ଯ୍ୟନ୍ତ ଐତିହାସିକ ବା ତଥ୍ୟଭିତ୍ତିକ ଆଲୋଚନାରେ ଭୀମଭୋଇ ନା ଖଲିଆପାଲିକୁ ବିଶେଷ ଗୁରୁତ୍ୱ ଦିଆଯାଇ ନଥିଲା । ଯେଉଁ ସମଧର୍ମାବଲମ୍ବୀଙ୍କ ସ୍ୱପ୍ନାଦେଶକୁ ପାଳନ କରିବାକୁ ଯାଇ କେତେକ ମହିମାଧର୍ମାବଲମ୍ବୀ ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିଲେ, ସେହି ସ୍ୱପ୍ନାଦେଶ ପାଇଥିବା ବ୍ୟକ୍ତି ଭୀମ ଭୋଇ ହୋଇଥିବା ଉଲ୍ଲିଖିତ । ଦ୍ୱିତୀୟ, ସମ୍ବଲପୁର ଜିଲ୍ଲାରେ

'ମହିମାଧର୍ମ'ର ବ୍ୟାପକ ପ୍ରସାର ପଶ୍ଚାତ୍‌ରେ ଯେ ସେ ଭୀମଭୋଇଙ୍କ ବ୍ୟକ୍ତିତ୍ୱ ଓ ନେତୃତ୍ୱ କାର୍ଯ୍ୟ କରିଥିଲା, ତାହାରେ ସୂଚିତ ମହିମା ଗୋସାଇଁଙ୍କ ଦେହାନ୍ତ ପରେ ଓଡ଼ିଶାରୁ ଅନ୍ୟଆଡ଼େ ଏହି ଧର୍ମ ସଂକୁଚିତ ହୋଇଆସିଥିଲା ବେଳେ ଭୀମଭୋଇ ଏହାକୁ ଜୀବନ୍ୟାସ ଦେଇ ପଶ୍ଚିମ ଓଡିଶାର ଲୋକଧର୍ମରେ ରୂପାନ୍ତରିତ କରିଥିଲେ: Bhima Bhoi gave new life to the Kumbhipatia doctrine and made the cult popular throughout Sambalpur. ମୋଟ ଉପରେ ମହିମାଧର୍ମର ଇତିହାସ ଓ ସେଥିରେ ଭୀମଭୋଇଙ୍କ ଭୂମିକା ନେଇ ୧୮୮୧ ମସିହାରୁ ୧୯୦୯ ମସିହା ମଧ୍ୟରେ ଯେଉଁ କେତୋଟି ପ୍ରତିବେଦନ, ସମ୍ବାଦ ପତ୍ର ଓ ପ୍ରବନ୍ଧ ପ୍ରକାଶିତ-ସେଥିମଧ୍ୟରୁ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ମନେ ହୋଇଥିବା ପାଞ୍ଚଟି ରଚନା ଏ ସଂଖ୍ୟାରେ ଉପସ୍ଥାପିତ। କେଉଁ ପରିପ୍ରେକ୍ଷୀରେ ବିଂଶ ଶତକର ପ୍ରଥମ ତିନି ଦଶକ ମଧ୍ୟରେ 'ମହିମାଧର୍ମ' ସମ୍ପର୍କିତ ଆଲୋଚନାରେ ଭୀମଭୋଇ କେନ୍ଦ୍ରସ୍ଥଳ ମାଡି ବସିଲେ, ତାହାର ଇଙ୍ଗିତ ମଧ୍ୟ ଏଗୁଡ଼ିକରୁ ଉପଲବ୍ଧ।

(୩)

ବିଂଶ ଶତକର ଦ୍ୱିତୀୟ ଦଶକ ଆରମ୍ଭରୁ ଭୀମଭୋଇଙ୍କ ସଂପର୍କରେ ବିସ୍ତୃତ ଆଲୋଚନା ଆରମ୍ଭ ହୋଇଛି। ଊନବିଂଶ ଶତକର ଶେଷ ଦୁଇ ଦଶକରେ ଭୀମଭୋଇଙ୍କ କବିତ୍ୱ ଯଥାର୍ଥ ଅଭିବ୍ୟକ୍ତି ଘଟିଥିଲେ ବି ଏଇ ଶତକର ଦ୍ୱିତୀୟ ଦଶକରେ ହିଁ ତାଙ୍କ ପୁସ୍ତକାବଳୀ ମୁଦ୍ରିତ ହୋଇ ବହୁଳ ପ୍ରସାରିତ ହୋଇଛି। ଗୌରୀଶଙ୍କରଙ୍କ ଦ୍ୱାରା ଲିଖିତ 'ଭୀମକନ୍ଦ' ଓ ଦାମୋଦର ମହାନ୍ତିଙ୍କ 'ଭୀମଭୋଇ' କ୍ରମଶଃ ଏକ ମହାପୁରୁଷରେ ପରିଣତ ହୋଇଛନ୍ତି। ଏଇ ଶତାବ୍ଦୀରେ ଦ୍ୱିତୀୟ ଦଶକରେ ମହିମାଧର୍ମ ଓ ଭୀମଭୋଇଙ୍କ ସମ୍ପର୍କରେ ପ୍ରକାଶିତ ଲେଖାଗୁଡ଼ିକ ମଧ୍ୟରେ ପ୍ରଧାନ ହେଲା: (କ) ବିଜୟଚନ୍ଦ୍ର ମଜୁମଦାରଙ୍କର 'Doctrines of Alekhism' (Journal of the Anthropological Institute, London, 1910) ପ୍ରବନ୍ଧ (ଖ) ବିଜୟଚନ୍ଦ୍ର ମଜୁମଦାରଙ୍କ Sonpur in the Sambalpur Tract (1911) ପୁସ୍ତକରେ ଚତୁର୍ଥ ପରିଶିଷ୍ଟ ରୂପେ ସଂଯୋଜିତ 'Alekhism' ଅଧ୍ୟାୟ, (ଗ) ନଗେନ୍ଦ୍ରନାଥ ବସୁଙ୍କ Modern Buddhism and its Followers in Orissa (1911) ଗ୍ରନ୍ଥରେ ଥିବା ପଞ୍ଚମ ଅଧ୍ୟାୟ (Revival of Buddhism, ଓ The

Archaeological Survey of Mayurbhanja) (1911) ଗ୍ରନ୍ଥର ଭୂମିକାରେ ଥିବା ଅନୁରୂପ ଆଲୋଚନା । (ଘ) ସଚ୍ଚିଦାନନ୍ଦ ରାୟଙ୍କର ମୁକୁର (ନବମ ଭାଗ, ଚତୁର୍ଥ ଓ ପଞ୍ଚମ ସଂଖ୍ୟା, ଜୁଲାଇ-ଅଗଷ୍ଟ ୧୯୧୪)ରେ ପ୍ରକାଶିତ 'ମହିମାଧର୍ମ' ପ୍ରବନ୍ଧ । ଏଠାରେ ସୂଚନାଯୋଗ୍ୟ ଯେ ପରବର୍ତ୍ତୀ କାଳରେ ନଗେନ୍ଦ୍ରନାଥ ବସୁଙ୍କ ପୁସ୍ତକରେ ଥିବା ଭୀମଭୋଇ ପ୍ରସଙ୍ଗ ଯେତେ ଖଣ୍ଡନ-ମଣ୍ଡନର ସମ୍ମୁଖୀନ ହୋଇଛି, ଉଲ୍ଲିଖିତ ଅନ୍ୟ ପୁସ୍ତକ ବା ପ୍ରବନ୍ଧ ସେତିକି ଆଲୋଚିତ ହୋଇନାହିଁ । ବିଂଶ ଶତକର ଦ୍ୱିତୀୟ ଦଶକରେ ଭୀମଭୋଇଙ୍କର **ସ୍ତୁତି-ଚିନ୍ତାମଣି ଓ ବ୍ରହ୍ମନିରୂପଣ ଗୀତା** ସୋନପୁରର ରାଜା ବୀର ମିତ୍ରୋଦୟ ସିଂହଦେବଙ୍କ ମୁଖବନ୍ଧ ସହ ପ୍ରକାଶିତ ହୋଇଛି । ହରି ବେହେରା ନାମରେ କେହି ଜଣେ ମହିମାଧର୍ମାବଲମ୍ବୀ ଭୀମଭୋଇଙ୍କ 'ଶରୀର ତତ୍ତ୍ୱ ଭଜନ' ପ୍ରକାଶ କରିଛନ୍ତି । (ବାର ପୃଷ୍ଠା ବିଶିଷ୍ଟ ଏହି ପୁସ୍ତିକାର ତୃତୀୟ ସଂସ୍କରଣ ୧୯୧୫ ମସିହାରେ ପ୍ରକାଶିତ) । ୧୯୨୩ ମସିହାରେ ବିଜଚନ୍ଦ୍ର ମଜୁମଦାର ତାଙ୍କ ସଂପାଦିତ **Typical Selections from Oriya Literature**ରେ ଦ୍ୱିତୀୟ ଖଣ୍ଡର ଭୂମିକାରେ ଭୀମଭୋଇଙ୍କ କବିତ୍ୱ ସଂପର୍କରେ ଉଚ୍ଚ ମତ ବ୍ୟକ୍ତ କରି ତାଙ୍କର 'ସ୍ତୁତିଚିନ୍ତାମଣି'ର କେତେକାଂଶ ଓ ଗୋଟିଏ ଚୌତିଶା ଓଡ଼ିଆ କବିତାର ପ୍ରତିନିଧିସ୍ଥାନୀୟ ବୋଲି ବିବେଚନାପୂର୍ବକ ଏହି ସଂଗ୍ରହରେ ସ୍ଥାନିତ କରିଛନ୍ତି । ଭୀମଙ୍କ ରଚନା 'ଟୁଙ୍ଗୀ'ରୁ ବାହାରି ବିଶ୍ୱବିଦ୍ୟାଳୟର ଶ୍ରେଣୀକକ୍ଷରେ ପ୍ରବେଶ କରିଛି । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ସଂପାଦିତ ହୋଇ ଓ ତାଙ୍କ ଦ୍ୱାରା ଲିଖିତ ବିସ୍ତୃତ ମୁଖବନ୍ଧ ସହ ଭୀମଭୋଇଙ୍କ 'ସ୍ତୁତିଚିନ୍ତାମଣି', 'ବ୍ରହ୍ମନିରୂପଣ-ଗୀତା' ଭୀମଭୋଇଙ୍କ 'ଭଜନମାଳା' ପ୍ରଥମ ଓ ଦ୍ୱିତୀୟ ଶତକ, 'ଶ୍ରୁତି ନିଷେଧ ଗୀତା' ଓ 'ଚଉତିଶା ମଧୁଚକ୍ର' ଆଦି ଗ୍ରନ୍ଥ ଆର୍ତ୍ତବଲ୍ଲଭଙ୍କ ଏକକ ପ୍ରଚେଷ୍ଟା ତଥା 'ପ୍ରାଚୀ ସମିତି' ମାଧ୍ୟମରେ ପ୍ରକାଶିତ ହୋଇଛି । ଭୀମଭୋଇଙ୍କର 'ଗୃହଧର୍ମ ପୁସ୍ତିକା' ତାଙ୍କର ଅନ୍ୟତମ ଅନୁରାଗିଣୀ କେତୁକା ଦେବୀଙ୍କ ସହଯୋଗରେ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ଓ ଅଷ୍ଟକବିହାର ଗୀତା ଅଜୟ କୁମାର ଘୋଷଙ୍କ ଦ୍ୱାରା ପ୍ରକାଶିତ ହୋଇଛି । ସମକାଳରେ ଅଲେଖଧର୍ମ ସଂପର୍କରେ ଏକ ବିସ୍ତୃତ ଆଲୋଚନା ଉତ୍କଳଦୀପିକା (ତା-୫/୬/ ୧୯୨୬ରିଖ)ରେ ମଧ୍ୟ ପ୍ରକାଶିତ । ଏହି ସମସ୍ତ ପ୍ରଚେଷ୍ଟାର ସମ୍ମିଳିତ ପରିଣାମ ହେଲା : ମହିମାଧର୍ମ ଓ ଭୀମଭୋଇ ଓଡ଼ିଶାର ବିଦ୍ୱାନ୍‌ମଣ୍ଡଳୀର ପରିଚର୍ଚ୍ଚା ପରିସରକୁ ଆସିଛନ୍ତି ଓ ସେମାନଙ୍କର ବିଚାର ଆଲୋଚନାରେ ମହିମାଧର୍ମ ଓ ଭୀମଭୋଇ

ସମୀକୃତ ହୋଇପଡ଼ିଛନ୍ତି । ମହିମାଧର୍ମ କହିଲେ ଭୀମଭୋଇ ଓ ଭୀମଭୋଇ କହିଲେ ମହିମାଧର୍ମ ଏହା କ୍ରମେ ପ୍ରତୀତ ହୋଇଛି । କିନ୍ତୁ କେଉଁ ପରିବେଶରେ ଓ କାହିଁକି ମହିମାଧର୍ମରେ ଭୀମଭୋଇ ଏଭଳି ପ୍ରାଧାନ୍ୟ ହାସଲ କଲେ, ତାହାର ବିଶ୍ଳେଷଣ କୌଣସି ଆଲୋଚନାରେ ପରିଦୃଷ୍ଟ ହୁଏନାହିଁ । କେତେବେଳେ ନିଜର ବିଶେଷ ଅନୁରାଗ ତଥା ଅଞ୍ଚଳ-ପ୍ରୀତି ବା ଅନ୍ୟ କେତେବେଳେ ନିଜର ପୂର୍ବନିର୍ଦ୍ଧିଷ୍ଟ ମତକୁ ପ୍ରତିପାଦନ କରିବାକୁ ଯାଇ ଏ ସବୁ ଆଲୋଚନାର ସୂତ୍ରପାତ । ଫଳରେ ଭୀମଭୋଇଙ୍କ ଐତିହାସିକ ଭୂମିକାକୁ ନ୍ୟୂନ କରିବା ପାଇଁ ପରିବର୍ତ୍ତୀ ସମୟରେ ମହିମାଧର୍ମାବଲମ୍ବୀମାନଙ୍କର ଗୋଟିଏ ଗୋଷ୍ଠୀ ଯେଉଁ ଚେଷ୍ଟା କରିଛି, ସେହି ଚେଷ୍ଟା ଅନେକାଂଶରେ ସଫଳ ହୋଇଛି । ମହିମାଧର୍ମର ମୁଖ୍ୟ ଆସ୍ଥାନ ମାଳବିହାରପୁରରୁ ଯୋରନ୍ଦା ଓ ମହୁଲପଡ଼ା, ପୁଣି ଯୋରନ୍ଦାରୁ ଖଳିଆପାଲି ଓ ଶେଷରେ ଖଲିଆପାଲିରୁ ପୁଣି ଯୋରନ୍ଦାକୁ ଘୂରିଘୂରି ଆସିଛି । ମୁଖ୍ୟ ଆସ୍ଥାନର ଏହି ସ୍ଥାନାନ୍ତରି କେଉଁ କାରଣରୁ ଘଟିଛି, ତାହା କେବେ ବି ଆଲୋଚିତ ହୋଇନାହିଁ । ଏସ୍‌ମାନ୍ ମହିମାଧର୍ମର ଏକ ସଂକ୍ଷିପ୍ତ ଅଥଚ ଚମତ୍କାର ବିବରଣୀ ରଚନା କରିଛନ୍ତି । କିନ୍ତୁ ସେ ଏହି ସ୍ଥାନାନ୍ତର କାହାଣୀକୁ ସ୍ପର୍ଶ କରି ନାହାନ୍ତି । ପରବର୍ତ୍ତୀ କାଳରେ ବିଶ୍ୱନାଥ ବାବାଙ୍କ ରଚନାରେ ଶାସ୍ତ୍ରୀୟମର୍ଯ୍ୟାଦା ଦାବି କରିଥିବା ମହିମାଧର୍ମ ଓ ଭୀମଭୋଇଙ୍କ ଦ୍ୱାରା ପ୍ରଚାରିତ ମହିମାଧର୍ମ ମଧ୍ୟରେ ଯେଉଁ ମୌଳ ବିରୋଧ ରହିଛି, ତାହା ଯଥାର୍ଥ ଭାବରେ ଏମାନଙ୍କ ଦ୍ୱାରା ପ୍ରଦର୍ଶିତ ହୋଇନାହିଁ । (Eschmann, 1978 : p.386) କୁମାରୀ ଏସ୍‌ମାନ ପ୍ରାଦେଶିକ ଭାଷା (ବିଶ୍ୱେଷତଃ ଓଡ଼ିଆରେ ପ୍ରକାଶିତ ଅନ୍ୟ ବିବରଣୀ ସବୁକୁ ଉପେକ୍ଷା କରି ଅନେକାଂଶରେ ବିଶ୍ୱନାଥବାବାଙ୍କ ପୁସ୍ତକାବଳୀ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ୧୮୬୬ ସାଲରେ ମହିମାଗୋସାଇଁଙ୍କ ଦେହାନ୍ତ ପରେ ମହିମାଧର୍ମ ପ୍ରଚାର ଓ ପ୍ରତିଷ୍ଠାର ନେତୃତ୍ୱ ଭୀମଭୋଇ ନେଇଥିଲେ । **ଉତ୍କଳ-ଦୀପିକା**ର ସମ୍ବାଦ (୧୯.୧୧.୧୮୮୧)ରୁ ଏହା ହିଁ ସ୍ପଷ୍ଟ । ୧୮୭୯ ମସିହାରେ ଭୀମଙ୍କ ସହ, ଦୀପିକାରେ ଉଲ୍ଲିଖିତ କାରଣରୁ ଅମେଳ ହେବାରୁ ନରସିଂହ ଦାସ ପ୍ରମୁଖ ଅଲଗା ହୋଇ ମହୁଲପଡ଼ାରେ ସ୍ୱତନ୍ତ୍ର ଆଶ୍ରମ ସ୍ଥାପନ କରିଥିଲେ । କେଉଁ ପରିବେଶରେ ଓ କେବେ ଖଲିଆପାଲିକୁ ଭୀମ ତାଙ୍କୁ ସାଧନା କେନ୍ଦ୍ର ରୂପେ ବାଛିନେଲେ, ତାହା କୌଣସି ଐତିହାସିକ-ଦଲିଲରୁ ସ୍ପଷ୍ଟ ହୁଏ ନାହିଁ । (ଅବଶ୍ୟ ଏସ୍‌ମାନ୍ ଖଲିଆପାଲି ଆଶ୍ରମ ୧୮୭୭ରେ ଆରମ୍ଭ ହୋଇଥିବା କହିଛନ୍ତି) ତେବେ ଗୋଟିଏ କଥା ସ୍ପଷ୍ଟ

ଯେ ଊନବିଂଶ ଶତାବ୍ଦୀରେ ମହିମାଧର୍ମର ପ୍ରତିଷ୍ଠା, ପ୍ରଚାର ଓ ତାହାର ବିଧିବଦ୍ଧ ଦର୍ଶନ-ପ୍ରତିଷ୍ଠାର କାହାଣୀ ଗୋଟିଏ ଆୟାମ ବିଶିଷ୍ଟ ଏକ ସରଳ କାହାଣୀ ନୁହେଁ। ଏ କାହାଣୀର ବହୁବିଧ ଆୟାମ ଓ ପରିସର ରହିଛି। କିନ୍ତୁ ଏହି କାହାଣୀ ସଂପର୍କରେ ଯଥାଯଥ ଭାବେ ସଚେତନ ନ ରହି ମହିମାଧର୍ମ ଓ ଭୀମଙ୍କ ସଂପର୍କରେ ଆଲୋଚନା କରିଥିବାରୁ ଆମର ଗବେଷକମାନେ ନିଜର ମତକୁ ବାରମ୍ବାର ପରିବର୍ତ୍ତନ କରିବାକୁ ବାଧ୍ୟ ହୋଇଛନ୍ତି। ନିଜର ଆଲୋଚନା ଓ ବିଶ୍ଳେଷଣରେ ଅନେକ ସମୟରେ ସ୍ୱବିରୋଧର ସମ୍ମୁଖୀନ ହୋଇଛନ୍ତି। ଅଧ୍ୟାପକ ଆର୍ତ୍ତବଲ୍ଲଭ ଓ ଅନ୍ୟ କେତେକ ସମୀକ୍ଷକ ଏହାର ଦୃଷ୍ଟାନ୍ତ।

ଭୀମଭୋଇ ତଥାକଥିତ ଆଧୁନିକ କାଳରେ ଜନ୍ମ ହୋଇଥିଲେ ଓ ସମାଜର ବାସ୍ତବ ଅବସ୍ଥା ସହିତ ସଂଘର୍ଷ କରି ତଥା ବିଭିନ୍ନ ଘଟଣାର କ୍ରିୟା ପ୍ରତିକ୍ରିୟାରେ ଆପଣା ଧର୍ମର ପ୍ରସାର କରିଥିଲେ, କବିତା ବି ଲେଖୁଥିଲେ। ଭୀମଭୋଇଙ୍କ ରଚନାରେ ପରିଦୃଷ୍ଟ ଆତ୍ମ-ସଚେତନତା ଓ ସମାଜ- ସଚେତନତା କଣ ମଧ୍ୟଯୁଗରେ ଓଡ଼ିଆ କବିତାରେ ସମ୍ଭବ ? କିନ୍ତୁ ଆର୍ତ୍ତବଲ୍ଲଭ ଆଧୁନିକ ଇତିହାସର ସାମଗ୍ରୀ ଉପରେ ନିର୍ଭର କରି ଭୀମଭୋଇଙ୍କ ଜୀବନଚରିତର ପୁନଃ-ନିର୍ମାଣ କରିବାକୁ ଚେଷ୍ଟା କରିନାହାନ୍ତି। ସେ ଆଶ୍ରୟ କରିଛନ୍ତି ଏଭଳି କେତେକ ଉପାଦାନ ଉପରେ, ଯେଉଁଗୁଡ଼ିକ ସ୍ୱୟଂ ବିବାଦୀୟ ଓ ଅନେକାଂଶରେ ସମୟ ନିରପେକ୍ଷ। ଫଳରେ ନଗେନ୍ଦ୍ରନାଥ ବସୁଙ୍କ ଭଳି ସେ ଭୀମଭୋଇଙ୍କୁ ପୁରାଣର ଚରିତ୍ରବିଶେଷ ଭାବରେ ଗ୍ରହଣ କରିଛନ୍ତି। ଅଳ୍ପ କେତେକ ବିଷୟରେ ବସୁଙ୍କ ଠାରୁ ତାଙ୍କର ମତପାର୍ଥକ୍ୟ ଥିଲେ ବି ବସୁଙ୍କ ଭଳି ଭୀମଭୋଇଙ୍କୁ ସେ ମହିମା ବା ଅଲେଖ ଧର୍ମର ପ୍ରଧାନ-ପୁରୁଷ ବୋଲି ସ୍ତୁତିଚିନ୍ତାମଣିର ମୁଖବନ୍ଧରେ ଗ୍ରହଣ କରିଛନ୍ତି। ତାଙ୍କ (ମହିମା ସ୍ୱାମୀଙ୍କର) ଭକ୍ତମାନଙ୍କ ମଧ୍ୟରେ ନରସିଂହ, ଗୋବିନ୍ଦ ଓ ଭୀମ ପ୍ରଧାନ ଅଟନ୍ତି। (ମହାନ୍ତି, ୧୯୬୧ ପୃ.୯) ବା "ଭୀମଭୋଇଙ୍କ ପ୍ରଚାରିତ ବିଶିଷ୍ଟ କୁମ୍ଭୀପଟିଆ ଧର୍ମ" (ପୂର୍ବୋକ୍ତ) ଭଳି ବାକ୍ୟ ବା ବାକ୍ୟାଂଶ ଏହାର ପ୍ରମାଣ। ପୁଣି ଷଡ଼-ଗୋସ୍ୱାମୀଙ୍କ ଦ୍ୱାରା ଯେପରି ଭକ୍ତିମାର୍ଗର ବିଷୟ ବହିରଙ୍ଗ ଭାବରେ ପ୍ରଖ୍ୟାପିତ, ସେହିପରି ବହିରଙ୍ଗିଆ ଭାବରେ ଭୀମଙ୍କ ଦ୍ୱାର ମହିମାଧର୍ମର ଗୌରବ ପ୍ରଖ୍ୟାପିତ। ଅଧ୍ୟାପକ ମହାନ୍ତି ବିଶ୍ୱନାଥ ବାବାଙ୍କ **ସତ୍ୟମହିମାଧର୍ମର ଇତିହାସରେ** ଦିଆଯାଇଥିବା ବିବରଣୀକୁ ଅନ୍ଧଭାବରେ ଗ୍ରହଣ କରିବା ଦ୍ୱାରା ଓ ବାସ୍ତବ ତଥ୍ୟ ତଥା ଐତିହାସିକ ଉପାଦାନ ସଂପର୍କରେ ନ ଆସିବା

ଫଳରେ ଏଭଳି ମତଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଛନ୍ତି। **ସ୍ତୁତିଚିନ୍ତାମଣି, ବ୍ରହ୍ମନିରୂପଣ ଗୀତା** ଆଦି ପୁସ୍ତକ ସଂପାଦନା କଲାବେଳେ, ସେଗୁଡ଼ିକ ଯେ ପୂର୍ବରୁ ପ୍ରକାଶିତ, ସେ ସମ୍ପର୍କରେ ଅଧ୍ୟାପକ ମହାନ୍ତି ଅବହିତ ମଧ୍ୟ ନୁହନ୍ତି।

ଠିକ୍ ସେହିପରି ବିଶିଷ୍ଟ ଆଲୋଚକ ଓ ଚିନ୍ତାନାୟକ ଚିତ୍ତରଞ୍ଜନ ଦାସ **ଓଡ଼ିଶାର ମହିମାଧର୍ମ** ପୁସ୍ତକରେ ବିଶ୍ୱନାଥ ବାବାଙ୍କ ଗ୍ରନ୍ଥ ଉପରେ ଅତ୍ୟଧିକ ଗୁରୁତ୍ୱ ଆରୋପ କରି ନଗେନ୍ଦ୍ରନାଥ ବସୁଙ୍କ ମତକୁ ଖଣ୍ଡନ କରିଛନ୍ତି। ନଗେନ୍ଦ୍ରନାଥ ବସୁ ଭୀମଭୋଇଙ୍କର ବୋଲି କୁହାଯାଉଥିବା କେତୋଟି ପୁସ୍ତକ (କଳି ଭାଗବତ, ଅଲେଖ ଲୀଳା ଓ ଯଶୋମତୀ ମାଳିକା ଭଳି ସନ୍ଦେହାତ୍ମକ ପୁସ୍ତକ) ଭିତ୍ତିରେ ନିଜର ପୂର୍ବ ସିଦ୍ଧାନ୍ତକୁ ମହିମାଧର୍ମ ଓ ଭୀମଭୋଇଙ୍କ କାବ୍ୟକୃତି ଉପରେ ଯେଭଳି ଆରୋପ କରିଛନ୍ତି, ତାହା ମହିମାଧର୍ମ ସଂପର୍କିତ ପରବର୍ତ୍ତୀ ଧାରଣାକୁ ଗୋଳମାଳିଆ କରିଛି। କିନ୍ତୁ ବିଂଶ ଶତାବ୍ଦୀର ପ୍ରଥମ ଦଶକ ବେଳକୁ ଯେ ମହିମାଧର୍ମ ଓ ଭୀମଭୋଇ ସମୀକୃତ ହୋଇପଡ଼ିଥିଲେ , ଏହା କଣ ଅସ୍ୱୀକାର କରାଯାଇପାରେ ? ବସୁ ଭିନ୍ନ କାରଣରୁ ସମକାଳରେ ପ୍ରତିଷ୍ଠିତ ଧାରାର ପୁନରାବୃତ୍ତି କରିଛନ୍ତି ମାତ୍ର ଚିତ୍ତରଞ୍ଜନ, ବସୁଙ୍କ ମତାମତକୁ ପ୍ରତ୍ୟାଖ୍ୟାନ କଲାବେଳେ କିମ୍ବଦନ୍ତୀ-ନିର୍ଭର ଓ ଗୋଷ୍ଠୀଆନୁଗତ୍ୟ ଦ୍ୱାରା ଆକ୍ରାନ୍ତ ବିଶ୍ୱନାଥ ବାବଙ୍କ ଇତିହାସକୁ ଅନୁସରଣ କରିଥିବା ସ୍ୱୀକାର କରିଛନ୍ତି: "ଅବଧୂତ ସନ୍ୟାସୀ ବିଶ୍ୱନାଥ ବାବା ବିକ୍ଷିପ୍ତ କିମ୍ବଦନ୍ତୀମାନ ଏକତ୍ର କରି ମହିମାଧର୍ମର ଏକ ଐତିହାସିକ ବିବରଣୀ ସଂକଳିତ କରିଅଛନ୍ତି। ଏବିସବୁ ଗ୍ରନ୍ଥ ଭିତରେ ଭୀମଭୋଇଙ୍କର ଚରିତସୂଚକ ନାନା ବର୍ଣ୍ଣନା ରହିଛି। ତାହାକୁ ହିଁ ଅବଲମ୍ବନ କରି ଭୀମ ଭୋଇଙ୍କର ଜୀବନୀ ସମୟରେ କିଛି ଆଲୋକପାତ କରିବାର ଚେଷ୍ଟା କରାଯାଉଛି"। (ଦାସ, ୧୯୯୧:୨.୮୯) ଭୀମ ଭୋଇଙ୍କ ପ୍ରତି ଥିବା ଶ୍ରଦ୍ଧା ଚିତ୍ତରଞ୍ଜନଙ୍କୁ ଅଧିକ ତଥ୍ୟ ସଂଗ୍ରହ ଦିଗରେ ଅନୁପ୍ରେରିତ କରିଛି। ବିଶ୍ୱନାଥ ବାବାଙ୍କ ଯୋରନ୍ଦା ଗାଦି ସହ ଭୀମଭୋଇଙ୍କ ଖଲିଆପାଲିର ଯେ ବିରୋଧ ରହିଛି, ତାହା ପରବର୍ତ୍ତୀ କାଳରେ ସେ ଅନୁଭବ କରିଛନ୍ତି: ଯୋରନ୍ଦାରେ ଓ ଖଲିଆପାଲି ମଧ୍ୟରେ ସେହି କାଳରୁ କୌଣସି ଅନ୍ତରଙ୍ଗ ଗମନାଗମନ ମଧ୍ୟ ନାହିଁ। ଯୋରନ୍ଦାର ସନ୍ନ୍ୟାସୀମାନେ ଖଲିଆପାଲିକୁ ସେମାନଙ୍କ ମାର୍ଗର ଏକ ପୀଠ ବୋଲି ସ୍ୱୀକାର କରନ୍ତିନାହିଁ। (ଦାସ ୧୯୮୨:ପୂ ୫୯୧-୯୨) ଏହି ଅସ୍ୱୀକାର କରିବାର ମାନସିକତା ହେତୁ ମହିମାଧର୍ମର ତଥାକଥିତ ଇତିହାସରେ ଭୀମଭୋଇ କେବଳ

ବାଣୀସାଧକ ହୋଇ ରହିଯାଇଛନ୍ତି ଏବଂ ନୂଆ କାହାଣୀ ସବୁ ସଂରଚିତ ହୋଇ ଭୀମଭୋଇଙ୍କ ଭୂମିକାକୁ ଖର୍ବ କରାଯାଇଛି ।

ଊନବିଂଶ ଶତକରେ ରାଜନୈତିକ ଓ ସାମାଜିକ କାରଣରୁ ଓଡିଶାର ବିଭିନ୍ନ ପ୍ରାନ୍ତରେ ଯେଉଁ ବିପ୍ଳବ ପରିଦୃଷ୍ଟ ହୋଇଥିଲା ତାହାର ପ୍ରକାଶ କେତେବେଳେ ଧନ ମାଧ୍ୟମରେ ଘଟିଥିଲା ତ, ଅନ୍ୟ କେତେବେଳେ ଧର୍ମ ପ୍ରଚାର ଓ କବିତା ରଚନାର ଅଧିକାର ସାବ୍ୟସ୍ତ କରିବା ମଧ୍ୟ ଦେଇ ଘଟିଥିଲା । ଭୀମଭୋଇଙ୍କ କବିତା ସେହି ବିପ୍ଳବର ଅନ୍ୟତମ ପ୍ରକାଶ । ସୁରେନ୍ଦ୍ର ସାଏଙ୍କ 'ଉଲ୍ଗୁଲାନ' ପରାହତ ହେଲାପରେ ପଶ୍ଚିମ ଓଡ଼ିଶାର ଜନଗଣ ଯେଉଁ ରାଜନୈତିକ ଓ ସାମାଜିକ ଶୂନ୍ୟତାବୋଧର ଶରବ୍ୟ ହୋଇଥିଲେ, ତାହା ମହିମାଧର୍ମ ଓ ଭୀମଭୋଇଙ୍କ କବିତା ପାଇଁ ପଥ ଉନ୍ମୁକ୍ତ ଘଟିଥିଲା । (ଏଠାରେ ଉଲ୍ଲେଖଯୋଗ୍ୟ ଯେ ସୁରନ୍ଦ୍ର ସାଏଙ୍କ ଜୀବନ ସହ ଜଡ଼ିତ ଖିଣ୍ଡା ଗ୍ରାମର ସମସ୍ତେ ଏକ ସମୟରେ ମହିମାଧର୍ମ ଗ୍ରହଣ କରିଥିଲେ) । ମଣିଷ ଯେତେବେଳେ ବାସ୍ତବ ଜଗତରେ କୌଣସି ବସ୍ତୁକୁ ଅଲଭ୍ୟ ମଣେ ସେତେବେଳେ ସେ ତାକୁ ଅଧ୍ୟାସ ଜଗତରେ ଖୋଜେ । କ୍ଷମତାକେନ୍ଦ୍ରର ବାହାରେ ଥିବା ମଣିଷ ଧର୍ମ ମାଧ୍ୟମରେ ନୂଆ କ୍ଷମତାକେନ୍ଦ୍ର ତିଆରି କରେ । ଉପ-ସଂସ୍କୃତିର ସୃଷ୍ଟି ଏଭଳି ଉଦ୍ୟମର ପରିଣତି । ମହିମାଧର୍ମ, ଭୀମଭୋଇଙ୍କ ଆବିର୍ଭାବ ଓ ତାଙ୍କ କବିତ୍ୱର ଯଥାର୍ଥ ବିଶ୍ଳେଷଣ କରିବାକୁ ହେଲେ ଯେଭଳି ମହିମାଧର୍ମର ପ୍ରକାଶ, ବିକାଶ, ଗୋଷ୍ଠୀ-ଦ୍ୱନ୍ଦ ଓ ଧ୍ୟାନଧାରଣା ସମ୍ପର୍କରେ ଜାଣିବାକୁ ହେବ; ଠିକ୍ ସେଇଭଳି ପଶ୍ଚିମ ଓଡ଼ିଶାର ରାଜନୈତିକ, ସାମାଜିକ ଜୀବନର ଅନ୍ତଃସ୍ଥଳକୁ ପ୍ରବେଶ କରିବାକୁ ହେବ, ତାହାର ଇତିହାସ ପୁନଃନିର୍ମାଣ କରିବାକୁ ହେବ । କିନ୍ତୁ ସମାଜର ଦଳିତ ଗୋଷ୍ଠୀ ତ କେବେ ଇତିହାସ ଛାଡ଼ିଯାଏ ନାହିଁ । ସେମାନଙ୍କ ଇତିହାସ, ଅପରଗୋଷ୍ଠୀ ଦ୍ୱାରା ଅସ୍ୱୀକୃତ ଓ ବେଳେବେଳେ ସ୍ୱାଙ୍ଗୀକୃତ ହୋଇଥାଏ । ତଥାପି ଅବଜ୍ଞାର ସହିତ ଦଳିତ ଇତିହାସର କିୟଦଂଶ ଉଚ୍ଚବର୍ଗ ରଚନା କରିଥାଏ, ଯାହା ଅପରାଧୀ ଆପଣା ଅଜ୍ଞାତରେ ଛାଡ଼ି ଯାଇଥିବା ସନ୍ତକର ସମଧର୍ମୀ । ୧୮୬୬ ମସିହାରେ ପ୍ରଥମ ଥର ଉତ୍କଳ ଦୀପିକା (୧.୬.୧୮୬୭) ରେ ପ୍ରକାଶିତ ହୋଇଥିବା ସମ୍ବାଦଠାରୁ ଆରମ୍ଭ କରି ଏସ୍‌ମାନ୍‌ଙ୍କ ପ୍ରବନ୍ଧ ପର୍ଯ୍ୟନ୍ତ ମହିମାଧର୍ମ ସମ୍ପର୍କରେ ଲିଖିତ ସମସ୍ତ ଲେଖା ଏହିଭଳି ସନ୍ତକ ମାତ୍ର । ଏହି ସମସ୍ତ ସନ୍ତକ ବା ଉପାଦାନକୁ ନେଇ ହିଁ ମହିମାଧର୍ମ ବା ଭୀମଭୋଇଙ୍କ ଇତିହାସ ପୁନଃନିର୍ମାଣ କରିବାକୁ ପଡ଼ିବ । ଯଥାର୍ଥ ଇତିହାସର ପ୍ରେକ୍ଷିତରେ ଦେଖିଲେ, ଭୀମଙ୍କ

ରଚନାବଳୀକୁ ନେଇ ଆମର ଗବେଷକ ସମାଲୋଚକମାନଙ୍କୁ ଆତ୍ମଦ୍ୱନ୍ଦ ବା ଆତ୍ମଖଣ୍ଡନ ମଣ୍ଡନର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ। ସେତେବେଳେ ମହିମାଧର୍ମ ପଶ୍ଚିମ ଓଡିଶାର ଜନସମାଜ ଭୀମ ପ୍ରେକ୍ଷିତରେ ଦେଖିଲେ, ଭୀମଙ୍କ ରଚନାବଳୀକୁ ନେଇ ଆମର ଗବେଷକ ସମାଲୋଚକମାନଙ୍କୁ ଆତ୍ମଦ୍ୱନ୍ଦ୍ୱ ବା ଆତ୍ମଖଣ୍ଡନ ମଣ୍ଡନର ସମ୍ମୁଖୀନ ହେବାକୁ ପଡ଼ିବ ନାହିଁ। ସେତେବେଳେ ମହିମାଧର୍ମ, ପଶ୍ଚିମ ଓଡ଼ିଶାର ଜନସମାଜ, ଭୀମଭୋଇ ଓ ତାଙ୍କର ରଚନାବଳୀ ଆମକୁ ସୁସ୍ପଷ୍ଟ ଓ ଉଜ୍ଜ୍ୱଳତର ହୋଇ ଦେଖାଯିବେ।

## ସଂଯୋଜନ: ମହିମାଧର୍ମ ସମ୍ପର୍କରେ ଖଣ୍ଡିଏ ପତ୍ର

"ମହିମା ଧର୍ମାବଲମ୍ବୀ କିଏ" ? ବୋଧହୁଏ ଏହା ପ୍ରାୟ ସମସ୍ତଙ୍କୁ ଅବିଦିତ ନଥିବ। ଏହି ଧର୍ମାବଲମ୍ବୀମାନେ ଏକେଶ୍ୱରବାଦୀ ଓ ଜାତିଭେଦ ମାନନ୍ତି ନାହିଁ, ଏ ସୂର୍ଯ୍ୟଙ୍କର ଉଦୟଠାରୁ ଅସ୍ତ ପର୍ଯ୍ୟନ୍ତ ସମୟ ଭିନ୍ନ ଅନ୍ୟ ସମୟରେ ଆହାର କରନ୍ତି ନାହିଁ। (ଦିବସ ବିନା ଖାଇବା ନିଷେଧ)।

ଯୀଶୁ ପୁନର୍ବାର ଦର୍ଶନ କରିବା ଖ୍ରୀଷ୍ଟିୟାନମାନଙ୍କରେ ଯେପରି ବିଶ୍ୱାସ ଧର୍ମପ୍ରଚାରକ ମହିମାଙ୍କ ସହିତ ଇହ ଜଗତରେ ପୁନର୍ମିଳନ ହେବା ଏହି ଧର୍ମାବଲମ୍ବୀମାନଙ୍କର ସେହିପରି ବିଶ୍ୱାସ । ଏ ଧର୍ମ ଦ୍ୱାରା ସମାଜର କୌଣସି ଉନ୍ନତି ହୋଇନାହିଁ, ଏଥିରେ ନାହିଁ ନଚେତ୍ ବ୍ରାହ୍ମଧର୍ମ ଦ୍ୱାରା ସମାଜର କୌଣସି ଉନ୍ନତି ହୋଇଥାଆନ୍ତ।

ଉକ୍ତ ଧର୍ମାବଲମ୍ବୀମାନେ ଦୁଇ ଶ୍ରେଣୀରେ ବିଭକ୍ତ; ଯଥା ଯୋଗୀ ଓ ଭୋଗୀ। ପ୍ରଥମୋକ୍ତ ଦଳ କୁନ୍ତିପଟିଆ ଅର୍ଥାତ୍ କୁମ୍ଭିପଟ ପରିଧାନ କରନ୍ତି। ଏମାନଙ୍କର ମଠ ଢେଙ୍କାନାଳ ଅନ୍ତର୍ଗତ ଜୋରନ୍ଦା ଗ୍ରାମ ପ୍ରାନ୍ତରେ ଅଟେ। ଏଠାରେ ମହିମାଙ୍କର ସମାଧି ଅଛି। ସମାଧି ନିକଟରେ ଗୋଟିଏ ଅମୁହାଁ ଦେଉଳ ଅଛି। ଏ ମଠ ମହୁଲପଡ଼ା ମଠ ପରି ରମଣୀୟ ନୁହେଁ।

ଶେଷୋକ୍ତ ଦଳ କନାପଟିଆ ଅର୍ଥାତ୍ ଗେରୁବସ୍ତ୍ର ଓ ମଠାଦି ବ୍ୟବହାର କରନ୍ତି। ଏମାନଙ୍କର ମଠଟି ଗଡ଼କୁ ପ୍ରାୟ ତିନି କ୍ରୋଶ ଦୂରରେ ମହୁଲପଡ଼ା ଗ୍ରାମ ନିକଟସ୍ଥ

ନିର୍ଜନ ଅରଣ୍ୟ ମଧ୍ୟରେ ଅବସ୍ଥିତ। ଏଠାରେ ମହିମାଙ୍କ ପ୍ରଥମ ଶିଷ୍ୟ ନରସିଂହ ଦାସ ଅଛନ୍ତି। ମଠକୁ ଦେଖି ପୁରାକାଳର ବର୍ଣ୍ଣିତ ଆଶ୍ରମ ପରି ବୋଧ ହେଲା। ମନରୁ ପାର୍ଥିବ ଚିନ୍ତା ଦୂରୀଭୂତ ହୋଇ ଅଭୂତପୂର୍ବ ସ୍ୱର୍ଗୀୟଭାବ ଉଦୟ ହେଲା। ଏହାର ପ୍ରବେଶମାର୍ଗ ଦେଇ ଗୋଟିଏ ସୁନିର୍ମଳ ଝରି ପ୍ରବାହିତ ହୋଇ ଜୀବଜନ୍ତୁଙ୍କର ଅଭାବ ମୋଚନ କରୁଅଛି। ଅନତି ଦୂରରେ ଗୋଟିଏ ଉଚ୍ଚମଣ୍ଡପ ଅଛି। ଶିଷ୍ୟମାନଙ୍କ ରହିବା ନିମିତ୍ତ ଅନେକଗୁଡ଼ିଏ ଛୋଟ ଛୋଟ ଗୃହ ଅଛି। ଇଷ୍ଟକ ନିର୍ମିତ ଗୋଟିଏ ଶୂନ୍ୟ ଗୃହ, ଗୋଟିଏ ଭଣ୍ଡାର ଗୃହ ଓ ଗୋଟିଏ ଅଗ୍ନିଗୃହ ଅଛି। ଅଗ୍ନିଗୃହର ଚତୁର୍ଦ୍ଦିଗରେ ଚାରିଗୋଟି ଦ୍ୱାର ଅଛି। ଆମ୍ର ପଣସ ଓ କଦଳୀ ପ୍ରଭୃତି ଛୋଟ ଛୋଟ ବୃକ୍ଷମାନେ ଫଳାଭାରରେ ଅବନତ ହୋଇ ସ୍ଥାନର ମହିମା ପ୍ରକାଶ କରୁଥାନ୍ତି। ଆଶ୍ରମବାସୀମାନେ ଉକ୍ତ ଆରୋପିତ ବୃକ୍ଷମାନଙ୍କର ଫଳ ଭକ୍ଷଣ କରନ୍ତି ନାହିଁ। ଅନ୍ୟାନ୍ୟ ଲୋକମାନେ ତାହା ଗ୍ରହଣ କରନ୍ତି। ପ୍ରତ୍ୟେକ ବୃକ୍ଷର ନିମ୍ନ ପ୍ରଦେଶରେ ଗୋଟିଏ ଗୋଟିଏ ଆଳବାଳ ଅଛି। ପକ୍ଷୀମାନଙ୍କର ଅକୁତଭୟରେ ଜଳପାନ ଦେଖି ହିଂସା ବା ଜଘନ୍ୟ ପଦାର୍ଥ ତାହା ଉତ୍ତମ ରୂପେ ହୃଦୟଙ୍ଗମ ହୁଏ। ଯଦି ବା ଆଶ୍ରମରେ ପୋଷିତ ମୃଗ ଶାବକଗଣ ନାହାନ୍ତି, ତଥାପି ହରିଣଗଣ ସମୟରେ ସମୟେ ବନରୁ ଆସି ତହିଁର ଅଭାବ ମୋଚନ କରନ୍ତି। ଲତା ସକଳ ବାୟୁ ବେଗରେ ଝୁଲି ପଡୁଥିବାରୁ ବୋଧହୁଏ ଏମାନେ ଫଳ ପ୍ରଦାନ କରିବା ଲାଗି ନଉଁ ଅଛନ୍ତି କି ?

> ଖୁଦ୍ରାନ୍ ନ ଜକ୍ଷୁ ହରିଣାନ୍ତି ମୃଗେନ୍ଦ୍ରଃ।
> ବିଶଶ୍ୱସେ ପକ୍ଷୀଗଣୈଃ ସମନ୍ତତ୍
> ନଂ ନମ୍ୟମାନଃ ଫଳ ଦିସ୍ୟେବ।
> ଚ କାଶିରେ ତତ୍ର ଲତା ବିଲୋକାଃ।

ସୁଚିକଣ ଚିତ୍ତରଞ୍ଜନ ଅଙ୍ଗନମାଳ, ବୃକ୍ଷେପରି ସୁଖାସୀନ ବିହଙ୍ଗ କୁଳର ମନୋହର ନିନାଦ, ଏକ ପୁଷ୍ପରୁ ଅନ୍ୟ ପୁଷ୍ପକୁ ଗମନାଗମନକାରୀ ଭୃଙ୍ଗ ସଙ୍କୁଳନର ଗୁଣୁ ଗୁଣୁ ସୁମଧୁର ସ୍ୱନ, ଅଗ୍ନି ଗୃହର ଆହୁତି ଓ ବନପ୍ରଦେଶସ୍ଥ କୁସୁମଚୟର ଗନ୍ଧବାହୀ ମନ୍ଦ ମନ୍ଦ ସମୀରଣ ଏବଂ କଦମ୍ବ ବୃକ୍ଷର ନିମ୍ନ ପ୍ରଦେଶସ୍ଥ ଚିତ୍ତବିନୋଦିନୀ ଓ ଶାନ୍ତିପ୍ରଦାୟିନ ମୃଣ୍ମୟ ବେଦିକା ଆଶ୍ରମର ଶୋଭା ବର୍ଦ୍ଧନ କରିଅଛି ଏବଂ ଦର୍ଶକଙ୍କର ମନକୁ ଆନନ୍ଦ ଲହରିରେ ଖେଳାଇ ଦେଉଅଛି।

## ନିର୍ଦ୍ଦେଶିତ ଗ୍ରନ୍ଥ-ପଞ୍ଜି :


ଦାସ, ଚିତ୍ତରଞ୍ଜନ (୧୯୮୨), ସନ୍ଥ ଭକ୍ତି ସାହିତ୍ୟ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।

----- (୧୯୫୨), ଓଡ଼ିଶାର ମହିମାଧର୍ମ, ଧର୍ମଗ୍ରନ୍ଥ ଷ୍ଟୋର, କଟକ।

ପଟ୍ଟନାୟକ, ସୁଧାକର (ସଂ) (୧୯୭୨), ସମ୍ବାଦପତ୍ରରୁ ଓଡ଼ିଶାର କଥା, ଗ୍ରନ୍ଥମନ୍ଦିର, କଟକ।

ମହାନ୍ତି, ଆର୍ତ୍ତବଲ୍ଲଭ (ସଂ) (୧୯୪୮) ଭକ୍ତକବି ଭୀମ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ।

----- (୧୯୬୧), ସ୍ତୁତିଚିନ୍ତାମଣି, ଉତ୍କଳ ବିଶ୍ୱବିଦ୍ୟାଳୟ, କଟକ।

-----, ଚଉତିଶା ମଧୁଚକ୍ର (ନୂ.ସଂ) କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ।

Eschmann, A. (1978), Mahima Dharma: An Autochthonous Hindu Re-form Movement (in) *The Cult of Jagannath and Regional Tradition of Orissa.* (ed. by A Eschmann et al) Manohar : New Delhi.

Nath, S. (1977), "Mahima Dharma" (in) *Sidelights on History and Culture of Orissa* (ed. by M. N. Das) Vidyapuri, Cuttack.

# ବିଜୟଚନ୍ଦ୍ର ମଜୁମଦାରଙ୍କ ଭୀମଭୋଇ ଆବିଷ୍କାର

**ବସନ୍ତ କୁମାର ପଣ୍ଡା**

ଭାବିଲେ ଅବାକ୍ ଲାଗେ ମାତ୍ର ଗୋଟିଏ ଶତାବ୍ଦୀ ପୂର୍ବରୁ ଜୀବିତ ଥିବା ଓ ନିଜର ପ୍ରଚଣ୍ଡ ପ୍ରତିଭାର ସ୍ପର୍ଶରେ ଧର୍ମ, ଦର୍ଶନ, କାବ୍ୟ ରଚନା ଓ ସାଂସ୍କୃତିକ ସଙ୍ଗଠନରେ ଅଭୂତପୂର୍ବ ସ୍ପର୍ଶରେ ବିପ୍ଲବ ଆଣିଥିବା କବି ଭୀମଭୋଇଙ୍କ ସମ୍ପର୍କରେ ତାଙ୍କ କାଳରେ କୌଣସ ଆଲୋଚନା କିପରି ହୋଇନଥିଲା ? ସମଗ୍ର ଉତ୍କଳକୁ ବାରମ୍ବାର ପରିକ୍ରମା କରୁଥିବା ପ୍ରକୃତି-କବି ରାଧାନାଥ, ଉତ୍କଳ ଭ୍ରମଣର ସ୍ରଷ୍ଟା ବହୁ ଅନୁଭୂତିର ନାୟକ କଥାଶିଳ୍ପୀ ଫକୀରମୋହନ ବା ବ୍ରହ୍ମଜ୍ଞାନୀ ଭକ୍ତକବି ମଧୁସୂଦନ, ଏପରିକି ଯେଉଁ ଅଞ୍ଚଳକୁ ଭୀମଭୋଇ ନିଜର ଧର୍ମ ଓ ସାହିତ୍ୟ ଚର୍ଚ୍ଚା ପାଇଁ କର୍ମଭୂମି ଭାବରେ ବାଛି ନେଇଥିଲେ, ସେହି ପଶ୍ଚିମ ଓଡ଼ିଶାରେ ସର୍ବମାନ୍ୟ କବି ଗଙ୍ଗାଧର, କେହି ଏହି ଅବିସ୍ମରଣୀୟ ପ୍ରତିଭା ବିଷୟରେ କିପରି ପଦଟିଏ ବି ଲେନାହାନ୍ତି, ତାହା ରହସ୍ୟପୂର୍ଣ୍ଣ ମନେହୁଏ ।

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକରେ ଏହି ପ୍ରତିଭାକୁ ପ୍ରଥମକରି ଲୋକଲୋଚନକୁ ଆଣିଲେ ବିଶିଷ୍ଟ ଗବେଷକ ଓ କଲିକତା ବିଶ୍ୱବିଦ୍ୟାଳୟର ବଙ୍ଗଳା ଅଧ୍ୟାପକ ବିଜୟ ଚନ୍ଦ୍ର ମଜୁମଦାର। ସୋନପୁର ମହାରାଜା ବୀରମିତ୍ର ଦେଓ ସିଂହଦେଓଙ୍କ ଅର୍ଥାନୁକୂଲ୍ୟରେ ଓ କୁଳପତି ସାର୍ ଆଶୁତୋଷ ମୁଖାର୍ଜୀଙ୍କ ନିର୍ଦ୍ଦେଶରେ ସମଗ୍ର ଓଡ଼ିଶା ସାହିତ୍ୟର ପ୍ରଥମ କରି ଯେଉଁ ଚୟନିକା "Typical Selections from Oriya Literature"ର ସମ୍ପାଦନ କରିଥିଲେ, ସେଥିରେ ଆଧୁନିକ କାଳରେ ପ୍ରାଚୀନ କବି ପର୍ଯ୍ୟାୟରେ ସେ ଭୀମଭୋଇଙ୍କ ରଚିତ ଜଣାଣ, ଭଜନ ଓ ଚଉତିଶାରୁ ପଦ ସଂଗ୍ରହ କରି ସଂକଳନରେ ଅନ୍ତର୍ଭୁକ୍ତ କରିଥିଲେ ଏବଂ ସେହି ଗ୍ରନ୍ଥର ମୁଖବନ୍ଧରେ

ଭୀମଭୋଇଙ୍କ ଜୀବନୀ ଓ କୃତି ସମ୍ପର୍କରେ ସଂକ୍ଷିପ୍ତ ଭାବରେ ଯେଉଁ ଦୁଇଟି ଅନୁଚ୍ଛେଦ ଲେଖିଥିଲେ, ତାହା ହିଁ ଥିଲା କବି ଭୀମଭୋଇଙ୍କ ବିଷୟରେ ପ୍ରଥମ ଆଲୋଚନା। (୧) ଯାହାକୁ ଆଧାର କରି ସ୍ତୁତିଚିନ୍ତାମଣି ର ମୁଖବନ୍ଧରେ ଅଧ୍ୟାପକ ଆର୍ତ୍ତଭଲ୍ଲଭ ମହାନ୍ତି ଓ ପରିବର୍ତ୍ତୀ ସମୟରେ ଓଡ଼ିଶା ସାହିତ୍ୟର ଅନ୍ୟାନ୍ୟ ଆଲୋଚକ ଓ ଐତିହାସିକ ଭୀମଭୋଇଙ୍କ ସଂପର୍କରେ ଆଲୋଚନା କରିଛନ୍ତି।(୨) ତେଣୁ ବିଜୟ ଚନ୍ଦ୍ର ମଜୁମଦାର ହିଁ ଭୀମଭୋଇଙ୍କ ଆବିଷ୍କାର କରିବାର ଗୌରବ ଦାବି କରନ୍ତି। ଭୀମଭୋଇଙ୍କ ବିଷୟରେ ଆଲୋଚନା ଆରମ୍ଭ କରି ଅଧ୍ୟାପକ ମଜୁମଦାର ଲେଖିଛନ୍ତି, "Typical Selection"ର ଦ୍ୱିତୀୟ ଖଣ୍ଡର ଶେଷ ଅଧ୍ୟାୟରେ ଯେଉଁ କେତେଜଣ କବିଙ୍କର ରଚନା ଅନ୍ତର୍ଭୁକ୍ତ ହୋଇଛି, ସେମାନେ ଆଧୁନିକ ଯୁଗର ହୋଇଥିଲେ ମଧ ସେମାନଙ୍କର ରଚନାରେ ଆଧୁନିକତାର ଲେଶମାତ୍ର ଚିହ୍ନନାହିଁ। କାବ୍ୟଶୈଳୀ, ଛନ୍ଦପ୍ରୟୋଗ, ଏପରିକି କଥାବସ୍ତୁର ନିର୍ବାଚନରେ ସେମାନେ ଉପେନ୍ଦ୍ର ଭଞ୍ଜ ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କୁ କେବଳ ଅନୁକରଣ କରିଛନ୍ତି। କିନ୍ତୁ ଏହି ମନ୍ତବ୍ୟ କବି ଭୀମଭୋଇଙ୍କ ପାଇଁ ପ୍ରଯୁଜ୍ୟ ନାହେଁ। ସେ ଥିଲେ ଜଣେ ସନ୍ଥ ଓ ନିଷ୍ଠାବନ୍ତ ଧାର୍ମିକ ପୁରୁଷ। ସରଳ ଭାଷାରେ ସେ ତାଙ୍କର କାବ୍ୟକବିତା ରଚନା କରିଛନ୍ତି। ସେଥିରେ ପୂରି ରହିଛି ଉର୍ଦ୍ଧ୍ୱାୟିତ ଆଧ୍ୟାତ୍ମିକ ଚେତନା ଓ ନୈତିକ ମର୍ମବାଣୀ। ଅସୀମର ଅପାର୍ଥିବ ଆହ୍ୱାନରେ ଆନ୍ଦୋଳିତ ହୋଇ ସେ କବିତା ରଚନା କରିଥିଲେ। କିନ୍ତୁ ତାଙ୍କର ବାକ୍ୟଶୈଳୀ ପ୍ରାଚୀନ ଧାରଣାର ଅନୁବର୍ତ୍ତୀ ଓ ଆଧୁନିକ ସଭ୍ୟତା ପରୋକ୍ଷ ଭାବରେ ସୁଦ୍ଧା ତାଙ୍କୁ ପ୍ରଭାବିତ କରିପାରି ନାହିଁ। ତେଣୁ ମୁଁ ତାଙ୍କୁ ଏହି ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରିଛି। ଅଧ୍ୟାପକ ମଜୁମଦାର ପୁଣି ଲେଖିଛନ୍ତି, ବ୍ୟକ୍ତିଗତ ଭାବରେ ମୁଁ ଭୀମଭୋଇଙ୍କର ଅନୁରାଗୀ ଓ ତାଙ୍କ ଜୀବନୀ ଓ ରଚନାକୁ ମୁଁ ଅତି ଉଚ୍ଚସ୍ତରୀୟ ଶିକ୍ଷଣୀୟ ବିଷୟ ଭାବରେ ଗ୍ରହଣ କରେ। (୩)

ଅଧ୍ୟାପକ ମଜୁମଦାରଙ୍କ ଆଲୋଚନା ଅନୁଯାୟୀ " ୧୮୫୫ରେ ରେଢାଖୋଲ ଅଞ୍ଚଳରେ ଏକ ଦରିଦ୍ର କନ୍ଧ ପରିବାରରେ ଭୀମଭୋଇଙ୍କର ଜନ୍ମ। ୧୯୯୫ରେ ଯେତେବେଳେ ସୋନପୁର ରାଜ୍ୟର ଖଲିଆପାଲିଠାରେ ତାଙ୍କର ଦେହାନ୍ତ ହୁଏ, ମୋ ହିସାବରେ ତାଙ୍କର ବୟସ ଥିଲା ମାତ୍ର ଚାଳିଶବର୍ଷ। ସମସ୍ତେ ଜାଣନ୍ତି କନ୍ଧମାନେ ଏପରି ଏକ ଆଦିମ ଆଦିବାସୀ, ଯେଉଁମାନଙ୍କର ଜୀବନଚର୍ଯ୍ୟାକୁ ହିନ୍ଦୁ ପରମ୍ପରା

ସୃଷ୍ଟି କରିପାରିନାହିଁ। ଏପରି ଏକ ଓଡ଼ିଆ କନ୍ଧ ପରିବାରରେ ଜନ୍ମଗ୍ରହଣ କରି ଭୀମଭୋଇ ଗୋଚାରଣ କରି ନିଜର ବାଲ୍ୟାବସ୍ଥା ଅତିବାହିତ କରୁଥିଲେ। ସମ୍ବଲପୁର District Gazetteerରେ ପ୍ରକାଶିତ ତଥ୍ୟ ଅନୁସାରେ ମୋର ବିବରଣୀକୁ ସଂଶୋଧନ କରିବାକୁ ଉଚିତ ମନେ କରୁଛି। ଭୀମଭୋଇଙ୍କ ରଚନା ଅଧ୍ୟୟନ ପରେ ମୋର ହୃଦବୋଧ ହୋଇଛି ଯେ ସେ ଜନ୍ମାନ୍ଧ ନଥିଲେ। ବରଂ ତାରୁଣ୍ୟର ଆଦ୍ୟ ଭାଗ୍ୟରେ ରୋଗାକ୍ରାନ୍ତ ହୋଇ ସେ ଦୃଷ୍ଟିଶକ୍ତି ହରାଇଥିଲେ। ବାଲ୍ୟକାଳରୁ ସେ ପଢାଲେଖା ଶିଖିଥିଲେ। ଭାଗବତ ଘରେ ପୁରାଣ ଶୁଣି ପ୍ରାଚୀନ ଓଡ଼ିଆ ସାହିତ୍ୟ ବିଷୟରେ ବହୁଜ୍ଞାନ ଅର୍ଜନ କରିଥିଲେ। ତାଙ୍କର ଅସାଧାରଣ ଧୀଶକ୍ତି ଓ ଅନନ୍ୟ ଆହରଣ ଦକ୍ଷତା ତାଙ୍କ ଦୃଷ୍ଟିକୁ ଅଫୁରନ୍ତ ଜୀବନୀ ଶକ୍ତି ପ୍ରଦାନ କରିଛି। ଜଗନ୍ନାଥ ଦାସଙ୍କ ଭାଗବତ ଆଦି ଯେଉଁ ଗ୍ରନ୍ଥ ପାରାୟଣ ସେ ଶୁଣୁଥିଲେ, ତାଙ୍କର ଅଦ୍ଭୂତ ସ୍ମୃତିଶକ୍ତିରେ ତାକୁ ସାଇତି ରଖିଥିଲେ। ନିଜ ପ୍ରତିଭାର ସ୍ପର୍ଶରେ ଅଭିନବ ରୂପଦେଇ ନିଜ ରଚନାରେ ପ୍ରକାଶ କରୁଥିଲେ।"

"ଥରେ ସେ କେତେଜଣ କୁମ୍ଭିପଟୁଆ ଧର୍ମପରିବ୍ରାଜକଙ୍କୁ ଭେଟିଲେ ଓ ଏହି ନୂତନ ପନ୍ଥାପ୍ରତି ଆକୃଷ୍ଟ ହେଲେ। ମହିମା ଧର୍ମର ଗୁରୁ ମହିମା ଗୋସାଇଁଙ୍କୁ ଦର୍ଶନ ପାଇଁ ଢେଙ୍କାନାଳ ଗଲେ ଓ ସେଠାରେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ। ପରବର୍ତ୍ତୀ ସମୟରେ କୁମ୍ଭିପଟୁଆମାନଙ୍କ ଭିତରେ କିଛି ପରିବର୍ତ୍ତନ ଆଣି ନିଜକୁ ଅଲେଖ ଧର୍ମର ଗୁରୁ ଭାବରେ ପ୍ରତିଷ୍ଠିତ କଲେ। ଧର୍ମ ଆନ୍ଦୋଳନର ଇତିହାସରେ ଏହା ଏକ ଉଲ୍ଲେଖନୀୟ ଘଟଣା ଯେ ନୀଚକନ୍ଧ ଜାତିର ଜଣେ ଅନ୍ଧକବି ଭୀମଭୋଇ ଗୋଟିଏ ଧର୍ମଧାରାର ପ୍ରବର୍ତ୍ତକ ଓ ଧର୍ମଗୁରୁ ହୋଇପାରିଲେ। ତାଙ୍କର ଧର୍ମଦର୍ଶନ ଜାତିପ୍ରଥା ଓ ପୌତଳିକତାର ଘୋର ବିରୋଧୀ। ସୋନପୁର ରାଜ୍ୟର ଖଲିଆପାଲି ଥିଲା ତାଙ୍କର ପ୍ରଚାର ସ୍ଥଳ, ତାଙ୍କର ଅସଂଖ୍ୟ ଅନୁଗାମୀ ସେଠାରେ ତାଙ୍କଠାରୁ ଧର୍ମବାଣୀ ଶ୍ରବଣ କରୁଥିଲେ। ଏପରିକି ଜାତ୍ୟାଭିମାନ ପରିତ୍ୟାଗ କରି କେତେଜଣ ବ୍ରାହ୍ମଣ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ଓ ତାଙ୍କ ମୁଖରୁ ସହସା ଉଚ୍ଚାରିତ ଧର୍ମବାଣୀର ପଦ୍ୟଗୁଡ଼ିକୁ ଉଲ୍ଲେଖ କରିବା ପାଇଁ ନିୟୋଜିତ ହୋଇଥିଲେ। ସେଥିମଧ୍ୟରୁ ଅଳ୍ପ କେତୋଟି ଭାବଗର୍ଭକ କାବ୍ୟପଂକ୍ତିକୁ ମୁଁ ସଂକଳନରେ ସ୍ଥାନ ଦେଇଛି। ଏହା ପାଠକଲେ ପାଠକମାନେ ଅନୁମାନ କରିପାରିବେ ଯେ, କୌଣସି ବିଷୟରେ ଶିକ୍ଷାଲାଭ ନକରିମଧ୍ୟ ଭୀମ ଭୋଇଙ୍କର ଭାଷା କେତେ ଶକ୍ତିଶାଳୀ, ଶୈଳୀ କେତେ ସୁନ୍ଦର। ସଂକଳନରେ ସନ୍ନିବେଶିତ ଭୀମଭୋଇଙ୍କର ପ୍ରଥମ ରଚନାଟି ଏକ ବିଲୋମ ଚଉତିଶା। ବ୍ୟଞ୍ଜନ

ବର୍ଣ୍ଣର ବିପରୀତ କ୍ରମରେ 'କ୍ଷ' ଠାରୁ 'କ' ପର୍ଯ୍ୟନ୍ତ ଅକ୍ଷରକୁ ଆଦ୍ୟରେ ରଖି ଏହି ଚଉତିଶା ରଚିତ ହୋଇଛି । ଚଉତିଶା ରଚନାର ଏହି ଅଭିନବ ଶୈଳୀ ପ୍ରତିଟି ଛୋଟ ଛୋଟ କଥାରେ ଭୀମଭୋଇଙ୍କର ମୌଳିକତା କିପରି ପ୍ରକଟିତ, ତାହାର ପରିଚୟ ଦିଏ । ଏହା ରହସ୍ୟବାଦୀ ଆଧ୍ୟାତ୍ମିକ କବିତା ହେଲେ ମଧ୍ୟ ଏହାର ଲଳିତ ପଦାବଳୀ ଓ ଆକର୍ଷଣୀୟ ଶୈଳୀ ପାଠକଙ୍କୁ ମୁଗ୍ଧ କରିବ । କିନ୍ତୁ ଦୁଃଖର ବିଷୟ ତାଙ୍କର ସବୁରଚନା ଏ ପର୍ଯ୍ୟନ୍ତ ଅପ୍ରକାଶିତ ପାଣ୍ଡୁଲିପି ରୂପେ ରହିଛି ଓ ଯେଉଁ ଦେଶ ଓ ଜାତି ତାଙ୍କୁ ନେଇ ଗର୍ବ କରିବା କଥା, ତାଙ୍କ ପ୍ରତିଭାକୁ ଏ ପର୍ଯ୍ୟନ୍ତ ଯଥୋଚିତ ଭାବରେ ଚିହ୍ନିପାରି ନାହାନ୍ତି । ମୋର ବିନମ୍ର ମତରେ ସେ ଅସଧାରଣ ପ୍ରତିଭାସଂପନ୍ନ । ନିଜର ନୈତିକ (୪) ସାହସ ଓ ଚିନ୍ତାର ପରିଚ୍ଛନ୍ନତା ତାଙ୍କ ବ୍ୟକ୍ତିତ୍ୟକୁ ଅନନ୍ୟ କରି ତୋଳିଥିଲା ।"

Typical Selectionsର ଦ୍ୱିତୀୟ ଭାଗର ମୁଖବନ୍ଧରେ ଉପରୋକ୍ତ ଆଲୋଚନାଟିରେ ଅଧ୍ୟାପକ ବିଜୟଚନ୍ଦ୍ର ମଜୁମଦାର ଭୀମଭୋଇଙ୍କ ଜୀବନୀ ଓ ସାହିତ୍ୟିକ ପ୍ରତିଭାର ଯେଉଁ ସଂକ୍ଷିପ୍ତ ଆକଳନ କରିଥିଲେ, ତାହାହିଁ ଥିଲା ଓଡ଼ିଆ ସାହିତ୍ୟର ଇତିହାସରେ ଭୀମଭୋଇଙ୍କ ସଂପର୍କରେ ପ୍ରଥମ ଆଲୋକପାତ । ଏଥିରୁ ସୂଚନା ସଂଗ୍ରହ କରି ପରବର୍ତ୍ତୀ ସମୟରେ ପ୍ରାଚୀ ସମିତି ପକ୍ଷରୁ ସ୍ତୁତିଚିନ୍ତାମଣି ସମ୍ପାଦନା କଲାବେଳେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି ଓ ଅନେକେ ଭୀମଭୋଇଙ୍କ ସାହିତ୍ୟ ସମ୍ପର୍କରେ ବିଚାର ବିମର୍ଶ କରିଛନ୍ତି । ପରବର୍ତ୍ତୀ ସମୟରେ ଭୀମଭୋଇଙ୍କ ରଚନା ସଂଗ୍ରହ ଓ ସଂକଳନ ହେବାପରେ ଏହି କାର୍ଯ୍ୟ ଆହୁରି ସୁଗମ ହୋଇଛି ଓ ଗବେଷକମାନେ ଭୀମଭୋଇଙ୍କ ସାଧନା ଓ ସାହିତ୍ୟକୁ ଘେନି ପ୍ରବନ୍ଧମାନ ରଚନା କରିଛନ୍ତି ।

'ଅଲେଖ ଲୀଳା'ରୁ ଜଣାଯାଏ ଯେ, ଭୀମଭୋଇଙ୍କର ଘର ଥିଲା କାଙ୍କଣପଡାରେ ଏହା ସମ୍ଭବତଃ ରେଢାଖୋଲ ଅନ୍ତର୍ଗତ । ମହିମାଧର୍ମ ସହିତ ଭୀମଭୋଇଙ୍କର ସମ୍ପର୍କ ବିଷୟରେ ବହୁ ତଥ୍ୟ କ୍ରମଶଃ ପ୍ରକାଶିତ ହୋଇଛି । ବୁଦ୍ଧସ୍ୱାମୀ ମହିମା ଗୋସେଇଁଙ୍କଠାରୁ ଢେଙ୍କାନାଳର କପିଳାସପାହାଡରେ ଭୀମଭୋଇ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଗୋବିନ୍ଦ ଦାସ ଓ ଭୀମଭୋଇ ଦୁଇଜଣ ଥିଲେ ମହିମା ଗୋସେଇଁଙ୍କର ପ୍ରଖ୍ୟାତ ଶିଷ୍ୟ । ବୌଦର ବଳାସିଂଘଠାରେ ଗୋବିନ୍ଦ ଦାସ ମଠ ସ୍ଥାପନ କରିଥିଲେ । ଭ୍ରାମ୍ୟମାଣ ଓ ଯାଯାବର ଜୀବନଯାପନ ପରେ ଭୀମଭୋଇ ସୋନପୁରର ଖଲିଆପାଲିଠାରେ ତାଙ୍କର

ସାଧନାପୀଠ ଓ ପ୍ରଚାରସ୍ଥଳ ପ୍ରତିଷ୍ଠା କରିଥିଲେ । ବିଭିନ୍ନ ବିବରଣୀରୁ ଜଣାପଡେ ଯେ ଢେଙ୍କାନାଳର ତତ୍କାଳୀନ ରାଜା ଭାଗୀରଥୀ ମହେନ୍ଦ୍ର ବାହାଦୂର ମହିମା ଗୋସେଇଁଙ୍କ ଠାରୁ ବ୍ରହ୍ମଜ୍ଞାନ ଭକ୍ତିଯୋଗର ବ୍ୟାଖ୍ୟା ଶୁଣିଥିଲେ । ଫକୀରମୋହନଙ୍କ ଆତ୍ମଚରିତରେ ଉଲ୍ଲେଖଅଛି ଯେ ୧୮୭୬ ମସିହା ନଭେମ୍ବର ପହିଲାରେ ସେ ଢେଙ୍କାନାଳର Assistant Manager ପଦରେ ନିଯୁକ୍ତ ହେବାବେଳକୁ ଭାଗୀରଥୀ ମହେନ୍ଦ୍ର ବାହାଦୂରଙ୍କର ପରଲୋକ ଘଟିଛି । ଏଥିରୁ ସ୍ପଷ୍ଟ ହେଉଛି ଯେ ମହିମା ଗୋସେଇଁ ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଜୀବିତ ଥିଲେ ଓ ସେହି ସମୟରେ ଭୀମଭୋଇ ତାଙ୍କର ଶିଷ୍ୟ ହୋଇଥିଲେ । ଜାତିପ୍ରଥା ଓ ପୌତଳିକତାର ପ୍ରବଳ ବିରୋଧୀ ମହିମା-ପନ୍ଥୀମାନେ ୧୮୮୦ ମସିହାରେ ପୁରୀର ଜଗନ୍ନାଥ ମନ୍ଦିର ଆକ୍ରମଣ କରି ଜୟବିଜୟ ଦ୍ୱାର ପର୍ଯ୍ୟନ୍ତ ମାଡିଯାଇଥିଲେ । ବୁଦ୍ଧସ୍ୱାମୀ ମହିମାଙ୍କ ଶିଷ୍ୟମାନେ ବୁଦ୍ଧରୂପୀ ଜଗନ୍ନାଥଙ୍କୁ ଆକ୍ରମଣ କରିବା ଆପାତ ଦୃଷ୍ଟିରେ ଅବିଶ୍ୱାସ୍ୟ ମନେ ହେଲେ ମଧ୍ୟ ଶବର ପୂଜିତ ଜଗନ୍ନାଥ ବ୍ରାହ୍ମଣ୍ୟ ସଂସ୍କୃତି ଦ୍ୱାରା କବଳିତ ହୋଇଥିବା ଯୋଗୁଁ ମହିମପନ୍ଥୀମାନେ ପୁରୀ ମନ୍ଦିର ଆକ୍ରମଣ କରିଥିଲେ । ତାହାଥିଲା ଆଧ୍ୟାତ୍ମିକ ଓ ସାଂସ୍କୃତିକ ବିଦ୍ରୋହର ପରିଣତି । କଥିତ ଅଛି, ଏହି ଆକ୍ରମଣର ପୁରୋଭାଗରେ ଥିଲେ ଭୀମଭୋଇ । ପଞ୍ଚସଖା ଯୁଗରେ ଯୋଗଭିତ୍ତିକ ଶୂନ୍ୟସାଧନା ଓ ବୌଦ୍ଧଶୀଳଚର ଥିଲା ମହିମା ଧର୍ମର ମର୍ମବାଣୀ । ଅମନ, ଅଲେଖ, ଅଚେତା ପ୍ରଭୃତି ତାତ୍ତ୍ୱିକ ଶବ୍ଦବିନ୍ୟାସରୁ ଏହାର ପରିଚୟ ମିଳେ । ବୌଦ୍ଧମାନଙ୍କର କରୁଣା ଅଲେଖ ଧର୍ମ ତତ୍ତ୍ୱରେ ମଧ୍ୟ ପ୍ରକାଶିତ । ଭୀମଭୋଇଙ୍କର ରଚିତ :

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡିଥାଉ ଜଗତ ଉଦ୍ଧର ହେଉ ।

ତାହାର ପ୍ରକୃତ ପରିଚୟ କେବଳ ଧର୍ମପ୍ରଚାର ନୁହେଁ, ଶୁଦ୍ଧ କବିତ୍ୱର ପରାକାଷ୍ଠା ଭୀମଭୋଇଙ୍କ ରଚନବଳୀକୁ ସାହିତ୍ୟିକ ମର୍ଯ୍ୟାଦା ପ୍ରଦାନ କରିଛି । ବ୍ୟଞ୍ଜନ ବର୍ଣ୍ଣମାଳାର ପ୍ରତିକୂଳ ସ୍ରୋତରେ ରଚିତ ଚଉତିଶାଟି ଭୀମଭୋଇଙ୍କ କାବ୍ୟକୌଶଳର ଅଭ୍ରାନ୍ତ ନିଦର୍ଶନ ।

"କ୍ଷୀର ସିନ୍ଧୁବାସୀ ଯେହିରେ ସୁମନ କ୍ଷୀରସିନ୍ଧୁବାସୀଯେହି
କ୍ଷୀନାନଳେ ଜଗି ଅଛନ୍ତି ରହି ସୁମନରେ କ୍ଷମା ମହିମାଙ୍କୁ ଧ୍ୟାୟୀ ।"

ଭୀମଭୋଇଙ୍କ ରଚିତ ବହୁ ଭଜନ, ସ୍ତୁତି ଚିନ୍ତାମଣି ଓ ଚଉତିଶାରୁ ତାଙ୍କର ଯେଉଁ ଅନନ୍ୟ କବିଗୁଣର ପରିଚୟ ମିଳେ, ତାହାର ଆତ୍ମା ରସ ବା ରୀତି ନୁହେଁ। ତାଙ୍କ ସାହିତ୍ୟର ଅଭିଳଷିତ ଲକ୍ଷ୍ୟଥିଲା- ତତ୍ତ୍ୱ। ବରେଣ୍ୟ ଆଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ମତରେ "ଆରଣ୍ୟକ ଆଦିବାସୀ ଉନ୍ନୟନର ଏହି ସ୍ଲୋଗାନ ଯୁଗରେ ଆଦିବାସୀମାନଙ୍କୁ ଓଡ଼ିଆ ସଂସ୍କୃତି ତ ଦୂରର କଥା, ଓଡ଼ିଆଭାଷା ସହିତ ଆମେ ପରିଚିତ କରାଇ ପାରିଲୁ ନାହିଁ। କୋରାପୁଟ ଓ ଫୁଲବାଣୀ କନ୍ଧ ସମାଜରେ ଆଜି ସୁଦ୍ଧା ଓଡ଼ିଆ ଭାଷା ଅବୋଧ। ମାତ୍ର ବିଗତ ଶତାବ୍ଦୀରେ ଜଣେ କନ୍ଧ ଓ ଅନ୍ଧ ଓଡ଼ିଶାର ଆଧ୍ୟାତ୍ମିକ ଜୀବନକୁ କେବଳ ନୁହେଁ ଓଡ଼ିଆସାହିତ୍ୟକୁ ଯେପରି ସମୃଦ୍ଧ କରିଯାଇଛନ୍ତି ତାହା ଯଥାର୍ଥରେ ଏକ ବିସ୍ମୟ।" (୫)

ଅଧ୍ୟାପକ ବିଜୟଚନ୍ଦ୍ର ମଜୁମଦାର ଏହି କନ୍ଧଜାତିର ଅନ୍ଧକବିଙ୍କ ବିସ୍ମୟକର ପ୍ରତିଭାକୁ ପ୍ରଥମକରି ସାହିତ୍ୟ ଆଲୋଚନାରେ ଅବିଷ୍କାର କରି ଯେଉଁ ମହତ କାର୍ଯ୍ୟ କରିଛନ୍ତି, ହାତା ଅବିସ୍ମରଣୀୟ ହୋଇ ରହିବ। ସେ ଯଥାର୍ଥରେ ଲେଖିଛନ୍ତି :

"In my humble opinion he is a genius and for his moral courage and clearness of thought he is a unique personality in Orissa.

**ସୂଚନା :**


୧. ମଜୁମଦାର, ବି. ସି.- *Typical Selection from Oriya Literature* Vol-II (Section V) 1992, University of Calcutta- ୧୯୯୨ ।

୨. ମହାନ୍ତି, ଆର୍ତ୍ତବଲ୍ଲଭ, *ସ୍ତୁତି ଚିନ୍ତାମଣି*, ମୁଖବନ୍ଧ, ପ୍ରାଚୀ ସମିତି ।

୩. ମଜୁମଦାର, ବିସି – *Typical Selections from Oriya Literature* Vol-II, Introduction 1992 (Vi Modern Poets of the Old School)

୪. ତତ୍ରୈବ।

୫. ମହାନ୍ତି, ସୁରେନ୍ଦ୍ର, *ଓଡିଆ ସାହିତ୍ୟର କ୍ରମବିକାଶ*, ଅଗ୍ରଦୂତ ୧୯୭୮, ପୃ. ୨୪୬ ।

# ଭୀମଭୋଇଙ୍କ କବିତାରେ କ୍ରୋଧ ଓ ଯନ୍ତ୍ରଣାର ସ୍ୱର

ମଧୁସୂଦନ ପତି

ଯେ କୌଣସି ଦୃଷ୍ଟିରୁ ଭୀମଭୋଇଙ୍କ କୃତିର ଆଲୋଚନା ହେଉ ନା କାହିଁକି ତହିଁରେ ଉଚ୍ଚାରିତ କ୍ରୋଧ ଓ ଯନ୍ତ୍ରଣାର ସ୍ୱର ବିଚାରର କେନ୍ଦ୍ରକୁ ଚାଲିଆସିବା ସ୍ୱାଭାବିକ ଅଟେ। ତାଙ୍କ ଜୀବନଯାତ୍ରା, କେତେକ ମୂଲ୍ୟବୋଧ ପ୍ରତି ତାଙ୍କ ଅନୁରକ୍ତି, ତାଙ୍କ ଚେତନାର ପରିସର ଏବଂ ତାଙ୍କ କାବ୍ୟ ପ୍ରେରଣାକୁ ସେଇ ସ୍ୱରଟି ସାମୂହିକ ଭାବେ ଏକ ବିଶେଷ ଅନୁସରଣରେ ଧ୍ୱନାୟିତ କରିଛି। ଏ ବିଷୟବସ୍ତୁଟି ତେଣୁ ଏକ ବ୍ୟାପକ ଆଲୋଚନା ଦାବି କରେ। ଉପସ୍ଥିତ ପ୍ରବନ୍ଧ କେବଳ ତାହାର କେତେକ ମୁଖ୍ୟ ଦିଗ ପ୍ରତି ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ ସ୍ତୁତିଚିନ୍ତାମଣି କାବ୍ୟ ସଂକଳନଟିକୁ ଦୃଷ୍ଟାନ୍ତ କ୍ଷେତ୍ର ଭାବେ ବ୍ୟବହାର କରିଛି।

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ।"

ଯଥାର୍ଥ ଭାବେ ଗୌରବାନ୍ୱିତ ଏଇ ଉଦ୍ଧୃତିଟି ଭୀମଭୋଇଙ୍କ କବିମାନସର ଏକ ଚରମ ମୁହୂର୍ତ୍ତର ପ୍ରତିନିଧିତ୍ୱ କରେ। ସେଇ ସ୍ତରରେ ଉଭୟ କ୍ରୋଧ ଏବଂ ଯନ୍ତ୍ରଣା ମହତ୍ତର କରୁଣାବୋଧର ଉପଶମିତ। ମାତ୍ର ଗୋଟିଏ ସୃଷ୍ଟି-ମୁହୂର୍ତ୍ତର ଚୂଡ଼ାନ୍ତ ସେଇ ଉଚ୍ଚାରଣଟିକୁ ତାଙ୍କ ରଚନାର କେନ୍ଦ୍ରବିନ୍ଦୁ ଭାବେ ଗ୍ରହଣ କରିହୁଏ ନାହିଁ। ଏହି ସ୍ୱରଟିଏ ସମ୍ଭାବନା ବିବିଧ। ରୂପରେ ତାଙ୍କ କାବ୍ୟକୃତି ମଧ୍ୟରେ ଆବିଷ୍କାର କରିବାର ସୁଯୋଗ ରହିଥିଲେ ହେଁ ତାହା ତାଙ୍କ ରଚନାର ପ୍ରତିନିଧିସ୍ୱର ବୋଲି ମନେ ହୁଏ ନାହିଁ। ଏଭଳି ଗୋଟିଏ ଚରମ ପରିଣତି ପାଇଁ ତାଙ୍କ ଅନ୍ୟାନ୍ୟ ଲେଖାଗୁଡ଼ିକୁ ନିର୍ଦ୍ଦିଷ୍ଟ

ରୂପେ ପ୍ରସ୍ତୁତିର ଉପାଦାନ ବୋଲି ଜଣେ ସମାଲୋଚକ ସହଜରେ ଗ୍ରହଣ କରିବା ସମ୍ଭବ ନୁହେଁ। ଗଙ୍ଗାଧରେ କାବ୍ୟରେ ମାନବ ଜୀବନର ଗ୍ଲାନି ଓ ସାମାଜିକ ବ୍ୟଭିଚାରର ବିଭିନ୍ନ ଲାକ୍ଷଣିକ ଉପାଦାନ ଏବଂ ପ୍ରତିରୂପ ସବୁ ରହିଥିବା ସତ୍ତ୍ୱେ 'ବିଶ୍ୱ ଦେଖ ମଧୁମୟ'ର ଭାବଟିକୁ ଯେଭଳି କେନ୍ଦ୍ରୀୟ କାବ୍ୟ ପ୍ରେରଣା ଭାବେ ସ୍ୱୀକୃତି ଦିଆଯାଇପାରେ ସେଇ ଧରଣର ଆତ୍ମବିଶ୍ୱାସ ନେଇ ଭୀମଭୋଇଙ୍କ ଉପଯୁକ୍ତ ପଙ୍‌କ୍ତିକୁ ସନ୍ଥକବିଙ୍କ କାବ୍ୟଜଗତର ନିୟାମକ ମୂଲ୍ୟବୋଧ ବା ଭାବସମ୍ଭାର ରୂପେ ଗ୍ରହଣ କରିବା ବୋଧହୁଏ ନିରାପଦ ନୁହେଁ। ଏକ ଖଣ୍ଡ ହାଡ଼ ବୁନ୍ଦାଏ ରୁଧିର ଫୁଟେ ମାଉଁସର ଅସହାୟତା ଏବଂ ଅମାନିଆଁ ଉଚ୍ଛୃଙ୍ଖଳତାର ଅନୁଭୂତିରେ ସେଇ ଜଗତ ଏତେ ପରିମାଣରେ ଯନ୍ତ୍ରଣାସିକ୍ତ, ତଥା ସାମୟିକ ଭାବରେ ଅନେକରେ ମହିମାର ଅଖଣ୍ଡ ପ୍ରତିଷ୍ଠାର ବିଶ୍ୱାସରେ ସୁସ୍ଥିର ମନେ ହେଉଥିଲେ ସୁଦ୍ଧା ଅଜ୍ଞାନ, ବ୍ୟଭିଚାର ଓ ନିର୍ଦ୍ଦୟତାର ନଗ୍ନ ତାମସିକତା ବିରୁଦ୍ଧରେ ପ୍ରଚଣ୍ଡ ପ୍ରତିକ୍ରିୟା ଘେନି ତାହା ଏତେ ଅଥୟ ଓ ଉତ୍ତେଜିତ ଯେ ତହିଁ ମଧ୍ୟରେ ବୋଧିସତ୍ତ୍ୱ ସୁଲଭ ସେଇ ପରମ ଅନୁଭବଟିର ଅପ୍ରତ୍ୟାଶିତ ଅର୍ବିଭାବ ବିସ୍ମୟକର ମନେ ହୁଏ। ଅବଶ୍ୟ ଭୀମଭୋଇ କାବ୍ୟର ପ୍ରଧାନ ଉପଜୀବ୍ୟ ସ୍ୱର ସହିତ ଏଇ ଭାବର ଅମେଳ ନାହିଁ ଏବଂ ଏକ ଗଭୀରତର ସ୍ତରରେ ଉଭୟର ପାରସ୍ପରିକତା ମୋଟେ ଅଗ୍ରାହ୍ୟ ନୁହେଁ। କିନ୍ତୁ ଯେଉଁ ଭାବସମ୍ବଳ ଓ ଚେତନା ସେଠି ବାରମ୍ବାର ଉଦ୍ଘୋଷିତ ହୋଇଛି ତାହାର ଉପାଦାନ ଓ ଅନୁଭବ ଭିନ୍ନ। ତାହା ମୁଖ୍ୟତଃ ଓ ନିର୍ଦ୍ଦିଷ୍ଟଭାବେ ଯନ୍ତ୍ରଣା ଏବଂ ଶୋକପ୍ରଧାନ। କ୍ରୋଧଭାବ ଏବଂ ଆଧ୍ୟାତ୍ମିକ ଅସ୍ତିବାଚକତା ସହିତ ସେଇ ଯନ୍ତ୍ରଣା ଓ ଶୋକଭାବ ବିଭିନ୍ନ କବିତାରେ ଭିନ୍ନ ଭିନ୍ନ ପରିମାଣରେ ସଂଯୁକ୍ତ ହୋଇଛି। ସନ୍ତପ୍ତ, ଅସହିଷ୍ଣୁ, ବିପ୍ଳବୀ ଚେତନା ସହିତ ଶୃଙ୍ଖଳିତ, ବିନମ୍ର, ପ୍ରତ୍ୟୟଶୀଳ ମନର ଚିତ୍ତାକର୍ଷକ ଘାତପ୍ରତିଘାତରେ ଚଞ୍ଚଳ ସେଇ କବିଟି ରାଜ୍ୟରେ ସମଚିତ୍ତତା, ସମବୋଧ ଏବଂ ସ୍ନିଗ୍ଧ, ଉଦାର କାରୁଣିକତା ପ୍ରତି ଆନ୍ତରିକତା ଅବଶ୍ୟ ରହିଛି। କିନ୍ତୁ ଏକ ପକ୍ଷରେ ଆସ୍ପର୍ଦ୍ଧା, ଦ୍ୱନ୍ଦ ଓ କ୍ରୋଧର ପ୍ରଚଣ୍ଡ ଚାପ ଏବଂ ଅନ୍ୟ ପକ୍ଷରେ ବୈକଲ୍ୟ, ନୈରାଶ୍ୟବୋଧ ଓ ଅଧୀରତା ମଧ୍ୟରେ ଆତ୍ମଦଗ୍ଧ ଚେତନାର ଆନ୍ଦୋଳନ, ଉଭୟର ଏ ଅନୁଭବ ହିଁ ସେଠାରେ ଅଧିକ ଗତିଶୀଳ ଓ ଅଧିକ ପ୍ରଖର।

ସ୍ତୁତିଚିନ୍ତାମଣି କାବ୍ୟରେ ଭାବପ୍ରସାରଣର ଗତି ଲକ୍ଷ୍ୟକଲେ ଭୀମଭୋଇଙ୍କ କାବ୍ୟଚେତନାର ଏକ ବିଚିତ୍ର ରୂପ ଦୃଷ୍ଟିରେ ପଡ଼େ। ମହିମା ଧର୍ମର ଜଣେ ସିଦ୍ଧ,

ସନ୍ଥ ପ୍ରଚାରକ ଭାବେ ତାଙ୍କ ସ୍ତୁତି ସବୁରେ ସାଧାରଣତଃ ଆମେ ଅସ୍ତିବାଚକତା, ଅନୁରାଗ, ବିଶ୍ୱାସ ଓ ଅମଳିନ ସ୍ୱର ପ୍ରାଧାନ୍ୟ ଆଶା କରିବା କଥା। ବିଶେଷତଃ ସ୍ୱତଃସ୍ଫୁର୍ତ୍ତ ଅନୁପ୍ରେରଣାପୁଷ୍ଟ, ଦିବ୍ୟଭାବପୂର୍ଣ୍ଣ ଏକ ବ୍ୟକ୍ତିମାନସରେ ଅଭିଯୋଗ, ଦୁଃଖ ବା ନୈରାଶ୍ୟର ସାମୟିକ ଭାବ ଯେଉଁ ଧରଣର ସ୍ନେହସିକ୍ତ ଆବେଦନକୁ ଗଭୀରତର କରିବାର ଆଶା କରାଯାଏ, ବିଶେଷତଃ ତୁଳସୀ, ସୁରଦାସ ବା ଆମ ବୈଷ୍ଣବ ପଦାବଳୀର ରଚୟିତାମାନଙ୍କ ଯେଉଁ ଆବେଗ ସହିତ ଆମର ପରିଚିତି ଘନିଷ୍ଠ, ସେହି ପରିପ୍ରେକ୍ଷୀରେ ଭୀମଭୋଇଙ୍କ ତୀବ୍ର ପ୍ରତିକ୍ରିୟାସବୁ ଆଶ୍ଚର୍ଯ୍ୟକର ମନେହୁଏ। ଉଭୟ ଜୀବନ ଓ କାବ୍ୟଚେତନା ଦୃଷ୍ଟିରୁ ତାଙ୍କ ସହିତ ସନ୍ଥ ସାହିତ୍ୟର ଏକ ଅଧିକ ତୁଳନୀୟ ବ୍ୟକ୍ତିବିଶେଷ ତୁକାରାମଙ୍କ ଅନେକ 'ଅଭଙ୍ଗ'ରେ ଯେଉଁଳି ଏକ ବିପ୍ଳବୀ, ସାଲିସବିହୀନ, କ୍ରୋଧଶୀଳ ମନର ପରିପ୍ରକାଶ ଆମେ ଦେଖୁଁ, ଭୀମଭୋଇଙ୍କ ରଚନାରେ ମଧ୍ୟ ସେଉଳି ଏକ କଠୋର ପ୍ରତିକ୍ରିୟାଶୀଳ, କଟୁ ସତ୍ୟବାଦୀ, ଉତ୍‌କ୍ଷିପ୍ତ ବ୍ୟକ୍ତିତ୍ୱର ପରିଚୟ ଆମେ ପାଉଁ। ତୁକାରାମ କୌଣସି ସଂଘସଂଚାଳକ ବା ନିର୍ଦ୍ଦିଷ୍ଟ ଗୋଟିଏ ଧର୍ମମାର୍ଗର ପ୍ରଚାରକ ନଥିଲେ। କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ ବା ଦର୍ଶନ ପ୍ରତି ଅନୁରକ୍ତି ତାଙ୍କ କବିତାର ଧାରା ନିୟନ୍ତ୍ରିତ କରୁ ନଥିଲା। ଭୀମଭୋଇଙ୍କ ଅନେକ ଅଂଶ ମହିମା ଧର୍ମ ଓ ସେହି ଧର୍ମାବଲମ୍ବୀମାନଙ୍କ ପରିସ୍ଥିତି ଓ ଆଦର୍ଶର ରୂପାୟନ ପାଇଁ ଉଦ୍ଦିଷ୍ଟ। ତେଣୁ ଏହି ଅବଲମ୍ବନ ବା ଶୃଙ୍ଖଳା ସତ୍ତ୍ୱେ ତାଙ୍କ କବିତାରେ ରହିଥିବା ଉତ୍ତେଜନା, ଦାମ୍ଭିକତା, ଅସହିଷ୍ଣୁତା ଏବଂ ଅନ୍ୟପକ୍ଷରେ ନିଃସଂଗ ହତାଶାର ଅନୁଭବ ବିଚିତ୍ର ଜଣାପଡ଼େ।

ଏହି ଗୁଣଟିର ତର୍ଜମା କରିବାକୁ ଯାଇ ଓଡ଼ିଆ ସମାଲୋଚକଗଣ ଯେଉଁ ସାମାଜିକ ଆବେଦନକୁ ପୁରୋବର୍ତ୍ତୀ କରିଛନ୍ତି ତାହା ଅବଶ୍ୟ ଅର୍ଥପୂର୍ଣ୍ଣ। ମାତ୍ର କେବଳ ସେତିକିରେ କିମ୍ବା ସେହି କାବ୍ୟର ତାତ୍ତ୍ୱିକ ପରିସର ଚିହ୍ନଟ କରି କଥାଟିକୁ ଶେଷକଲେ ଆଲୋଚନାଟି ସାହିତ୍ୟ ସମାଲୋଚନା ଭାବେ ଅତ୍ୟନ୍ତ ଅସମ୍ପୂର୍ଣ୍ଣ ରହିଯିବ। କବିତାର ଭାଷା ଓ ଭାବର ଦୁଇଟି ମୁଖ୍ୟ ଅବଲମ୍ବନ- ରଚୟିତା ଓ ପାଠକ। ଉଭୟଙ୍କର ନିର୍ଦ୍ଦିଷ୍ଟ ପରମ୍ପରା ସଂଶ୍ଲିଷ୍ଟ ସ୍ଥିତି ରହିଥାଏ। ସେମାନଙ୍କ ମଧ୍ୟରେ ଯେଉଁ କାବ୍ୟ ଯୋଗାଯୋଗ ସ୍ଥାପିତ ହୁଏ ସେଥିରେ ଏକ ବିଶେଷ ଧରଣର ବୁଝାମଣା ସଂପୃକ୍ତ। ଉଦାହରଣ ସ୍ୱରୂପ, ସ୍ତୁତିଚିନ୍ତାମଣିର ରଚୟିତାଙ୍କୁ ସମ୍ଭ୍ରାନ୍ତ ଶ୍ରେଣୀୟ ସାହିତ୍ୟ ଅଜଣା

ନଥିଲା । ତାର ନିର୍ଦ୍ଦିଷ୍ଟ ଆବେଦନକୁ ସେ ଅସ୍ୱୀକାର ମଧ୍ୟ କରିନଥିଲେ । 'ଚଉତିଶା ମଧୁଚକ୍ର' ତାର ପ୍ରମାଣ ଦିଏ । କିନ୍ତୁ ଯେଉଁ ଗୋଷ୍ଠୀ ଜୀବନ ମଧ୍ୟରେ ରହି ସେ କବିତା ରଚନା କଲେ ଏବଂ ଯେଉଁ ଅଭିପ୍ରେତ ପାଠକ ପାଇଁ ତଥା ତାହା ମନରେ ଯେଉଁ ନିର୍ଦ୍ଦିଷ୍ଟ ଆବେଗ ସୃଷ୍ଟି କରିବାର ଉଦ୍ଦେଶ୍ୟ ସେ ରଖୁଥିଲେ ସେହି ସାହିତ୍ୟ ବଳୟର ଏକ ସ୍ୱତନ୍ତ୍ର ରୂପ ଥିଲା । ଜାଣିଶୁଣି ଭୀମଭୋଇ ତାଙ୍କ କବିତାକୁ ସାଧାରଣ ସ୍ତରରେ ବ୍ୟବହୃତ ଭାଷା ଓ ସରଳ ସାହିତ୍ୟିକ ଏବଂ ଦାର୍ଶନିକ ଭାଷାର ଏକ ମିଶ୍ରିତ ଉପାଦାନରେ ଗଠନ କଲେ । ମହିମା ସମ୍ପ୍ରଦାୟ ଓ ତାହାର ପାରିପାର୍ଶ୍ୱରେ ରହିଥିବା ସଂଖ୍ୟାଧିକ ପାରମ୍ପରିକ ଗୋଷ୍ଠୀ ମଧ୍ୟରେ ଗଢ଼ି ଉଠିଥିବା ଦ୍ୱନ୍ଦ ଓ ଭୁଲ ବୁଝାମଣା ସ୍ତୁତିଚିନ୍ତାମଣି କାବ୍ୟର ଏକ ମୁଖ୍ୟ ବିଷୟବସ୍ତୁ । ମହିମା ପ୍ରଚାରକ ଭାବେ ଏହି ଦ୍ୱନ୍ଦର ମୁକାବିଲା ତାଙ୍କ ଉତ୍ତରଜୀବନର କେନ୍ଦ୍ର ଘଟଣା ! ପୁଣି ବ୍ୟକ୍ତିଚେତନା ସ୍ତରରେ ଖ୍ରୀଷ୍ଟିୟାନ ଧର୍ମଯାଜକମାନଙ୍କ ପରି ଭୀମଭୋଇଙ୍କ ଭୂୟୋଦୃଷ୍ଟିରେ ମଧ୍ୟ ମାନବଜାତି ଠିକ୍ ଦୁଇଟି ଭାଗରେ ବିଭକ୍ତ । ମହିମାଗୁରୁ ଆଶ୍ରିତ ଜନତାର ନିରାପତ୍ତା ଏବଂ ଅନ୍ୟ ସମସ୍ତଙ୍କ ଆଧାୟିକ ଦୁରାବସ୍ଥାର ବିଶ୍ୱାସ ତାଙ୍କ ଚେତନାର ଏକ କେନ୍ଦ୍ରବିନ୍ଦୁ ଥିଲା । ଏଣୁ ତାଙ୍କ ନିକଟତମ ଶିଷ୍ୟମଣ୍ଡଳୀ ଓ ଭୌଗୋଳିକ ସ୍ତରରେ ସେମାନଙ୍କ ବାହାରେ ତାଙ୍କର ନିକଟତର ହୋଇଥିବା ପଶ୍ଚିମାଞ୍ଚଳର ଅଧିବାସୀମାନଙ୍କ ଉଦ୍ଦେଶ୍ୟରେ ରଚିତ ତାଙ୍କ କବିତା ସେମାନଙ୍କର ସାଧାରଣ ସ୍ତରର ରୁଚି ଓ ବୁଦ୍ଧି ସହିତ ଆତ୍ମିକ ସମ୍ପର୍କ ରଖୁଛି । ଏହି ସମ୍ପର୍କ ଏକ ସାହିତ୍ୟିକ ସମ୍ପର୍କ । ତାହା କେବଳ ସାମାଜିକ ମୂଲ୍ୟବୋଧ ଦ୍ୱାରା ନିୟନ୍ତ୍ରିତ ସମ୍ପର୍କ ନୁହେଁ । ଭୀମଭୋଇଙ୍କ ସାହିତ୍ୟଶୈଳୀର ନିର୍ବାଚନ ତାଙ୍କ ନିଜର ଶିକ୍ଷା ଓ ଅନୁଭୂତିର ସୀମିତ ପରିସର ସହିତ ଯେତିକି ସମ୍ପୃକ୍ତ, ହୁଏତ ତାଠାରୁ ତାହା ଅଧିକ ସମ୍ପର୍କିତ ଉଦ୍ଦିଷ୍ଟ ଶ୍ରୋତା ବା ପାଠକର ଚେତନା ଓ ରୁଚି ସହିତ । ଯେଉଁ ଜନଜୀବନରେ ମହିମାଧର୍ମର ପ୍ରସାର ନିମିତ୍ତ ସେ କବିତା ରଚନା କରିଥିଲେ ସେଥିରେ ଉଚ୍ଚକୋଟୀର ବୁଦ୍ଧିମତ୍ତା ବା ଆଭିଜାତିକ ରୁଚିସୁଲଭ ମାର୍ଜିତ ଶୈଳୀ ଓ ସୂକ୍ଷ୍ମ ପ୍ରକାଶଭଙ୍ଗୀ ନିରର୍ଥକ ହୋଇଥାନ୍ତା । ଭୀମଭୋଇଙ୍କ କବିତାର ସ୍ୱର ଏହି ଦୃଷ୍ଟିରୁ ଉଦ୍ଦିଷ୍ଟ ପାଠକର ରୁଚିବୋଧର ପ୍ରତିଫଳନ ଅଟେ ।

କବିର କାବ୍ୟ ଉଦ୍ଦେଶ୍ୟ ଏବଂ ପାଠକର ଅଭିରୁଚି, ଏ ଉଭୟ କାରଣରୁ ଭୀମଭୋଇଙ୍କ କବିତାରେ କ୍ରୋଧ ଓ ଯନ୍ତ୍ରଣାର ସ୍ୱର ତୀବ୍ର ହୋଇଛି । ଲେଖକ ଓ ପାଠକ ଉଭୟଙ୍କ ଦୃଷ୍ଟିରୁ ଏହା ସ୍ୱାଭାବିକ । କାରଣ ସାଧାରଣ ଜୀବନରେ କ୍ରୋଧ ଓ

ଯନ୍ତ୍ରଣା ଅଧିକ ପରିମାଣରେ ମୌଳିକ, ଆଦିମ ଅନୁଭୂତି । ଯେଉଁ ଜନଜୀବନର ଗାଥା ଭାବେ ଆମେ ଭୀମଭୋଇଙ୍କ ରଚନାକୁ ଗ୍ରହଣ କରିବାର ଯଥାର୍ଥତା ରହିଛି ସେହି ଜୀବନରେ ଯନ୍ତ୍ରଣାବୋଧ ଓ କ୍ରୋଧଭାବ ଅଧିକ ପରିପୁଷ୍ଟ ହେବା ସ୍ୱାଭାବିକ । ଉଭୟ ମଧ୍ୟରୁ ଭୀମଭୋଇଙ୍କ କବିତାରେ ଯନ୍ତ୍ରଣାର ସ୍ୱରଟି ଅଧିକ ଶକ୍ତିଶାଳୀ ଓ ପ୍ରଖର ହେବାର କାରଣ ସ୍ପଷ୍ଟ । ଭୀମଭୋଇଙ୍କ ବ୍ୟକ୍ତିଗତ ଜୀବନ ଏବଂ ଆଧାତ୍ମିକ ଆବେଗ ସେଥିପାଇଁ ମୁଖ୍ୟତଃ ଦାୟୀ ! ଅବଶ୍ୟ ତାଙ୍କ ବେଦନାବୋଧର ପ୍ରକାଶ ମଧ୍ୟରେ କେତେକ ସ୍ଥଳରେ ଏକ ପାରମ୍ପରିକ ଶୈଳୀର ଆନୁଗତ୍ୟ ଲକ୍ଷ୍ୟ କରିହୁଏ । ସ୍ତୁତି ସବୁର ଶେଷ ପଂକ୍ତିମାନଙ୍କରେ ରହିଥିବା 'ପ୍ରେମ ପୁଲକିତ', 'ଶୋକ ଗଦଗଦ' ଭଣିତି ଅନେକ କ୍ଷେତ୍ରରେ ସେହି ଆନୁଗତ୍ୟର ସ୍ୱାକ୍ଷର ବହନ କରିଛି । କିନ୍ତୁ ତାହା ଏକ କାବ୍ୟକୌଶଳ ମାତ୍ର ମନେ ନ ହେବାର କାରଣ ଏହା ଯେ ତାଙ୍କ ସମଗ୍ର କାବ୍ୟକୃତିରେ ଶୋକଗୀତିକାର ଯେଉଁ ମହାପ୍ଲାବନ ରହିଛି ସେଥିରେ ଶୈଳୀଧାରା ଅପେକ୍ଷା ଆତ୍ମିକ ଅନୁଭବର ସ୍ରୋତ ହିଁ ପ୍ରଖରତର । ସେହି ସ୍ରୋତର ପ୍ରଧାନ ଉତ୍ସ ଦୁଇଟି - ଆଧାତ୍ମିକ ଚେତନା ପ୍ରସଂଗରେ ସାଧାରଣ ମାନବ ସଂକଟାପନ୍ନ ଅବସ୍ଥାର ତୀବ୍ର ଅନୁଭୂତି ଏବଂ ବ୍ୟକ୍ତିଜୀବନରେ ଅନୁଭୂତ କ୍ଲେଶ, ସଂଶୟବୋଧ, ନିର୍ଯ୍ୟାତନା ଓ ସାମାଜିକ ବିଦ୍ରୂପ । ପ୍ରତ୍ୟେକଟିର କିଛି କିଛି ଶାଖାନଦୀ ଓ ଉପନଦୀ ସ୍ଥିତି ଅବଶ୍ୟ ରହିଛି । ମାତ୍ର ଉଭୟର ଏକ ସମ୍ମିଳିତ ପ୍ରବାହ ହିଁ ତାହାର ମୁଖ୍ୟଧାରା । ସେହି ଧାରାର ବିଭିନ୍ନ ଦିଗ ଓ କ୍ଷେତ୍ର ସହିତ ଆମର ପରିଚିତି ଆବଶ୍ୟକ ।

ନିଜ ବ୍ୟକ୍ତିଜୀବନର କାରୁଣିକତା ଭୀମଭୋଇଙ୍କ କବିତାରେ ବେଳେବେଳେ ଅତ୍ୟନ୍ତ ମାର୍ମିକ, ଉଦ୍‌ବେଳିତ ହୋଇ ପ୍ରକାଶଲାଭ କରିଛି । ମାତ୍ର ଅନ୍ୟତ୍ର ମଧ୍ୟ ତାହା ସର୍ବଦା ଏକ ଅନ୍ତଃପ୍ରବାହ ରୂପେ ବିଦ୍ୟମାନ । ଏହି ଯନ୍ତ୍ରଣାର ମୁଖ୍ୟ ଉପାଦାନ ଦୁଇଟି ଆଧାତ୍ମିକ ଅକ୍ଷମତା ଓ ଅସଫଳତାର ଅନୁଭୂତି ଏବଂ ବାହ୍ୟଜଗତର ଅତ୍ୟାଚାର ! ଆଧାତ୍ମିକ କ୍ଷେତ୍ରରେ ଅସମ୍ପୂର୍ଣତା ଓ ଅଭାବବୋଧ ଜନିତ ସଂଶୟ, କାତରତା ଓ ଅଭିମାନର ଯେଉଁ ଚିତ୍ର ରହିଛି ତାହାର ମୁଖ୍ୟତଃ ଦୁଇଟି ଦିଗ । ଗୋଟିଏ ପକ୍ଷରେ କାବ୍ୟସ୍ୱର ଆଭିଯୋଗାତ୍ମକ ଓ ଅନ୍ୟ ପକ୍ଷରେ ତାହା ଆତ୍ମଭର୍ତ୍ସନା ଓ ଆତ୍ମଗ୍ଲାନିରେ ଭରପୂର । ସଦ୍‌ଗୁରୁଙ୍କ କରୁଣା ଲାଭ କରି ଏବଂ ଜୀବନକୁ ସୁଶୃଙ୍ଖଳିତ କରି ଅବିରାମ ଆନ୍ତରିକ ସାଧନା ଓ ପ୍ରାର୍ଥନା ପରେ ସୁଦ୍ଧା ଆଧାତ୍ମିକ ସନ୍ତୋଷ ଆସି ଆସିନାହିଁ, ଆତ୍ମବୈକଲ୍ୟର ଭାବ ଦୂରୀଭୂତ ହୋଇନାହିଁ, ଯନ୍ତ୍ରଣା ଓ ହତାଶା ଉପଶମିତ

ହୋଇନାହିଁ। ତେଣୁ ବିଦ୍ରୋହୀ, ବିକ୍ଷୁବ୍ଧ କବିମନ ଈଶ୍ୱରଙ୍କଠାରେ ଓ ଗୁରୁଙ୍କଠାରେ ଅଭିଯୋଗ ବଢିଛି, ନ୍ୟାୟ ଦାବି କରିଛି, ନିଜର ଉତକ୍ଷିପ୍ତ ହା' ହତାଶା ଭାବ ଓ ତୀବ୍ର ଅସନ୍ତୋଷ ଅକ୍ଳାନ୍ତ ଭାବେ ପ୍ରକାଶ କରିଚାଲିଛି। ଏହି ଭାବବୋଧ ତାଙ୍କ କବିତ୍ୱରେ ପ୍ରାୟ ସବୁଠାରେ ଦେଖିହୁଏ। ଏଠାରେ ଦୃଷ୍ଟାନ୍ତ ଛଳରେ ତନ୍ମଧ୍ୟରୁ ସାମାନ୍ୟ କିଛି 'ସ୍ତୁତି ଚିନ୍ତାମଣି'ରୁ ଗୃହୀତ ପଙ୍‌କ୍ତି ସ୍ମରଣ କରାଯାଇପାରେ।

ଜନ୍ମରେ ମୁଁ ଏକା କର୍ମରେ ନିଶାଖା ଅଟଇ ଯେ ନିରିମାକ୍ଷୀ।।
ଅଦୋଷରେ ମୋତେ ନିଅର୍ଥେ ଦଣ୍ଡୁଛ ଚନ୍ଦ୍ର ସୂର୍ଯ୍ୟଛନ୍ତି ସାକ୍ଷୀ। (୩) /୭
ଜନ୍ମଜନ୍ମାନ୍ତରେ ଯୁଗଯୁଗାନ୍ତରେ ଦୁଃଖ ଦଶା କର୍ମକାଣ୍ଡେ।।
ନିଜ ଆତ୍ମା ମୋ ନଯାଇ ରହିଛି ପ୍ରକୃତିର ପାପପିଣ୍ଡ (୧୨) /୧୩
ହଟପଟ ନଟକୂଟ ଲଗାଉଛି ଯେସନେକ ଖଣ୍ଟ ଚୋର
ଭୁଲାଇ ଚିଉକୁ ଆପଣା ଭୃତ୍ୟକୁ କରୁଅଛ ନାରଖାର।
ଆପଣା ମର୍ଯ୍ୟାଦା ଆପେ ରଖି ପ୍ରଭୁ ଜାଣି ସମ୍ଭାବନା ହେଉ।
ତୁମ୍ଭର ନାଶିବ କାର କିସ ଯିବ କିମ୍ପା ପରୀକ୍ଷା ନ ଦେଉ।
ପ୍ରଭୁ ପ୍ରଭୁ ବୋଲି କେତେ କାଳ ଭାଳି ନରଅଂଗ ବହି ମର୍ତ୍ତ୍ୟେ।
କାମନା କଳ୍ପନା ସମସ୍ତ ସମର୍ପି ପିଣ୍ଡ ପ୍ରାଣ ଆଦି ଯେତେ।
ତୁମ୍ଭ ଅଙ୍ଗ ସିନା ତୁମେ ବଞ୍ଚାଉଛ ମାୟାରୁ କାୟାକୁ ଏଡ଼ି।
ମୋର ପିଣ୍ଡ ପ୍ରାଣ କେତେକାଳ ଥିବ ଯେସନେ ସିନ୍ଧୁ ଲହଡ଼ୀ। (୩୮)/ ୧୮
ପଟପଟ କହି ମଟମଟ ଚାହିଁ ମଉନ ହୋଇ ରହୁଛ।
ମଥା ଛେଚି ହୋଇ ଜଣାଇଲେ ସୁଦ୍ଧା ବିନତି ମୋ ନ ଘେନୁଛ। (୪୧)/ ୧୯
ଦନ୍ତକୁ କାମୋଡ଼ି କେତେ ମୁଁ ସହିବି ଏ କଳିଯୁଗର ଦଶା।
କେତେ ଦିବସେ ସତ୍ୟଯୁଗ ହୋଇବ ମନେ କରି ପ୍ରତିଆଶା
ନର ଦେହ ବହି ଏ ମାୟା ସଂସାରେ କେ ସମ୍ଭାଳିବ ପ୍ରକୃତି
ବାହ୍ୟକୁ ନ ଫୁଟି ମନର ଭିତରେ ଘୃଣା କରୁଅଛି ନିତି। (୫୮)/ ୧୦
ତୁମ୍ଭେ ତ ମୋତେ ବୋଇଲ ଯାଅ ଯାଅ ମୁହିଁ ଥିବି ତୋର ସଙ୍ଗେ
ଗୁରୁ ଥାଉଁ ଥାଉଁ ଅକାଳ ବିପତ୍ତି କାହିଁକି ପଡ଼ୁଛି ଅଙ୍ଗେ

× × ×

ଜାଣୁଜାଣୁ ହଟହଟା କରାଉଛ କଳଙ୍କକଣ୍ଠା ଲଗାଇ
ପଛକେ ଏହାକୁ ସାଧିବଇଁ ବୋଲି ବିଚାରରେ ଥିଲ ଥୋଇ ।

× × ×

ପିଣ୍ଡପ୍ରାଣ ମୋର ହଜିଯାଉଅଛି ଗୁରୁଙ୍କୁ ମାଡୁଛି ହସ
ତିନି ବ୍ରହ୍ମାଣ୍ଡରେ ଯହିଁ ଆଉଜିଲେ ସୁସ୍ଥେ ନ ମିଳୁଛି ବାସ । (୫୯)/୧୬
ଉତ୍ପୁପାତ ହୋଇ ନିପାତ କର୍ମରେ ପଡ଼ିଲଇଁ ଅପ୍ରମିତେ ।
କି ବୁଦ୍ଧି କରିବି କେଉଁ ପଥେ ଯିବି କାତର' ଲାଗୁଛି ମତେ ।

× × ×

ଚିନ୍ତା କରି କରି ପିତା ଲାଗିଲାଣି ପଣ ରହୁ ନାହିଁ ମୋର ।
ମନ୍ଦିରୁ ବାହାର ହୋଇ ଖରତର ଆରତ ମୁଁ ନିରନ୍ତର । (୬୦)/୧୧

ଭୀମଭୋଇଙ୍କ ରଚନାର ଏକ ମୁଖ୍ୟ ଆକର୍ଷଣ ହେଉଛି ସେଥିରେ ଥିବା ସାଧାରଣ ମାନବର ଭାବନା ଓ ପ୍ରତିକ୍ରିୟା ପ୍ରତି ସମ୍ମାନବୋଧ । ଯାହାକିଛି ବାସ୍ତବ ଓ ସତ୍ୟ, ତାହାର ପରିପ୍ରକାଶ ପାଇଁ ସାଧୁ ଭୀମଭୋଇ ସର୍ବଦା ଅକୁଣ୍ଠ । ବାସ୍ତବତା ପ୍ରତି ତାଙ୍କର ଏହି ଯେଉଁ ଆନ୍ତରିକତା, ଅନୁଭୂତ ସତ୍ୟର ଉଦ୍ଗାତା ହେବାରେ ତାଙ୍କର ଯେଉଁ ଅସାଧାରଣ ଦୃଢ଼ତା ତାହା ହିଁ ଭୀମଭୋଇଙ୍କ କବିତାର ନିର୍ଦ୍ଦିଷ୍ଟ ଗୌରବ ।

କାବ୍ୟମନୋରମତା କିମ୍ବା ଧର୍ମ ଆନୁଗତ୍ୟର ବିଚାରକୁ ପ୍ରାଧାନ୍ୟ ଦେଇ ପାରମ୍ପରିକ ଦୃଷ୍ଟିଭଙ୍ଗୀ ବା ପ୍ରକାଶଶୈଳୀର ଉପରେ ସେ କେବେହେଁ ତାଙ୍କ ରଚନାରେ ବାସ୍ତବ ଭାବାବେଗର ଗତି ବଦଳେଇ ନାହାନ୍ତି । ରୁଚିବୋଧ କିମ୍ବା ମାୟାବାଦ, ଆଦର୍ଶ ଭକ୍ତି ବା ଦାର୍ଶନିକ ଭୂୟୋଦୃଷ୍ଟିର ଅବଲମ୍ବନରେ ସେ ନିଜର ଅନୁଭୂତିର ସ୍ୱରୂପକୁ ଏକ ପରିବର୍ତ୍ତିତ କାବ୍ୟରୂପ ଦେବାରେ ଆଗ୍ରହୀ ହେଇନାହାନ୍ତି ଏବଂ ସେହି କାରଣରୁ ତାଙ୍କ ରଚନାରେ ଆଧ୍ୟାତ୍ମିକ ଅସନ୍ତୋଷର ଚିତ୍ର ଏତେ ଘନିଷ୍ଠ, ଏତେ ବିଚିତ୍ର ଓ ବିସ୍ତୃତ ହୋଇପାରିଛି ଏବଂ ନିର୍ଦ୍ଦିଷ୍ଟ ଅନୁଭୂତି ସବୁକୁ ବାସ୍ତବବାଦୀ ମାନବୀୟ ସ୍ୱାଭିମାନ ନେଇ ରୂପାୟିତ କରିଥିବାରୁ ସମାନ ଗୁଣର ଭାବସବୁର ଏତେ ବିଭିନ୍ନ ଓ ନିର୍ଦ୍ଦିଷ୍ଟ ଆତ୍ମପ୍ରକାଶ ସମ୍ଭବ ହୋଇଛି । ଠିକ ସେହି କାରଣରୁ ଅନୁଭୂତିର ବିଶ୍ୱସ୍ତ ପରିପ୍ରକାଶ ଭାବେ ତାଙ୍କ କବିତା ଏତେ ସ୍ପର୍ଶକ୍ଷମ ହୋଇପାରିଛି ।

ଆତ୍ମଗ୍ଲାନିରେ ଜର୍ଜରିତ ତାଙ୍କର ସେହି କବିତା ସବୁରେ କ୍ରୋଧର ଅନ୍ତଃସ୍ୱରଟି ସ୍ପଷ୍ଟ। କର୍ମଫଳ ଉପରେ ଗଭୀର ବିଶ୍ୱାସ, ଗୁରୁକୃପା ଉପରେ ଭରସା, ଈଶ୍ୱରଙ୍କ କରୁଣାମୟତା ଏବଂ ମହିମା ଦର୍ଶନ ଅବଲମ୍ବନ, ଏହି ସବୁ ଆଶା ଓ ପ୍ରତ୍ୟୟର ଅସ୍ତ୍ର ଧରି ବାରମ୍ବାର ସେ ନିଜ ଅନ୍ତରର କ୍ଷୋଭ ଏବଂ କ୍ରୋଧର ମୁକାବିଲା କରିଛନ୍ତି। କିନ୍ତୁ ବାରମ୍ବାର ଏକ ନ୍ୟାୟହୀନ ବ୍ୟବସ୍ଥାର ଅନୁଭବ ତାଙ୍କ ମନକୁ ବିଦ୍ରୋହ କରିଛି। ସେହି କାରଣରୁ ହିଁ ତାଙ୍କ କବିତା ମଧ୍ୟରେ ସଂଯୋଜିତ ଆତ୍ମସମର୍ପଣ ଓ ଅଧୀର ଆବେଦନର ଭାବ ଏତେ ମର୍ମସ୍ପର୍ଶୀ, ଏତେ ପ୍ରଭାବଶାଳୀ। ଗୂଢ଼ ଆଧ୍ୟାତ୍ମିକ ସ୍ତରର ଭାବାନୁଭୂତିକୁ ନିଛକ ଜୀବନଭୂମି ଉପରେ ଛିଡ଼ା କରେଇ କବିତା ଲେଖିବାର ଯେଉଁ ଆନ୍ତରିକତା ଓ ସାହସ ସେ ଦେଖାଇଛନ୍ତି ତାହା ବାସ୍ତବିକ ଏକ ଅସାଧାରଣ ପ୍ରତ୍ୟୟ ଓ ସ୍ୱତଃସ୍ଫୂର୍ତ୍ତତାର ପରିଚୟ ଦିଏ। ତାଙ୍କ କବିତାର ବାସ୍ତବବାଦୀ ଭୂମିସଂଲଗ୍ନତା, ତାଙ୍କ ପାରିପାର୍ଶ୍ୱିକ ସମାଜର ଜୀବନାନୁଭୂତି ଓ ଭାଷାସ୍ତର ସହିତ ତାଙ୍କ ରଚନାର ଆତ୍ମିକ ସମ୍ପର୍କ ରହିଥିବାରୁ ଅପେକ୍ଷିକ ଭାବେ ଅମାର୍ଜିତ ସେହି ପ୍ରକାଶଭଙ୍ଗୀ ଅନେକ ସ୍ଥଳରେ ଅତ୍ୟନ୍ତ ଶକ୍ତିଶାଳୀ ହୋଇଛି। ଉଦାହରଣ ସ୍ୱରୂପ, ବ୍ୟକ୍ତିଗତ ଜୀବନରେ ଓ ଆଧ୍ୟାତ୍ମିକ ସଙ୍କଟର ଅନୁଭବ ପରିପ୍ରେକ୍ଷୀରେ ଈଶ୍ୱର ଓ ମନୁଷ୍ୟ ମଧ୍ୟରେ ରହିଥିବା ସମ୍ପର୍କକୁ ସେ ଯେଭଳି ସାହୁକାର– ଖାତକ ରୂପକ ଉପରେ ପର୍ଯ୍ୟବେସିତ କରିଛନ୍ତି ତାହା ଏକ ବିଶିଷ୍ଟ ସୃଷ୍ଟିଶୀଳ ପ୍ରତ୍ୟୟ ଓ ସଫଳତାର ନିଦର୍ଶନ ହୁଏ।

ଭୀମଭୋଇଙ୍କ ସମାଜରେ ମହାଜନୀ କାରବାର ଏକ ଅତ୍ୟାବଶ୍ୟକ ସାମାଜିକ ବ୍ୟବସ୍ଥା ଭାବେ ପ୍ରତିଷ୍ଠିତ ହୋଇଥିଲା। ଗାଁ ଗରିବ ଋଷୀମାନଙ୍କ ପାଇଁ ସାହୁକାର ଥିଲା ଆର୍ଥିକ ଆପାତକାଳର ଏକମାତ୍ର ଆଶ୍ରୟ। 'ସାହୁ' ବା ମହାଜନ ସେଥିରେ ସୁଯୋଗ ନେଇ ନିରକ୍ଷର ଗ୍ରାମବାସୀଙ୍କୁ ଯେଭଳି ଶୋଷଣ କରୁଥିଲେ ତାହାର ବର୍ଣ୍ଣନା ଅନାବଶ୍ୟକ। ତାହା ସଙ୍ଗେ ଗ୍ରାମବାସୀମାନଙ୍କ ଚକ୍ଷୁରେ ସାହୁକାର ଥିଲା ଜଣେ ସମ୍ମାନିତ, ପିତୃପ୍ରତିମ ବ୍ୟକ୍ତି। ତାହାର ସହାୟତା ଅଭାବରେ ଗ୍ରାମବାସୀର ଅସହାୟବୋଧ ଯେପରି ଅସହ୍ୟ ହେଉଥିଲା, ତାର ଶୋଷଣ ହେତୁ ମଧ୍ୟ ଅସହାୟବୋଧ ତୀବ୍ର ହେଉଥିଲା। ଯଦି ତାର ସାମାନ୍ୟତମ ସାଧୁତା ଥାଏ ତେବେ ଗ୍ରାମବାସୀର ଚକ୍ଷୁରେ ସେ ହୁଏ ଏକ ପରମ ମିତ୍ର ଶରଣଦାତା। ଅସାଧୁ ସାହୁକାର ସେପରି ତା ଚକ୍ଷୁରେ ସାମାଜିକ ଶୋଷଣ ଓ ଅନ୍ୟାୟର ଚରମ ପ୍ରତୀକ। ଏହି ଉଭୟ ସମ୍ଭାବନାର ଭାବକୁ ସମନ୍ୱିତ କରି ଭୀମଭୋଇ ସ୍ତୁତିଚିନ୍ତାମଣିର ୪୭ ତମ ବୋଲିରେ

ତାଙ୍କ ଜୀବନର ସଙ୍କଟ, ବିଦ୍ରୋହଭାବ ଓ ଈଶ୍ୱରାନୁରକ୍ତିର ଯେଉଁ ଜଟିଳ କାବ୍ୟଚିତ୍ର ଦେଇଛନ୍ତି ତାହା ତାଙ୍କ ନିର୍ଦ୍ଦିଷ୍ଟ ସ୍ରଷ୍ଟାବ୍ୟକ୍ତିତ୍ୱର ଏକ ଚମତ୍କାର ସଂକ୍ଷିପ୍ତ ପରିଚୟ ଅଟେ। ଛମାଣ ଆଠଗୁଣ୍ଠ ଉପନ୍ୟାସ ସହିତ ଏହି ବୋଲିର (ଏବଂ ପରବୋଲିର ପ୍ରଥମାଂଶର) ତୁଳନା କଲେ ସେହି ଗୋଟିଏ ସାମାଜିକ ବ୍ୟବସ୍ଥାର ଦୁଇଟି ଭିନ୍ନ ଦିଗରେ ସମ୍ପ୍ରେସିତ ସୃଷ୍ଟିଶୀଳତା, ସେହି ଏକ ଭୂମିସଂଲଗ୍ନ ଚେତନାର ଦୁଇଟି ଭିନ୍ନ ଆବେଦନ ଓ ସଂଶ୍ଳିଷ୍ଟ ବ୍ୟକ୍ତିଚେତନାର ନିର୍ଦ୍ଦିଷ୍ଟତା ଖୁବ ଅର୍ଥପୂର୍ଣ୍ଣ ହୁଏ। ଭୀମଭୋଇଙ୍କ ଚେତନାରେ ଅନୁରକ୍ତିବୋଧ ସହିତ ବିଦ୍ରୋହମନ୍ତ୍ରର ପ୍ରତିକ୍ରିୟା ଓ ଯନ୍ତ୍ରଣାବୋଧ କିଭଳି ଗଭୀର ଭାବେ ସମ୍ପର୍କିତ ଏହି ବୋଲିଟି ତାହାର ଏକ ପ୍ରକୃଷ୍ଟ ଉଦାହରଣ ଅଟେ।

ପାରୁପରିଯନ୍ତେ ଶୁଝୁଅଛି ମୁହିଁ ଘେନୁଛି କି ନାହିଁ ତୁହି
ଜନମଯାକ ମୋ ବହିଗଲାଣି ତ ଗଡଣୀରେ ମାପି ଦେଇ।
ଚଉରି ବରଷ ହୋଇଲାଣି ଆଜକୁ ତୋ ଠାରୁ ମୋ ଅଣା ନିଆ
ବହିରେ ନ ଲେଖୁ ମାରୁଅଛୁ କୋପି କିପାଇଁ କରୁଛୁ ଏହା।
ମୁହିଁ ଏକା ନେଇଅଛି ନୋହେ ଋଣ ସମସ୍ତ ତ ଛନ୍ତି ନେଇ
ମୂଳ କଳନ୍ତର ବୁଝାଇବା ବେଳେ କିମ୍ବା ନ ଲେଖିଲୁ ବହି।
ପୁଣି ଯେତେ ଠାରୁ ଆଣିଅଛି ମୁହିଁ ଏପରି କରିବୁ ମୋତେ
ସାହୁ ରାହୁ ତୁହି ପାରିକରି ଦିଅ ଏବେ ମୁଁ କହୁଛି ତୋତେ ।

× × ×

ସାହୁ ହୋଇ ଖାତକ ଠାବରେ ମାୟା କରିବାର ନୁହେଁ।
ଅଶେଷ ବ୍ରହ୍ମାଣ୍ଡ ମହାଜନ ଅଟୁ ସମ୍ପରି ତୋର ଅକ୍ଷଏ ।
ସାହୁ ଗଙ୍ଗାଜଳ ହୃଦୟ ନିର୍ମଳ ହେଲେ ଖାତକକୁ ଲାଭ ।
ଖାତକ ଶୁଝିଲେ ସାହୁ ନେଉଥିଲେ ସବୁଦିନେ ପ୍ରୀତି ଥିବ। (୪୭)/୧୮
ତୁମେ ଯେବେ ସାହୁ ମୁଁ ଅଟେ ଖାତକ ପାରିକର କେଉଁ ରୂପେ ।
ବ୍ରହ୍ମ ସ୍ୱର କଥା ବ୍ରହ୍ମଶର ଅଟେ ମଗ୍ନ ହେବି ବୋଲି ପାପେ ।

× × ×

କୌଣସି ପ୍ରକାରେ ଋଣଠାରୁ ମୋତେ ପାରିକର ଗୁରୁସ୍ୱାମୀ
ଅନ୍ତର୍ଗତ କଥା ଜାଣୁଥିବ ମୋର ଅଣାକାର ଅନ୍ତର୍ଯ୍ୟାମୀ। (୪୮)/୪

ଭୀମଭୋଇଙ୍କ କବିତାସବୁରେ ଗ୍ଲାନିବୋଧ ଓ ଯନ୍ତ୍ରଣାର ଯେଉଁ ଅନ୍ତଃପ୍ରବାହ ରହିଛି ତାହା କେବଳ ଆଧ୍ୟାତ୍ମିକ ଜୀବନର ଅସମ୍ପୂର୍ଣ୍ଣତା କାରଣରୁ ଏତେ ଉଦବେଳିତ ନୁହେଁ । ବାଲ୍ୟଜୀବନରୁ ଶେଷକାଳ ପର୍ଯ୍ୟନ୍ତ ସେ ଯେଉଁ ଧରଣର ସାମାଜିକ ଦୁଃସ୍ଥିତି ଓ ଲାଞ୍ଛନାର ଶିକାର ହୋଇଥିଲେ ସେହି ପରିପ୍ରେକ୍ଷୀରେ ବାହ୍ୟଜଗତ ତାଙ୍କ ଦୃଷ୍ଟିରେ କେବଳ ନିର୍ଭୟତା, ଅନୁଦାରତା ଓ ଅସହନଶୀଳତାରେ ଭରପୂର ମନେ ହୋଇଥିଲା । ବ୍ୟକ୍ତିଗତ ସ୍ତରରେ ଅନୁଭୂତ ସେହି କଷାଘାତ ତାଙ୍କ କାବ୍ୟରେ ପ୍ରାୟ ସର୍ବତ୍ର ପ୍ରତ୍ୟକ୍ଷ କିମ୍ବା ପରୋକ୍ଷ ଭାବେ ମୁଦ୍ରିତ । ସେହି କାରଣରୁ କ୍ରୋଧ ଓ ଯନ୍ତ୍ରଣାର ସ୍ୱର ସେଥିରେ ଏତେ ତୀବ୍ର ହୋଇଛି । ଆଧ୍ୟାତ୍ମିକ ବିଷର୍ଣ୍ଣତା ପ୍ରକାଶ କଲାବେଳେ ମଧ୍ୟ ବ୍ୟକ୍ତିଜୀବନର କ୍ଳେଶ ଅନ୍ତଃସ୍ୱର ଭାବେ କିପରି ପ୍ରକାଶ ପାଏ ତାହାର ଅନେକ ଦୃଷ୍ଟାନ୍ତ ମଧ୍ୟରୁ ଏଠାରେ ଗୋଟିଏ ଦୁଇଟି ସ୍ମରଣ କରାଯାଇପାରେ-

ନାହିଁ ବାଡ଼ିବୃତ୍ତି । ବିଶ୍ରାମରେ ସ୍ଥିତି ଜନ୍ମଜନ୍ମାନ୍ତରେ ଦୁଃଖୀ
ବିବେକ ନ କରି ମାରୁଅଛ ଧରି କି କି ଅପରାଧ ଦେଖି ।
ନୁହଇ ଦାମ୍ଭିକ, ନାସ୍ତିକ କପଟୀ ଧର୍ମ ଆଶ୍ରିତର ପ୍ରାଣୀ ।
କର୍ମ ଲେଖା ବା ଯୋଗ ଭୁଞ୍ଜୁଅଛି ଭୋଗ କି କି ଦୋଷ କଲି ପୁଣି (୩)/ ୯

ବା

ନିରନ୍ତରେ ଭଗ୍ନ କରଉଛି ବିଘ୍ନ ଅଛି ମାଂସ କରି ଲୋଚା
ସମସ୍ତ ଲୋକ ପକ୍ୱ ଫଳ ଖାଇଲେ ମୋ ଭାଗ୍ୟେ ପଡ଼ିଲା କଞ୍ଚା,
ପ୍ରସାରନ୍ତେ ଅଣ୍ଟି ତୋଳି ଦେଲେ ବାଣ୍ଟି ପାଇଲେ ସାରିଆ ପଡ଼ି
ଥିଲା ମୋ କର୍ମରେ ପୂର୍ବ ଅଧର୍ମରେ ଖୁଦ ମଲୁଖାଦି ଗୋଡ଼ି । (୧୮)/ ୧୭

'ସ୍ତୁତିଚିନ୍ତାମଣି'ର ସାମଗ୍ରିକ ରୂପ ବିଚାରକୁ ନେଲେ ବିଷୟବସ୍ତୁର ସଂଘଟନ ପ୍ରସଙ୍ଗରେ ଏକ କୌତୁହଳପୂର୍ଣ୍ଣ ପର୍ଯ୍ୟାୟକ୍ରମ ଦୃଷ୍ଟି ଆକର୍ଷଣ କରେ । ସାଧାରଣ ଜଗତର କ୍ଳେଶର ବର୍ଣ୍ଣନା ଏବଂ ସେଥିରୁ ମୁକ୍ତି ନିମନ୍ତେ ପ୍ରାର୍ଥନା ସେହି ସ୍ତୁତିର ମୁଖ୍ୟ ବିଷୟବସ୍ତୁ । କିନ୍ତୁ ବ୍ୟକ୍ତିଜୀବନର ଯନ୍ତ୍ରଣାବୋଧର ଯେଉଁ ସ୍ୱରୂପ ତାହାର ପ୍ରଥମ ବୋଲିମାନଙ୍କରେ ପ୍ରଚ୍ଛନ୍ନ ଭାବେ ଆତ୍ମପ୍ରକାଶ କରେ ତାହା କ୍ରମେ ଅଧିକ ବଳଶାଳୀ ଓ ପ୍ରତ୍ୟକ୍ଷ ରୂପ ନେଇ କେତେକ ପ୍ରଧାନ ବିଷୟବସ୍ତୁ ହୋଇଉଠେ ଏବଂ ସେହି କ୍ରମରେ କାବ୍ୟସ୍ୱରରେ ଏକ ବିଶେଷ ଧରଣର ଅନ୍ତରଙ୍ଗତା ଝଙ୍କୃତ ହୁଏ । ଏହି ଭାବରେ ଦ୍ୱାବିଂଶ ବୋଲିରେ ବ୍ୟକ୍ତିଜୀବନର ଯନ୍ତ୍ରଣା ହିଁ ପୁରୋବର୍ତ୍ତୀ ହୋଇଛି ।

ଭାଷାର ସରଳତା ଓ ବିଷୟବସ୍ତୁର ଅନାବୃତ ରୂପ ସେହି ଯନ୍ତ୍ରଣାର ଅବାରିତ ଗ୍ରପକୁ କରୁଣ ଭାବେ ମୂର୍ତ୍ତ କରିଛି –

ବୁଲୁଥାଇ ବନେ ନିତି ପ୍ରତିଦିନେ ବସ୍ତାକୁ ସଙ୍ଗତେ ଘେନି
କ୍ଷୁଧା ତୃଷା କଲେ ଜୀବନ ବିକଳେ ପିଉଥାଇ ଝରପାଣି

× × ×

ସେ ସମୟ କଥା ମନେ କଲେ ଚିନ୍ତା କରତି କାଟୁଛି ପିଣ୍ଡ,
ଉଠୁଅଛି କ୍ରୋଧ ହୋଇ ଗଦଗଦ ବୁକୁରେ ପଡୁଛି କାଣ୍ଡ ।

× × ×

ହାଇ ଘନ ଘନ ଆଖି ଥନ ଥନ ପଡ଼ିଛି ଚିନ୍ତା ସମୟ,
ଜୀବନ ମୋର ଛିଡ଼ି ପୋଡ଼ି ଯାଉଛି ଅଗ୍ନି ଉଠୁଅଛି ଦେହ। ।ଇତ୍ୟାଦି ।

ଏହି ବୋଲି ପରେ ବିଷୟବସ୍ତୁର ପରିସର ପୁଣି ପ୍ରସାରିତ ହୁଏ ଓ ସମଗ୍ର ମାନବଜୀବନରେ ପାପତାପର ପ୍ରଭାବଜନିତ ଯନ୍ତ୍ରଣା କେନ୍ଦ୍ରସ୍ଥଳକୁ ଗ୍ରଲିଆସେ। ବିଚିତ୍ରଭାବେ ଏକ ବାସ୍ତବବାଦୀ ସ୍ୱରରେ ଠାଏ ଠାଏ ଈଶ୍ୱରଙ୍କ ପ୍ରତି ସହାନୁଭୂତି ବ୍ୟକ୍ତ କରି (ନିଜେ ଭଗବାନ ଦୁଃଖ ପାଉଛନ୍ତି ବ୍ରହ୍ମାଣ୍ଡ ରଖିବା ପାଇଁ) ଅଶାନ୍ତି ଓ କ୍ଲେଶ ସ୍ୱୀକାର କରିବା ପାଇଁ କବି ମନ ନିଜକୁ ଦୃଢ଼ କରେ। କିନ୍ତୁ ଚେତନାର ଆର୍ତ୍ତସ୍ୱର ଅବଦମିତ ହୋଇପାରେ ନାହିଁ। ଏଣୁ କବିଚିତ୍ତର ଅସହାୟତା ଏକାଧିକବାର ଗୋଟିଏ ନିର୍ଦ୍ଦିଷ୍ଟ ଭାବରେ ପ୍ରକାଶ ପାଏ –

କାହିଁ ମୁଁ ଲୁଚିବି କେମନ୍ତେ ବଞ୍ଚିବି ପଳାଇବି କେଉଁ ପଥେ।
ଜଗତ କଷଣ କେତେ ମୁଁ ସହିବି ବିପତ୍ତି ପଡ଼ିବ ଯେତେ। (୨୫)/୦୧

ବ୍ୟକ୍ତିଜୀବନର କାତରତା ସମଗ୍ର ମାନବଜୀବନର ଆଧାତ୍ମିକ ସଙ୍କଟଜନିତ କାତରତାକୁ ଆହୁରି ପ୍ରଗାଢ଼ କରେ। ସ୍ତୁତିପାଠ ପୁନର୍ବାର ପରିଣତ ହୁଏ ସାମୂହିକ ଜଗତର ଏକ ପ୍ରାର୍ଥନାରେ। ମହିମାଧର୍ମର ଭବିଷ୍ୟଦର୍ଶୀ ସନ୍ଥ ସମସ୍ତଙ୍କୁ ଚେତାବନୀ ଶୁଣାଏ ଯେ ଧରଣୀର ପାପଭାର କମିବା ପାଇଁ ପାପୀମାନଙ୍କର ବିନାଶକାଳ ଆସି ଉପସ୍ଥିତ ହେଲାଣି। ସେହି ଘଡ଼ିସନ୍ଧି କାଳରେ ମହିମାଗୁରୁଙ୍କ ଶରଣାପନ୍ନ ହୋଇ ଅଭୟ ଲାଭ କରିବା ପାଇଁ ସମସ୍ତଙ୍କୁ ସତର୍କ କରାଏ, ପ୍ରରୋଚିତ କରେ, ଆକୁଳ ନିବେଦନ ମଧ୍ୟ ଜଣାଏ। ଏହି ପ୍ରସଙ୍ଗରେ କେତେକ ମଧ୍ୟ ଭାଗର ବୋଲିରେ କ୍ରୋଧ

କରୁଣାରେ ପରିଣତ ହେବା ଏବଂ ଯନ୍ତ୍ରଣାବୋଧ ତୀବ୍ରତର ହେବାର ଗୁଣ ସ୍ପଷ୍ଟ। ମହିମା ବିଦ୍ୱେଷୀମାନଙ୍କ ବିରୁଦ୍ଧରେ ଅଭିଯୋଗ ଏବଂ ଆଶୁପ୍ରଳୟ ପ୍ରସଙ୍ଗରେ ଅଭକ୍ତମାନଙ୍କ ସଂହାରର ଚିତ୍ର ପରିପ୍ରେକ୍ଷୀରେ ଯେଉଁ କ୍ରୋଧଭାବ ପ୍ରକାଶିତ ହୋଇଥିଲା ତାହା ସ୍ଥାନରେ ହଠାତ୍ ଆମେ ଦେଖୁ ଠିକ୍ ସେହି ପତିତମାନଙ୍କ ପାଇଁ ଏକ ନୂତନ ଦୟାଶୀଳତା। ଉଦାହରଣ ସ୍ୱରୂପ, କ୍ରୋଧଭାବର ଏକ ଚରମ ମୁହୂର୍ତ୍ତ ଆସେ ଷଡ଼୍‌ବିଂଶ ବୋଲିରେ। ସେଥିରେ ପ୍ରକାଶିତ ଯୁଗାନ୍ତକ କ୍ରୋଧ, ଦାୟିକତା, ପ୍ରତିଶୋଧପରାୟଣତା ଓ ଉନ୍ମତ୍ତଭାବ ବିସ୍ମୟକର ଓ ବିଚିତ୍ର –

ଭୁଲାଉଛ କେତେ କହି ନାନା ମତେ ବୁଝାମଣା ନାହିଁ ବେଗ
ଛାଡ଼ି ଦିଅ ମୋତେ ଗୁରୁଦେବ ସ୍ୱାମୀ ଭରଣା କରିବି ଯୁଗ।
ନବଖଣ୍ଡ ମହୀ ଥାଳି ପ୍ରାୟ ହୋଇ ହେଜିଲେ ମନକୁ ଆସେ।
ଏ ମୋର ନେତ୍ରକୁ ଛପ୍ପନ୍ନକୋଟି ଜୀବ ତିରଣ ପରାଏ ଦିଶେ
ଏକା ଦିବସରେ କ୍ଷଣକ ଭିତରେ ଦ୍ୟନ୍ତି ପୃଥ୍ୱୀ ଲେଉଟାଇ
ଦାନ୍ତକାମୁଡ଼ି କିସ ବୁଦ୍ଧି କରିବି ଶ୍ରୀଗୁରୁଙ୍କ ଆଜ୍ଞା ନାହିଁ।
କହୁଛି ସଂସାରେ ସିତେଶ ଅଙ୍କରେ ସାଧନ ନୋହିଲେ ପୃଥୀ
ନିଷ୍ଠୁର ବଚନ ସାଧୁ ସୁଜ୍ଞଜନ ଶୁଣ ଶୁଣ ମୋର ରୀତି।
ବସିଥାଇ କୂଳ ମହାନଦୀ ଜଳ ଛୁଇଁଅଛି ସତ୍ୟକରି।
ଧର୍ମକୁ ଲଂଘି ସୁରାପାନ କରିବି ହରିବି ବ୍ରାହ୍ମଣ ସ୍ତିରୀ। (୨୬)/୧୯

ଏବଂ ଏହା ଆହୁରି ବିସ୍ମୟକର ଯେ ଠିକ ପର ବୋଲିଟିରେ ଗୋଟିଏ ମୁହୂର୍ତ୍ତରେ ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉର ମାର୍ମିକ ଭାବ ହଠାତ୍ କବି ଚେତନାକୁ ବିଚଳିତ କରିଛି। ଠିକ ସେହି ଧରଣର ଉଚ୍ଛ୍ୱାସ ଅଧିକ ପ୍ରତିକ୍ରିୟାଶୀଳ ରୂପ ନିଏ। ୩୩ ବୋଲିରେ ସେ କହନ୍ତି–

ବୁଝି ଦେଲେ ବୁଝା ଏ ମୋର ନିଆୟ ନୋହିଲେ ଛାଡ଼ିବି ଦେହ।
ତିନିପୁର ସଭାମଣ୍ଡଳରେ ଯେତେ କରି ହତ୍ୟା ଦୋଷ ବହ ॥

ସାମୂହିକ ସ୍ତରର କଳୁଷତା କାରଣରୁ ଶୋକ ଓ କ୍ରୋଧର ପ୍ରକାଶକ୍ରମେ ଏହାପରେ 'ସ୍ତୁତିଚିନ୍ତାମଣି'ର ବିଷୟବସ୍ତୁରେ ମହିମା ସଂଘର ଗୁରୁତ୍ୱ ପ୍ରସଂଗ ଚାଲିଆସେ ଏବଂ ସେହି ପରିପ୍ରେକ୍ଷୀରେ କାବ୍ୟର ଆରମ୍ଭରେ ଦେଖାଯାଇଥିବା ତାଙ୍କର ପୁନରାବୃତ୍ତି

ଘଟେ। କାରଣ ମହିମାର ବ୍ୟାଖ୍ୟା କରିବା କ୍ରମରେ ସେହି ଧର୍ମର ପରିପନ୍ଥୀମାନଙ୍କ ବିରୁଦ୍ଧରେ ପ୍ରତିକ୍ରିୟା ସ୍ୱତଃ ତାଙ୍କ ଭାବ ପରିସର ମଧ୍ୟକୁ ଚାଲିଆସେ। ଜାତି, ଧର୍ମ ନିର୍ବିଶେଷରେ ଯେଉଁ ପତିତ ପ୍ରାଣୀଙ୍କ ମୁକ୍ତି ପାଇଁ କବି ନିଜ ଜୀବନକୁ ଉତ୍ସର୍ଗ କରିବାରେ ବ୍ରତୀ ଥିଲେ ଏବଂ ସ୍ୱୟଂ ଈଶ୍ୱରଙ୍କୁ ସୁଦ୍ଧା ବାରମ୍ବାର ଚେତାବନୀ ଶୁଣାଇଥିଲେ ସେହି କବି ତାଙ୍କ ବିରୁଦ୍ଧ ମତାବଲମ୍ବୀଙ୍କ ପ୍ରତିପକ୍ଷରେ ଅତ୍ୟନ୍ତ ଅସହିଷ୍ଣୁ ଓ ଅକ୍ଷମୀ ହୋଇଉଠନ୍ତି। ଏହି ଅସହିଷ୍ଣୁତା କେତେକ ବୋଲିରେ ନିର୍ଦ୍ଦିଷ୍ଟ ଭାବେ ସମ୍ପ୍ରଦାୟଭିତ୍ତିକ। ମାତ୍ର ପୁନର୍ବାର ଆଙ୍ଗିକ ସଙ୍କୁଚିତ ହୋଇ ସିଧାସଳଖ ଭୀମଭୋଇଙ୍କ ଉତ୍ତର ଜୀବନରେ ସଙ୍ଘ ସଞ୍ଚାଳକ ଭାବେ ସେ ବ୍ୟକ୍ତିଗତ ସ୍ତରରେ ଅନୁଭବ କରିଥିବା ବିଦ୍ରୂପ ଓ ଲାଞ୍ଛନା ବିରୁଦ୍ଧରେ କାବ୍ୟଟି ପ୍ରତିକ୍ରିୟାମୁଖର ହୋଇଉଠେ। କାବ୍ୟର ଶେଷଭାଗକୁ ପୁଣି ସେହି ପ୍ରତିକ୍ରିୟା ପ୍ରବଣତା ଅବଦମିତ ହୁଏ। ସ୍ତୁତି ପୁଣି ହୁଏ ସାର୍ବଜନୀନ ଏବଂ ପରେ ସାଙ୍ଗଠନିକ। ମହିମା ବିଶ୍ୱାସୀ କବିମନ କାବ୍ୟର ଉପସଂହାର ଅଂଶଟିରେ ପ୍ରଚାରକ କାର୍ଯ୍ୟରେ ଲିପ୍ତରହେ ଓ ମହିମାଗୋଷ୍ଠୀର ଆଦର୍ଶ ଆଚାର ବ୍ୟବହାର ସମ୍ପର୍କରେ ରଚନା ଲେଖେ।

ସାଂଗଠନିକ ବିଷୟବସ୍ତୁ ଦିଗରେ ଅଧିକ କ୍ରିୟାଶୀଳ ହେବା ପୂର୍ବରୁ କ୍ରୋଧ ଓ ଯନ୍ତ୍ରଣାରେ ଅଭିଭୂତ କବିମନର ଯେଉଁ ପ୍ରତିକ୍ରିୟା କାବ୍ୟର ଶେଷ ଭାଗରେ ରୂପାୟିତ ହୋଇଛି ତାହା ସମାଲୋଚକର ବିଶେଷ ଦୃଷ୍ଟି ଆକର୍ଷଣ କରେ। କାରଣ ବ୍ୟକ୍ତିନିଷ୍ଠ ଭାବାବେଗର ଚାପ, ସେଠାରେ ଏତେ ପ୍ରବଳ ଯେ ତାହା ଫଳରେ କାବ୍ୟକୃତି ବିପର୍ଯ୍ୟସ୍ତ ହୋଇ ଉଠିବାର ଆଶଙ୍କା ଚାଲିଆସେ। ଅବଶ୍ୟ କାବ୍ୟପ୍ରେରଣା ସାମୟିକ ଭାବେ ଲାଘବ ହେବା କାରଣରୁ ଯେ କୌଣସି କବିର ରଚନାରେ ସ୍ଥାନୀୟ ବିଚ୍ୟୁତି ବା ଅସଫଳତା ଦେଖାଦେବା ସ୍ୱାଭାବିକ। ସେହି ଧରଣର ଅନୁପ୍ରେରଣାର ଶିଥିଳତା ଅନୁଭବ କରି ଭୀମଭୋଇ ମଧ୍ୟ ଗୁରୁପଦରେ ନିବେଦନ କରି କହିଥିଲେ–

ଏଠାରୁ ଏଣିକି କଣ ଦିଶୁଛି ପଦ ଜାଣି ବୁଝି ଦୟାକର

× × ×

ସାର ଅସାର ଦୁତୀୟ ପରକାର ବାତ୍ସଲ୍ୟରେ ପଦ ବସୁ।<br>
ବରଷା ଋତୁରେ ମହାନଦୀ ପ୍ରାୟ ପଦ ଅର୍ଥ ବଢ଼ି ଆସୁ।

କିନ୍ତୁ ସେହି ଧରଣର ସାମୟିକ ଅସଫଳତା ଏବଂ ଇତର ସ୍ତରର ବ୍ୟକ୍ତିନିଷ୍ଠ ଭାବାବେଶର ପ୍ରାବଲ୍ୟ କାରଣରୁ ଦେଖାଦେଇଥିବା ଅସନ୍ତୋଷଜନକ ଭାବପ୍ରକାଶ

ମଧ୍ୟରେ ପ୍ରଭେଦ ରହିଛି । କ୍ରୋଧ ଏବଂ ବ୍ୟକ୍ତିଗତ ପ୍ରତିକ୍ରିୟା ଉପସ୍ଥିତ କ୍ଷେତ୍ରରେ ପ୍ରାଧାନ୍ୟ ଲାଭ କରିବାରୁ ଯନ୍ତ୍ରଣାବୋଧର ସୃଷ୍ଟିଶୀଳ ଗୁରୁତ୍ୱପୂର୍ଣ୍ଣ ହ୍ରାସ ପାଇଛି । ହୁଏତ ତାହାର ପୂର୍ବ ପର୍ଯ୍ୟାୟରେ ଯନ୍ତ୍ରଣାବୋଧର ପ୍ରସଙ୍ଗ ମଧ୍ୟ ବ୍ୟକ୍ତିନିଷ୍ଠ, ମାତ୍ର ତାହାର ପରିଧି ଓ ବୋଧଦୃଷ୍ଟି ଭିନ୍ନ –

ଶୀତ ପ୍ରାୟେ ଦେହ ଥରୁଅଛି ମୋର ଦେଖି ଅନୀତି ବିଚାର ।

× × ×

ଡରି ଡରି କରି ଏ ମର୍ତ୍ତ୍ୟ ମଣ୍ଡଳେ କେତେ କାଳ ନେବି ଦିନ ।
ଘାଣ୍ଟି ହେଉଅଛି ହୃଦରେ ମୋହର ପଚିଶ ପ୍ରକୃତି ମନ । (୩୫)/୧୪

କିମ୍ବା

ମୋର ପିଣ୍ଡ ପ୍ରାଣ ଦେଇଅଛି ଦାନ ଅଲେଖ ପୁରୁଷ ପାଦେ,
ଶ୍ରୀଛାମୁରେ ମୁହିଁ ବ୍ରାହ୍ମଣ୍ଡର ପାଇଁ ଜଣାଣ କରୁଛି ଏବେ ।
ଅଶେଷ ବ୍ରହ୍ମାଣ୍ଡ ବୁଡି ଯେବେ ଯିବ କାହିଁରେ ରହିବି ମୁହିଁ,
ମନ ଛନ ଛନ ହେଉଛି ଉଚ୍ଛନ୍ନ ଏ ପିଣ୍ଡ ବ୍ରହ୍ମାଣ୍ଡ ପାଇଁ ।

× × ×

ଏ ଜନ ଜଗତ ହତ ହୋଇଗଲେ କାହିଁ ପ୍ରଚାରିବି ମୁହିଁ । (୪୦)/୧୦

କିମ୍ବା

ଗ୍ରାମ ଦେଶ ଛାଡ଼ି ବିଅର୍ଥେ ପଶିଲି ଝାଡ଼ ବନଲତା ଘୋର ।

× × ×

ଘୋର କଳିଯୁଗେ ଅସତ୍ୟ ଠାବରେ କେମନ୍ତେ ବଞ୍ଚିବି କାଳ । (୪୨)

କିନ୍ତୁ ପ୍ରଚାରକ ଭୀମଭୋଇଙ୍କୁ ଯେଉଁ ସାମାଜିକ ବିଦୃପ ସହିବାକୁ ପଡ଼ିଛି । ସେହି ପ୍ରସଙ୍ଗରେ ରଚିତ ହୋଇଥିବା ପଞ୍ଚାଶ ବୋଲିଠାରୁ ସତୁରୀ ବୋଲି ମଧ୍ୟରେ ଅତି ସାଧାରଣ ସ୍ତରର କ୍ରୋଧ ଓ ନୈରାଶ୍ୟ ବଳବତ୍ତର ହୋଇପଡିଛି । ସେହି ହେତୁରୁ ପୂର୍ବ ବୋଲି ସବୁର ସରଳ ଚମତ୍କାରିତା ବଦଳରେ ଏଠାରେ ବାରମ୍ବାର ଚାଲିଆସେ ଏକ ଇତର ସ୍ତରର ଭର୍ତ୍ସନା ଓ ପ୍ରତିବାକ୍ୟ ମୁଖରତା –

କାହାରି ଧନ ନଖାଇ ନ ବୁଡ଼ାଇ ନଲାଗି କାହାରି ଋଣ ।
ଦିବାନିଶିରେ ଇଙ୍ଗିତ କରୁଅଛନ୍ତି ଦେଖ ମେଳଛଙ୍କ ଗୁଣ ।

କାହାରି ସପତ ପୁରୁଷର ସମ୍ପତ୍ତି ଉଡ଼ାଇ ମୁହିଁ ନ ଦେଇ ।
ଆକାରଣେ ସର୍ବେ ଭୁକି ମରୁଛନ୍ତି ମୋଠାରେ ଶତ୍ରୁତା ହୋଇ। (୬୨)/୧୦

ବା

ନରକଖିଆ ଅଳପ ଆୟୁଷିଆ କୁଳବୁଡା ଯେତେ ଲୋକ
ଜନଗହଳିଆ ବ୍ରହ୍ମରାକ୍ଷସିଆ ନିନ୍ଦୁଛନ୍ତି କେତେ ଦେଖ।
ଧନ ଦାରା ସୁତ ପାଇ ଆନନ୍ଦ ଏ ମୋର କପାଳରେ ଥିଲା
ପୂର୍ବ କମାଣିର ଫଳ ଭୁଞ୍ଜୁଅଛି କାହାର ବା କିସ ଗଲା। (୬୩)/୧୦

ବା

ଏ ବସ୍ତ୍ର ଭୂଷଣ ଆୟ ଅଳଙ୍କାର ଆମ ସଂଗେ ଯେତେ ଅଛି
କାଠାରୁ ଠକି ଭଣ୍ଡି ଚୋରି ନଆଣି ଅଲେଖ ସବୁ ଦେଉଛି। (୬୪) /୧୨

ବା

ଧର୍ମ ଯେବେ ଥିବ ଅଧର୍ମୀମାନଙ୍କୁ ତ୍ରିକାଳେ ହେଲେ ଦଣ୍ଡିବ
ଆପଣା ପିଣ୍ଡ ପରାଣ ହତ ହୋଇ ନିଶ୍ଚୟେ। କୁଳ ବୁଡ଼ିବ। (୬୬)/୧୨

ଏହି ଧରଣର ଭାବାବେଗ, ରୁଚି ଏବଂ ବକ୍ତବ୍ୟ ପ୍ରସଙ୍ଗରେ ପରିଣତ ବୟସ୍କ ସେହି ସନ୍ଥ ବ୍ୟକ୍ତିତ୍ୱ ପ୍ରତି ଶ୍ରୋତା ମନରେ ଯେଉଁ ଧରଣର ଭାବ ସୃଷ୍ଟି ହେବ ତାହା ଏକ ଭିନ୍ନ ବିଷୟ। କିନ୍ତୁ ସନ୍ଥ କବିତାର ଏ ଯେଉଁ ବିଚ୍ୟୁତି ଓ ଅବକ୍ଷୟର ଚିହ୍ନ ଆମେ ଦେଖୁଁ ସେଥିରୁ କବିମନରେ କ୍ରୋଧ ଓ ଯନ୍ତ୍ରଣାର ଆତିଶଯ୍ୟ ସ୍ପଷ୍ଟ। ଏହି କାବ୍ୟଅଂଶ ପରେ ପାରମ୍ପରିକ ରୀତିରେ ଜଣାଣ ଓ ପ୍ରାର୍ଥନାର ପର୍ଯ୍ୟାୟ ଆସିଛି ଯହିଁରେ ପ୍ରଥମାର୍ଦ୍ଧର କବି ମନର ସ୍ପର୍ଶକାତରତା ଓ ଉତ୍ତରାଦ୍ଧର ବ୍ୟକ୍ତିନିଷ୍ଠ ଉତ୍ତେଜନା, ଉଭୟ ଅନେକାଂଶରେ ପ୍ରଶମିତ। କ୍ରୋଧ ଓ ଯନ୍ତ୍ରଣାର ଉପାଦାନ ଅବଶ୍ୟ ରହିଛି। ମାତ୍ର ଏକ ଭିନ୍ନ ଧରଣର ଆବେଦନ ମଧ୍ୟରେ ତାହା ଅବଦମିତ।

ସ୍ତୁତିଚିନ୍ତାମଣିର ଭାବାବେଗ ତେଣୁ ସାମଗ୍ରିକ ଭାବେ ଭୀମଭୋଇଙ୍କ ଗଭୀର ଯନ୍ତ୍ରଣାବୋଧ ଏବଂ କ୍ରୋଧଭାବର ଏକ ପ୍ରଭାବଶାଳୀ ପରିଣତି ଅଟେ। ଏହା ହେବା ସ୍ୱାଭାବିକ। କାରଣ ଯନ୍ତ୍ରଣା ଓ ପ୍ରତିକ୍ରିୟାର ଭାବ ଯେଉଁ ଅବସ୍ଥାରେ ସମ୍ପୂର୍ଣ୍ଣ ତିରୋହିତ ହୋଇଯାଏ କବି ସେଠି ପାଲଟେ ଏକ ତଟସ୍ଥ ମୂକଦ୍ରଷ୍ଟା। ସେହି ଚରମ ଅବସ୍ଥାରେ ଭାଷା ଓ ଭାବର ସାଧାରଣ ଭୂମିସଂଲଗ୍ନତା ଆଉ ରହେ ନାହିଁ। ସ୍ତୁତିଚିନ୍ତାମଣିର କାବ୍ୟ ସଫଳତା ଏକ ସନ୍ଥ ଦାର୍ଶନିକର ଭୂୟୋଦୃଷ୍ଟି ସହିତ ଅବଶ୍ୟ ଘନିଷ୍ଠ ଭାବେ

ସମ୍ପର୍କିତ । ମାତ୍ର ତାହାର ମୂଳଉତ୍ସ ହେଉଛି ଏକ ଯନ୍ତ୍ରଣାସିକ୍ତ, ବିଦ୍ରୋହୀ, କାରୁଣିକ ଚେତନା । କାବ୍ୟଟିର ପର୍ଯ୍ୟାୟକ୍ରମ ଏବଂ ତହିଁରେ ସାଧାରଣ ଜୀବନର କ୍ଳେଶାନୁଭବ ପ୍ରତି କବିମନର ଅନମନୀୟ ଉନ୍ମୁଖତା ଲକ୍ଷ୍ୟକଲେ ଭୀମଭୋଇଙ୍କ କବିତାର କେନ୍ଦ୍ର ରୂପ ସହଜରେ ଧରିହୁଏ । ଆଧ୍ୟାତ୍ମିକ ଭୂୟୋଦୃଷ୍ଟି ଉପରେ ନିର୍ଭର କରି ଭୀମଭୋଇ କେବେ ହେଁ ବାସ୍ତବ ଜୀବନର ସତ୍ୟ, ତିକ୍ତ ଅନୁଭବକୁ ଭୁଲିପାରିନାହାନ୍ତି । ତାଙ୍କ ଭାଷାରେ କହିବାକୁ ଗଲେ-

ଶୁନ୍ୟ ଶୁନ୍ୟ ବୋଲି ସକଳଙ୍କୁ ରହିଁ ସତ୍ୟକୁ କରି ପସରା ।
ସହିବାକୁ କାହିଁ ଶକତି ମୋହର ନେତ୍ରୁ ବହୁଅଛି ଧାରା ॥ (୩୧)/୧୪

ଏବଂ ଠିକ୍ ସେହି କାରଣରୁ ତାଙ୍କ ସ୍ଫୁତି ହୋଇଛି କବିତା । ନିଜ ବ୍ୟକ୍ତିଜୀବନର ଅନୁଭୂତି ପରି ପରିପାର୍ଶ୍ୱିକ ଜଗତର ରୂପ ତାଙ୍କୁ ଅତିଷ୍ଠ, ଅସହନଶୀଳ ଓ ବ୍ୟଥିତ କରିଛି । ଅବଶ୍ୟ ଏହି ବାସ୍ତବତାର ଜାବୋଡ଼ ସମୟ ସମୟରେ ଅତିଶୟ ବ୍ୟକ୍ତିନିଷ୍ଠ ହେବା ଫଳରେ କବିଚେତନା ହଠାତ୍ ଏକ ଇତର ସ୍ତରକୁ ଖସିଆସେ । କେବଳ କ୍ରୋଧଟି ରହିଯାଏ ଏବଂ ପ୍ରକାଶଭଙ୍ଗୀରେ ସୃଷ୍ଟିଶୀଳତାର ରୂପ ହାଲୁକା ହୋଇଯାଏ । ମାତ୍ର ଅନ୍ୟତ୍ର ସେହି ବାସ୍ତବଜୀବନର ସ୍ପର୍ଶକାତର ଉପଲବ୍ଧି ହିଁ ତାଙ୍କ କବିତାକୁ ଏକ ଗୌରବମୟ ପ୍ରାଣପ୍ରତିଷ୍ଠାରେ ଅଭିଷିକ୍ତ କରେ । ଋଷିପ୍ରାଣେ ଦେବାବତରଣର ମହିମାନ୍ୱିତ ରହସ୍ୟବାଦୀ ଅନୁଭବ ସେହି କାବ୍ୟପରିଣତିର ନିଦାନ ନୁହେଁ । ମହିମାଦର୍ଶନର ପ୍ରଚଣ୍ଡ ଶକ୍ତି କିମ୍ବା ଭାଗବତବୋଧର ଊର୍ଦ୍ଧ୍ୱ ପ୍ରଶାନ୍ତି ସେହି କବିତାର ରସବିଭବ ସୃଷ୍ଟି କରିନାହିଁ । ଏକ ଧର୍ମାନୁରକ୍ତ, ଗୁରୁପଦାଶ୍ରୟୀ ବ୍ୟକ୍ତିର ଚେତନାରେ ସାଧାରଣ ମାନବ ସୁଲଭ ଶଙ୍କା, ପ୍ରତିକ୍ରିୟା ଓ ଅସହାୟତାର ଉଦ୍‌ବେଳନ ଏବଂ ସେହି କ୍ରମରେ ଆସିଥିବା ଦୋଦୁଲ୍ୟମାନତା ଓ କାରୁଣିକତା ହିଁ ଭୀମଭୋଇ କାବ୍ୟର ପ୍ରାଣକେନ୍ଦ୍ର । ଆଦ୍ୟଜୀବନର ଦୁଃସ୍ଥିତି, ଉଚ୍ଚଶିକ୍ଷାର ଅଭାବ, ଅନଗ୍ରସର ଗଡ଼ଜାତ ଅଞ୍ଚଳର ସାଧାରଣ ଜନସମାଜ ସହିତ ସ୍ନେହ ଓ ସଂଘର୍ଷର ବନ୍ଧନ, ସାଧାରଣ ସ୍ୱୀକୃତିଲାଭକରି ନଥିବା ଗୋଟିଏ ଧର୍ମ ସମ୍ପ୍ରଦାୟର ଦାୟିତ୍ୱ ଏକ ବିକ୍ଷୁବ୍ଧ ଆଧ୍ୟାତ୍ମିକ ଚେତନାର ତାଡ଼ନା - ଏ ପ୍ରତ୍ୟେକଟି ଅଭାବମୂଳକ କାରଣର ସାମଗ୍ରିକ ଭାବ ପରିଣତି କ୍ରମେ ସୃଷ୍ଟି ହୋଇଥିବା କ୍ରୋଧ ଓ ଯନ୍ତ୍ରଣାର ତୀବ୍ର ଅନୁଭବ ହିଁ ସେହି କବିତାର ମୂଳ ଉତ୍ସ, ଏବଂ ଠିକ ସେହି ସବୁ ଅଭାବବୋଧର ଏକ ନିର୍ଦ୍ଦିଷ୍ଟ, ବିଶିଷ୍ଟ ବ୍ୟକ୍ତିଚେତନାର ଆତ୍ମପ୍ରକାଶ ଭାବେ ଭୀମଭୋଇଙ୍କ କାବ୍ୟ ଅନନ୍ୟ ଓ ଅତୁଳନୀୟ ।

-o-

# ଶବ୍ଦରେ ଅସ୍ତ୍ର ଓ ଔଷଧି ନିର୍ମାଣର କଳା: ଭୀମଭୋଇଙ୍କ ଜୀବନୀ ଓ କବିତା

କେଦାର ମିଶ୍ର

ଓଡ଼ିଆ ସାହିତ୍ୟର ଇତିହାସକାରମାନେ ବର୍ଷବର୍ଷ ଧରି ଅନ୍ଧଭାବରେ ଭୀମଭୋଇଙ୍କୁ ଅନ୍ଧରୂପେ ବର୍ଣ୍ଣନା କରିଆସିଥିଲେ। ଐତିହାସିକ ତଥ୍ୟରୁ ଭୁଲ୍ ବିଶ୍ଳେଷଣ, ବିନା କ୍ଷେତ୍ର ଅଧ୍ୟୟନରେ ମନ୍ତବ୍ୟ ପ୍ରଦାନ ଏବଂ ସର୍ବୋପରି ଆଞ୍ଚଳିକ ମାନସିକତାର ଜଘନ୍ୟ ପ୍ରତିଫଳନ, ଇତିହାସକୁ ଉପହାସ କରିଛି। ଭୀମଭୋଇଙ୍କ ଜୀବନକାଳ ସହ ଓଡ଼ିଆ ଆଧୁନିକ ସାହିତ୍ୟର ଉଷାକାଳ ସମସାମୟିକ। ତଥାପି ତାଙ୍କ ଜୀବନ ସଂପର୍କରେ ଗୁଡ଼ାଏ କାହାଣୀ ସଂଗ୍ରହ କରିବା ଛଡ଼ା ଆମ ଗବେଷକମାନେ ଅଧିକ କିଛି କରିପାରି ନାହାନ୍ତି। ଊନବିଂଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ଜନ୍ମ ଜୀବନ ଓ ମରଣ ଭୋଗିଥିବା ଏହି ପ୍ରଚଣ୍ଡ ପ୍ରତିଭାଧର କବିଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିବା ଅନେକ ବ୍ୟକ୍ତି ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ବଞ୍ଚିରହିଥିଲେ। ସେମାନଙ୍କ ପାଖରେ ପହଞ୍ଚି ତଥ୍ୟ ସଂଗ୍ରହ କରିବାର ସମୟ, ସାମର୍ଥ୍ୟ କିମ୍ବା ଆଗ୍ରହ କାହାପାଖରେ ନଥିଲା। ୧୯୦୭-୦୮ ଡିସେମ୍ବର-ଜାନୁଆରୀ "ମୁକୁର"ରେ ଏକ ପ୍ରବନ୍ଧ ଭୀମଭୋଇଙ୍କ ଜୀବନକୁ କିମ୍ବଦନ୍ତୀ ଭାବରେ ପରିବେଷଣ କରାଯାଇଛି। ସୋନପୁର ରାଜଦରବାରର ଜନୈକ କର୍ମଚାରୀ ଦାମୋଦର ମହାନ୍ତିଙ୍କ ରଚିତ "ଭୀମଭୋଇଙ୍କ ଜ୍ଞାନପ୍ରାପ୍ତି" (କିମ୍ବଦନ୍ତୀ) ପ୍ରବନ୍ଧଟି ସମ୍ଭବତଃ କବିଙ୍କ ଜୀବନ ବିଷୟରେ ପ୍ରଥମ ଆଲୋଚନା ତେବେ ଦାମୋଦର ମହାନ୍ତି ସୋନପୁର ରାଜଦରବାରର କର୍ମଚାରୀ ହୋଇଥିଲେ ମଧ୍ୟ ଭୀମ ଲୋକଙ୍କ ସଂସ୍ପର୍ଶରେ ଆଦୌ ଆସିନଥିବା କଥାଟି ତାଙ୍କ ପ୍ରବନ୍ଧରୁ ସ୍ପଷ୍ଟ ଜଣାପଡେ। ତାଙ୍କ ପ୍ରବନ୍ଧରେ ସେ ଗୁଡ଼ାଏ ଜନଶ୍ରୁତି ଓ ଆଖ୍ୟାୟିକାକୁ

ବିଶ୍ୱାସ କରିଛନ୍ତି । ଏପରିକି ଭୀମ ଭୋଇଙ୍କ ଖଲିଆପାଲି ଆଶ୍ରମ ଓ ତାଙ୍କ ପରିବାର ବିଷୟରେ ଉକ୍ତ ପ୍ରବନ୍ଧରେ ସୂଚନା ନାହିଁ । ବରଂ କବିଙ୍କ ଅନ୍ଧତ୍ୱ ସଂପର୍କରେ ଉକ୍ତ ପ୍ରବନ୍ଧଟି ବିଭ୍ରାନ୍ତିର ସୂତ୍ରପାତ କରିଛି ।

**କିମ୍ବଦନ୍ତୀର ଜୀବନ: ଅନ୍ଧତ୍ୱ ଓ କନ୍ଧତ୍ୱ**

ଊନବିଂଶ ଶତାବ୍ଦୀର ସାମନ୍ତବାଦୀ ସମାଜରେ ଜଣେ କନ୍ଧ ଯୁବକର ପ୍ରତିଷ୍ଠାକୁ ଗ୍ରହଣ କରିନେବାରେ ମାନସିକତା ସେ ବେଳର ବଡପଣ୍ଡାମାନଙ୍କର ନଥିଲା । ତେଣୁ ଏକ ବିସ୍ଫୋରକ ପ୍ରତିଭାକୁ ଅସ୍ୱୀକାର କରିନପାରି, ତାକୁ ନଶୁଣିଲା ପରି ବ୍ୟବହାର ପ୍ରଦର୍ଶନ ହେଉଛି ଓଡ଼ିଆ ସାହିତ୍ୟ ଇତିହାସର ଶ୍ରେଷ୍ଠ ବିଡ଼ମ୍ବନା । ଜଣେ ରକ୍ତ, ମାଂସର ଆଦିବାସୀ ମଣିଷ ଉଚ୍ଚାଙ୍ଗ ସାହିତ୍ୟ ରଚନା କରିପାରେ, ଏକଥା ଅବିଶ୍ୱାସ ମନେ ହୋଇଥାଇପାରେ ।  ସୁତରାଂ ଗୁରୁକୃପା ଓ ଦୈବୀକୃପା ହିଁ ପ୍ରତିଭାର ହେତୁ । ନଚେତ୍ ଜଣେ ଆଦିବାସୀର ଏ ସାମର୍ଥ୍ୟ ଆସିବ କାହୁଁ ? ଏ ରକମର ଅଦ୍‌ଭୁତ ମାନସିକତା ଭୀମଭୋଇଙ୍କ '*ଛ'ଖଣ୍ଡ ହାଡ, ବୁନ୍ଦାଏ ରୁଧିର, ଫୁଟେ ମାଉଁସ*ର ଜୀବନକୁ କିମ୍ବଦନ୍ତୀର ଅସରନ୍ତି ପ୍ରହେଳିକାରେ ପରିଣତ କରିଛି । ତାଙ୍କ ଜୀବନକାଳ ମଧ୍ୟରେ ହିଁ ସେ କିମ୍ବଦନ୍ତୀରେ ପରିଣତ ହୋଇସାରିଥିଲେ । କେବେ ତାଙ୍କ କବିତାର ପ୍ରଶଂସା, ପୁଣି କେବେ ତାଙ୍କ ଚରିତ୍ର ସଂହାର । ଆଶ୍ଚର୍ଯ୍ୟଜନକ ଭାବରେ ଏସବୁ ରିପୋର୍ଟ ପ୍ରକାଶିତ ହେଉଥିଲା- ତତ୍କାଳୀନ, 'ଉତ୍କଳ ଦୀପିକା'ରେ । କେଉଁ ସୂତ୍ରରୁ ଏ ଖବର ସବୁ ଆସୁଥିଲା ସେ ସମ୍ପର୍କରେ ଦୀପିକା ନୀରବ । ଓଡ଼ିଶାର ବହୁ ଶିକ୍ଷିତ ଲୋକେ ଏପରିକି ସାହିତ୍ୟର ବହୁ ବିଶିଷ୍ଟ ବ୍ୟକ୍ତିବିଶେଷ କବିଙ୍କ ଜୀବନ ବିଷୟରେ ମାତ୍ର କେତୋଟି କାହାଣୀ ହିଁ ଜାଣିଥାନ୍ତି । ଅନ୍ଧ, କନ୍ଧ ଏବଂ ସନ୍ଥକବିର କାଗଜ ମୁକୁଟ ପିନ୍ଧେଇ ଆମେ ଭୀମ ଭୋଇଙ୍କୁ ଇତିହାସର ଏକ ଅନ୍ଧାର କୋଣରେ ପକେଇ ରହିଛୁ । ବାସ୍ତବରେ ସେ ଯେ ବହୁବର୍ଣ୍ଣୀ ଜୀବନର ଉଦ୍ଦାମ ଭୋକ୍ତା, ସରଳ ଜୀବନରେ ପ୍ରାଚୁର୍ଯ୍ୟର ଅମିତ ଅଧିକାରୀ ଏକଥା ଖୁବ୍ କମ୍ ଲୋକ ଜାଣନ୍ତି ।

ଭୀମଭୋଇ ବୋଇଲେ, "ମୁହଁରେ ନୁହେଁ ନିଶ ଦାଢ଼ି, ବାଳ,ନୁଖୁରା, ଜଟାମୟ, କଷାୟ ବସ୍ତ୍ର ଦେହରେ, ତାଳପତ୍ରର ଛତାଟିଏ ହାତରେ ଝୁଲାମୁଣିରେ ତାଳପତ୍ର ଖୋଦାଏ, ଲେଖନୀଟିଏ..." । ହେଲେ ଭୀମଭୋଇ ଯେ ଜଣେ ସୁଠାମ-ସୁନ୍ଦର-ରସିକ ପୁରୁଷ, ଏକଥାଟି ହଠାତ୍ ଅବିଶ୍ୱାସ ମନେହୋଇପାରେ ।

ତାଙ୍କର ଗଠନ ବର୍ଣ୍ଣନା କରି 'ଗୁରୁଗୀତା' ନାମକ ଏକ ଅପ୍ରକାଶିତ ଗ୍ରନ୍ଥରେ ହରି ପଣ୍ଡା ଲେଖିଛନ୍ତି:

ଇଶାଳଂ ନୟନଂ ଦ୍ୱୟା ତଡ଼ିତ୍ ପ୍ରଭା ମଣ୍ଡଳଂ
କର୍ପୂରୋ ଧବଳୋ ଗୁରୁ, ଗୁରୁ ଶୁକ୍ଳବର୍ଣ୍ଣ ଯଥା । ।

ହୁଏତ ପରମ ଶିଷ୍ୟ ହରି ପଣ୍ଡା ଗୁରୁ ଭୀମଭୋଇଙ୍କ ରୂପକୁ ଆଳଙ୍କାରିକ ରୂପେ ବର୍ଣ୍ଣନା କରିଥାଇପାରନ୍ତି ବୋଲି ଯୁକ୍ତି ଉପସ୍ଥାପନ କରାଯାଇପାରେ । କିନ୍ତୁ ଖଲିଆପାଲି ଗ୍ରାମର ବୟସ୍କ ଲୋକେ ଏ ବିଷୟରେ ସମର୍ଥନସୂଚକ ମନ୍ତବ୍ୟ ଦେଇଥାନ୍ତି । ଅତ୍ୟନ୍ତ ସୁନ୍ଦର ବପୁ ଓ ବ୍ୟକ୍ତିତ୍ୱର ଅଧିକାରୀ ଭୀମ ଭୋଇଙ୍କ ରାସରସମୟ ଚରିତ୍ର, ଓଡ଼ିଆ ଭାଷା-ସାହିତ୍ୟର ଆଗ୍ରହୀମାନଙ୍କ ପାଇଁ ଏକ ଅଷ୍ଟମ ଆଶ୍ଚର୍ଯ୍ୟ ମନେହୋଇପାରେ । ସନ୍ଥକବି ଯେ, ଜଣେ ସମର୍ଥ ଗୃହସ୍ଥ, ସ୍ନେହୀ ଓ ଦାୟିତ୍ୱବାନ୍ ପିତା, ରସିକ, ଆଧ୍ୟାତ୍ମବେତ୍ତା ଓ ତରୁଣୀ ମେଳରେ କବିତା ରଚନା କରିଥିବା କବି, ଏକଥା ଦିବାଲୋକ ପରି ସତ୍ୟ ।

ସେ ଜାତିରେ କନ୍ଧ । କନ୍ଧତ୍ୱ ତାଙ୍କର ଗରିମା । କୌଣସି ମୁହୂର୍ତ୍ତରେ ବି ସେ ନିଜକୁ 'କନ୍ଧ' ପରିଚୟରୁ ମୁକ୍ତ କରିବାର ପ୍ରୟାସ କରିନାହାନ୍ତି । "ଭୀମ ଭୋଇ" ବା "ଭୀମ କନ୍ଧ" ବୋଲାଇବାରେ ତାଙ୍କର କାର୍ପଣ୍ୟ ନଥିଲା । ଆଦିବାସୀର ବପୁବନ୍ତ ବ୍ୟକ୍ତିତ୍ୱରେ ସବୁବେଳେ ଏକ ନିରୀହ ମୂଢ଼ତା ଦେଖୁଥିବା ସମାଜ, ଭୀମ କନ୍ଧଙ୍କର ସ୍ୱତଃସ୍ଫୁର୍ତ୍ତ କବିତ୍ୱକୁ ସହଜରେ ଗ୍ରହଣ କରିପାରିନାହିଁ । ସେତବେଳେଯାଏ ସାହିତ୍ୟ ଥିଲା ଉଚ୍ଚଜାତି ଓ ଉଚ୍ଚ ପଦବୀର ବଚସ୍ୱ । ଶୂଦ୍ରମୁନି ସାରଳ ଦାସ ଆପଣାର 'ଶୂଦ୍ରତ୍ୱ' କୁ 'ମୁନିତ୍ୱ'ରେ ରୂପାନ୍ତିରତ କଲାପରି ଭୀମ ଭୋଇ ମଧ୍ୟ ଆପଣାର 'ବନ୍ଧୁତ୍ୱ'କୁ "ଦିବ୍ୟକବିତ୍ୱ" ରେ ରୂପାନ୍ତରିତ କରିଛନ୍ତି । କନ୍ଧ ମୁଣ୍ଡରେ ଦିବ୍ୟଜ୍ଞାନର ଉଦୟକୁ ସହଜରେ ରକ୍ଷଣଶୀଳ ସମାଜ ଗ୍ରହଣ କରିପାରି ନାହିଁ । ତେଣୁ କିମ୍ବଦନ୍ତୀ ଆଡୁଆଳରେ ତାଙ୍କୁ କିଛି ସମୟ ଲାଗି ଅସ୍ତମିତ କରି ରଖିବାର ଯୋଜନା ହୋଇଛି । ତାଙ୍କ ଜନ୍ମସ୍ଥାନ, ପିତା-ମାତା, କବିତ୍ୱପ୍ରାପ୍ତି ଓ ବିକାଶ, ମହିମା ସ୍ୱାମୀଙ୍କ ସାନ୍ନିଧ୍ୟ ଲାଭ ତଥା ଜୀବନକାଳକୁ ନେଇ ବହୁ ବିଚିତ୍ର କାହାଣୀର ସଂରଚନା ଓ ପ୍ରଚାର ଚାଲିଛି । ଇତିହାସର ଜଣେ ରକ୍ତ, ମାଂସଧାରୀ ମଣିଷ ଅପେକ୍ଷା 'କିମ୍ବଦନ୍ତୀର ସନ୍ଥକବି' ଭାବରେ ସେ ସବିଦିତ । ମଜା କଥା ହେଉଛି ଯେ ତାଙ୍କ ଜୀବନକାଳରେ ତାଙ୍କ ବିଷୟରେ ବହୁ ଉଦ୍ଭଟ କାହାଣୀମାନ ଖବରକାଗଜ ଓ ସରକାରୀ ରିପୋର୍ଟରେ ପ୍ରକାଶିତ ହୋଇଛି । (୫) ଏ

ବିଷୟରେ ଭୀମଭୋଇଙ୍କର କୌଣସି ଅନୁଗାମୀ କିମ୍ବା ମହିମାଧର୍ମର କୌଣସି ସାଧୁସନ୍ଥ ଅବଗତ ନଥିଲାପରି ମନେହୁଏ । ପୁନଶ୍ଚ ସୋନପୁର ଗଡ଼ଜାତର ଖଲିଆପାଲି ଗାଁରେ ଦୀପିକା ପହଞ୍ଚିବାର ସମ୍ଭାବନା ଆଦୌନାହିଁ । ସୁତରାଂ ଓଡ଼ିଶାର ଲୋକମାନସରେ ଭୀମ କନ୍ଧ କାହାଣୀଟିଏ ହୋଇ ରହିଯାଇଛନ୍ତି ।

ତାଙ୍କ ଜନ୍ମସ୍ଥାନ ବୋଲି ଦାବି କରୁଥିବା ଗ୍ରାମ ସମୂହ (ସୋନପୁର ଜିଲ୍ଲାର ଜଟାସିଂଘା ଓ କୁମରକେଲି, ରେଢାଖୋଲ ନିକଟବର୍ତ୍ତୀ ଗ୍ରାମଡିହା-କାଙ୍କଣପଡ଼ା ଓ ମଧୁପୁର) ପରିଦର୍ଶନ କାଳରେ ବହୁ ମନଗଢା କାହାଣୀ ଓ ମନୋଲୋଭା ଢଗଢମାଳି ଆମେ ଶୁଣିଛୁ । ଏ ସମସ୍ତ ଗ୍ରାମର ବାସିନ୍ଦାମାନେ ତାଙ୍କ ଜନ୍ମ ବୃତ୍ତାନ୍ତକୁ ରହସ୍ୟମୟ ଢଙ୍ଗରେ ବର୍ଣ୍ଣନା କରିଛନ୍ତି । କନ୍ଧ ଦନାର ଭୋଇ ଓ ଗୁରୁବାରୀଙ୍କର ସେ ପାଳିତ ସନ୍ତାନ । କିନ୍ତୁ ତାଙ୍କୁ ଗାଁ ମୁଣ୍ଡରେ ତାଳବଣିଆଁରୁ ଗୋଟାଇ ଆଣିଥିବା କଥାଟି ଗୁରୁତ୍ୱପୂର୍ଣ୍ଣ । ସବୁ ଗାଁରେ ସମାନ କାହାଣୀ ଓ ସମାନ ଦିଶୁଥିବା ତାଳବଣିଆଁ ଏବଂ ପୋଖରୀ, ଯାହା ସହିତ ଭୀମ ଭୋଇଙ୍କ ଜନ୍ମର କାଳ୍ପନିକ ସ୍ମୃତିଜଡ଼ିତ । ଏ ସମସ୍ତ କାହାଣୀ ପଛରେ ଲୁଚି ରହିଛି ଏକ ମାରାତ୍ମକ ପ୍ରଶ୍ନବାଚୀ । ମାରାତ୍ମକ, କାରଣ ସାମାଜିକ ଇତିହାସରେ ଉଚ୍ଚଜାତିର ପ୍ରତିଷ୍ଠାକୁ ଅକ୍ଷୁର୍ଣ୍ଣ ରଖିବା ଲାଗି ଏହା ଏକ ବ୍ୟାପକ ଷଡ଼ଯନ୍ତ୍ରର ଅଂଶବିଶେଷ । କନ୍ଧ କବିଟିର କବିତାକୁ ଅବିକଳ ଭାବରେ ଗ୍ରହଣ ନକରି, କବିତ୍ୱ ଅପେକ୍ଷା ବ୍ୟକ୍ତିତ୍ୱରେ ରଙ୍ଗ ବୋଲି ଦେବାର ଯୋଜନା ହୋଇଛି । କନ୍ଧଟିଏ ଏତେ ଉଚ୍ଚାଙ୍ଗ ସାହିତ୍ୟ ସର୍ଜନ କରିପାରିବ ନାହିଁ । କେବେ ସେ ଏକ ବ୍ରାହ୍ମଣୀ ବିଧବାର ପରିତ୍ୟକ୍ତ ସନ୍ତାନ ଏ ସବୁ ପଛରେ ଦୁଇଟି କାରଣ ଥାଇପାରେ । ପ୍ରଥମତଃ ସାହିତ୍ୟ ଯେହେତୁ ଦିବ୍ୟବିଦ୍ୟା, ତେଣୁ ତାହା ନୀଚଜାତିର ସାଧନାର ବାହାରେ । ଦିବ୍ୟତ୍ୱ ତ ସବୁବେଳେ ରାଜା ଓ ବ୍ରାହ୍ମଣର ଅଧିକାର । ସୁତରାଂ ଭୀମଭୋଇ ଜନ୍ମତଃ କଦାଚିତ୍ କନ୍ଧ ହୋଇ ପାରିବେନାହିଁ । ସେ କେବଳ କନ୍ଧଦ୍ୱାରା ଲାଳିତ-ପାଳିତ । ଏ ପ୍ରକାର ଯୁକ୍ତି କରୁଥିବା ଭକ୍ତ ଓ ଆଲୋଚକମାନେ ଭୁଲି ଯାଆନ୍ତି ଯେ ସ୍ୱୟଂ ଭୀମଭୋଇ ନିଜକୁ କନ୍ଧତ୍ୱରେ ଅଭିଷିକ୍ତ କରିଛନ୍ତି । କେବଳ ଗୁରୁ କୃପାରୁ ତାଙ୍କୁ କବିତ୍ୱ ମିଳିଛି ବୋଲି ଯେଉଁମାନେ ଯୁକ୍ତି କରନ୍ତି, ସେମାନଙ୍କ ଲାଗି ଭୀମଙ୍କ ଉତ୍ତର ଶୁଣନ୍ତୁ:

ପିତା ଅଟନ୍ତି ମୋ ଅନାଦି, ଠାକୁର ମାତା ଆଦିଶକ୍ତି ନାରୀ ।
ଦୂତୀ ଯୁଗଳରୁ ଜନମ ହୋଇଛି କବି କୃତ କଳାଧାରି ।।

(ସ୍ତୁତି ଚିନ୍ତାମଣି-୩୦ ବୋଲି)

ଜନ୍ମ ପରିଚୟକୁ ରହସ୍ୟମୟ କରୁଥିବା ପିତା-ମାତା ଯୁଗଳ (ଅନାଦି ଠାକୁର ଓ ଆଦିଶକ୍ତି ନାରୀ) ଙ୍କ କଥା ଭୁଲିଯାଆନ୍ତୁ। କବିକୃତ କଳା ଧରି ତାଙ୍କର ଜନ୍ମ। କବିତ୍ୱ ତାଙ୍କର ଜନ୍ମସିଦ୍ଧ (ନା, ଜନ୍ମ ଜନ୍ମର ସାଧନାସିଦ୍ଧ) ଅଧିକାର। ଦ୍ୱିତୀୟ କାରଣଟି ବ୍ୟକ୍ତିକୁ ମହାପୁରୁଷ କରୁଥିବା ଗୋଟେ ସମାଜ ବ୍ୟବସ୍ଥାର ପାଗଳାମୀ। କବିତାରେ ଦିବ୍ୟ ପଦର ଅବତାରଣା କରୁଥିବା କବିଟିକୁ ଶରଣାଗତ ଶିଷ୍ୟମାନେ "ସାମାନ୍ୟ କନ୍ଧ"ଟିଏ ବୋଲି ଗ୍ରହଣ କରିପାରିବେ ନାହିଁ। ତେଣୁ ତାଙ୍କ ବ୍ୟକ୍ତିତ୍ୱକୁ ଈଶ୍ୱରୀୟ ବିଭୂତିରେ ମଣ୍ଡିତ କରିବାକୁ ହେବ। "କନ୍ଧତ୍ୱ" ରୁ "ଦିବ୍ୟତ୍ୱ" ପ୍ରାପ୍ତି ଭିତରେ "ଅନ୍ଧତ୍ୱ" ଏକ କାଳ୍ପନିକ ସେତୁ ପରି କାମ କରିଛି। ଭୀମ ଭୋଇଙ୍କ ରଚନା ତାଙ୍କ ପରବର୍ତ୍ତୀ ପିଢି ଲୋକଙ୍କର ବୟାନ ତଥା କେତେକ ଐତିହାସିକ ଦଲିଲ୍‌ରୁ ତାଙ୍କ ଅନ୍ଧତ୍ୱ ଯେ "ମିଛ କଥା" ଏକଥା ସ୍ପଷ୍ଟ ହୋଇଯାଏ। ଅନ୍ଧକବି ଭାବରେ ତାଙ୍କୁ କଳ୍ପନାପତ୍ରରେ ଉଲ୍ଲେଖ କରାଯାଇଛି ତା'ହା ଶୁଣାକଥା ଉପରେ ପର୍ଯ୍ୟବେକ୍ଷିତ (ସେ ଜନ୍ମାନ୍ଧ କିନ୍ତୁ ବଡ଼ ବୁଦ୍ଧିବନ୍ତ) ଉତ୍କଳ ଦୀପିକା- ୧୯.୧୧.୧୮୮୧/Bhima Bhoi, a khond, who is said to have been born blind, and afterwards endowed with sight by the Mahima Swami.(ଢେଙ୍କାନାଳ ମ୍ୟାନେଜରଙ୍କ ରିପୋର୍ଟ- ୧୮୮୧)। ବିଶିଷ୍ଟ ଐତିହାସିକ ଏବଂ ଗବେଷକ ବିଜୟଚନ୍ଦ୍ର ମଜୁମ୍‌ଦାର ଭୀମଙ୍କ ଅନ୍ଧତ୍ୱ ବିଷୟରେ ନିଜେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିନାହାନ୍ତି। Sonepur in Sambalpur Tractର ପରିଶିଷ୍ଟ ଏବଂ A typical selections from oriya poetryର ମୁଖବନ୍ଧରେ ଏହା ସ୍ପଷ୍ଟ। ୧୯୩୧ରେ ପ୍ରାଚୀ ସମିତି ଦ୍ୱାରା ପ୍ରକାଶିତ "ବ୍ରହ୍ମ ନିରୂପଣଗୀତା" ର ମୁଖବନ୍ଧ ପରେ ସୋନପୁରର ରାଜା ବୀରମିତ୍ରୋଦୟ ସିଂ ଦେଓଙ୍କର ଏକ କ୍ଷୁଦ୍ର ଲେଖା ପ୍ରକାଶ ପାଇଛି। ତାଙ୍କ କହିବା ଅନୁସାରେ-"ଭୀମ ଭୋଇଙ୍କର ପରବର୍ତ୍ତୀ କେତେକ ଶିଷ୍ୟ ତାହାଙ୍କୁ ଜନ୍ମାନ୍ଧ ବୋଲି ଲେଖିଛନ୍ତି"। ପରନ୍ତୁ ମହାତ୍ମା ଭୀମଭୋଇ ଜନ୍ମାନ୍ଧ ବୋଲି ବିଶ୍ୱାସ ହେଉନାହିଁ। କାରଣ ଭୀମ ଭୋଇ ଗ୍ରାମରେ ଗୋଚାରଣ କାର୍ଯ୍ୟ କରିବା ଦ୍ୱାରା ତାଙ୍କ ବାଲ୍ୟଜୀବନ ଦୁଃଖମୟ ଥିଲା। ଜଣେ ଅନ୍ଧବ୍ୟକ୍ତି ଗୋରୁଚରାରେ ନିର୍ବିବାଦରେ ସମସ୍ତ ଗୋ-ସ୍ୱାମୀମାନଙ୍କ ଜୀବିକା ଚଳାଇବା ଅସମ୍ଭବ। ଅନେକ ସମୟ ପର୍ଯ୍ୟନ୍ତ ତାଙ୍କ ଆଖି ଦିଶୁଥିଲା। ତାଙ୍କ ସମଧର୍ମାବଲମ୍ବୀ ବ୍ୟକ୍ତିଗଣ ଓ ଶିଷ୍ୟ ସମ୍ପ୍ରଦାୟ ଭୀମଭୋଇଙ୍କର ମାହାତ୍ମ୍ୟ ବଢାଇବା ଉଦ୍ଦେଶ୍ୟରେ ଜନ୍ମାନ୍ଧ ବୋଲି ନିଜ ନିଜ ପ୍ରବନ୍ଧରେ ଲେଖିଥିବା

ବିଶ୍ୱାସ ହୁଏ। ଏହି କଥା ଭୀମଭୋଇ ମଧ୍ୟ ନିଜ ରଚନାରେ ପ୍ରକାଶ କରୁଛନ୍ତି। ଯେତେବେଳେ ସେ କାହାରିଠାରୁ କିଛି ଆତ୍ମପ୍ରଶଂସା ଶୁଣନ୍ତି, 'ମୁଁ ଜଣେ ଜନ୍ମାନ୍ଧ ତୁଚ୍ଛ ଜୀବ, ସମସ୍ତ ଗୁରୁକୃପା' ବୋଲି କହିଥାନ୍ତି। ଭୀମ ଭୋଇଙ୍କ କୈଶୋରାବସ୍ଥାରେ କୌଣସି ନେତ୍ରରୋଗ ଦ୍ୱାରା ପରଳ ପଡି ତାହାଙ୍କ ଚକ୍ଷୁ ଦୁଇଟି ଅଦୃଶ୍ୟ ହୋଇଥିବା ଅନେକ ପ୍ରତ୍ୟେକ୍ଷଦର୍ଶୀ କହିଅଛନ୍ତି। ଏପରି ଅବସ୍ଥାରେ ଅନ୍ୟ ପ୍ରମାଣ ସଂଗ୍ରହର ପ୍ରୟୋଜନ ଜଣାପଡୁନାହିଁ। ରାଜା ବୀରା ମିତ୍ରୋଦୟଙ୍କ ଏହି ଲେଖାପରେ ଭୀମଙ୍କ ଅନ୍ଧତ୍ୱ ବିଷୟରେ ସନ୍ଦେହର ଅବକାଶ ରହିବା କଥା ନୁହେଁ। କିନ୍ତୁ ରାଜାଙ୍କ ଲେଖା ଉପରେ ଏକ ଟୀକାରେ ଗ୍ରନ୍ଥ ସଂପାଦନ ରାୟ ବାହାଦୂର ଆର୍ତ୍ତବଲ୍ଲଭ ମହାନ୍ତି ଲେଖିଛନ୍ତି–"ଭୀମ ଅନ୍ୟାନ୍ୟ ଗୋରକ୍ଷକଙ୍କ ସଙ୍ଗରେ ପଶୁପାଳ କାର୍ଯ୍ୟ କରିବା ସମ୍ଭବପର। ଆମ୍ଭେମାନେ ମଧ୍ୟ ଅନ୍ଧବାଳକଙ୍କୁ ଅନ୍ୟାନ୍ୟ ଗୋରକ୍ଷକ ବାଳକଙ୍କ ସଙ୍ଗରେ ଗୋରକ୍ଷା କରିବାର ଦେଖିଅଛୁଁ। ଆବାଲ୍ୟରୁ ଅନ୍ଧଥିବା ବିଷୟରେ ସନ୍ଦେହର ଅବକାଶ ରହିଲାପରି ଜଣାପଡୁଅଛି"। "ଉକ୍ତ ଟୀକା ପ୍ରସ୍ତୁତ କରିବାର ଉଦ୍ଦେଶ୍ୟ ଜଣାପଡୁନାହିଁ। ଯେତେବେଳେ ସୋନପୁର ରାଜା ଭୀମ ଜନ୍ମାନ୍ଧ ନଥିବା କଥା ସ୍ପଷ୍ଟ କରୁଛନ୍ତି; ତା' ଉପରେ ପ୍ରଫେସର ମହାନ୍ତି ଅବିଶ୍ୱାସ କରିବାର କାରଣ କ'ଣ ? ରାଜା ବୀରମିତ୍ରୋଦୟଙ୍କ ସହ ଭୀମଭୋଇଙ୍କ ପରମ ଶିଷ୍ୟ ହରି ପଣ୍ଡା ଓ ବସୁ ପଣ୍ଡାଙ୍କ ସଂପର୍କ ଖୁବ୍ ମଧୁର ଥିଲା ଏବଂ ଶିଷ୍ୟ ହରି ପଣ୍ଡା ଓ ବସୁ ପଣ୍ଡାଙ୍କ ସଂପର୍କ ଖୁବ୍ ମଧୁର ଥିଲା ଏବଂ ସେମାନେ ରାଜା ଉଆସକୁ ଯା'ଆସ କରୁଥିଲେ"। (୯) ସୁତରାଂ ରାଜାଙ୍କ କଥାରେ ଗୁରୁତ୍ୱ ଯଥେଷ୍ଟ। କଟକରେ ରହି ପ୍ରଫେସର ମହାନ୍ତି ଯେଉଁ ସନ୍ଦେହର ପ୍ରଶ୍ନ ଚିହ୍ନ ସେଦିନ ଅଙ୍କନ କରିଥିଲେ ଆଜିଯାଏ ସେ ସନ୍ଦେହ ବଳବତ୍ତର ରହିଛି ଓ ଇତିହାସକୁ ବାଟବଣା ରହିଛି। ସୋନପୁର ରାଜାଙ୍କ ବକ୍ତବ୍ୟରୁ ସ୍ପଷ୍ଟ ହୋଇଯାଇଚି ଯେ, ଭୀମଭୋଇଙ୍କ ମାହାତ୍ମ୍ୟ ବଢାଇବାକୁ ଯାଇ ତାଙ୍କର ଶିଷ୍ୟମାନେ ତାଙ୍କୁ ଜନ୍ମାନ୍ଧ ବୋଲି ପ୍ରଚାର କରିଛନ୍ତି। ତେଣୁ ଅନ୍ଧତ୍ୱ ଯେ କନ୍ଧତ୍ୱରୁ ଦିବ୍ୟତ୍ୱ ଆଡ଼କୁ ଗତିକରିବାର ସିଡ଼ି ଏକଥା ସ୍ପଷ୍ଟ ହୋଇଯାଉଛି। ଅବଶ୍ୟ ଭାରତୀୟ ପରମ୍ପରାରେ ଏକଥା ନୂଆ ନୁହେଁ। ଅନ୍ୟତମ ମହାନ୍ ଭକ୍ତ କବି ସୁର ଦାସ ମଧ୍ୟ ଅନ୍ଧ ଥିଲେ। ତାଙ୍କୁ ଅନ୍ଧ ଭାବରେ ତାଙ୍କର ଭକ୍ତମାନେ ଚିତ୍ରଣ କରିଥିଲେ। (୧୦) କନ୍ଧ କବି ଭୀମଭୋଇଙ୍କ ଅନ୍ଧକବି ଭାବରେ ବର୍ଣ୍ଣନା କରିବା କେବଳ ଭାକ୍ତିକ ଅତିରଞ୍ଜନ ବ୍ୟତୀତ ଆଉ କିଛି ନୁହେଁ।

**ଇତିହାସର ଅନ୍ୟାୟ :**

ମହିମାଧର୍ମର ପ୍ରତିଷ୍ଠାତା ଯଦିଓ ମହିମା ସ୍ୱାମୀ ପ୍ରାରମ୍ଭିକ କାଳରେ ଅନେକେ ଭୀମଭୋଇଙ୍କୁ ଏହି ଧର୍ମର ସ୍ରଷ୍ଟା ବୋଲି ଉଲ୍ଲେଖ କରିଛନ୍ତି । ବିଶେଷ କରି ନଗେନ୍ଦ୍ର ନାଥ ବସୁଙ୍କ Modern Buddhism and its followers in Orissa (1911) ପୁସ୍ତକରେ ଭୀମଭୋଇଙ୍କୁ ମହିମାଧର୍ମର ପ୍ରବର୍ତ୍ତକ ଭାବରେ ଗ୍ରହଣ କରାଯାଇଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ବସୁଙ୍କ ମତକୁ ଯଥାର୍ଥରେ ଖଣ୍ଡନ କରାଯାଇଛି । ମହିମାସ୍ୱାମୀଙ୍କର ମହିମା ବର୍ଣ୍ଣନା କରିବାକୁ ଯାଇ ଭୀମଭୋଇଙ୍କ ପ୍ରତିଭା ଓ ପ୍ରତିଷ୍ଠାକୁ କ୍ଷୁର୍ଣ୍ଣ କରିବା ଏକରକମ ଐତିହାସିକ କର୍ତ୍ତବ୍ୟ ହୋଇଛି- ଯାହା ବୌଦ୍ଧିକ ଜଗତର ଶ୍ରେଷ୍ଠତମ ଅପରାଧ । ମହିମାଧର୍ମର ଆଚାର, ଆଚରଣ, ବାର୍ତ୍ତା, ନୀତି ଓ ଦର୍ଶନ ସବୁକିଛିକୁ ଲିପିବଦ୍ଧ କରିଛନ୍ତି ଭୀମଭୋଇ । ଊନବିଂଶ ଶତାବ୍ଦୀରେ ଭାରତରେ ଯେଉଁ ନବ ଜାଗରଣର ଧାରା ଆରମ୍ଭ ହୋଇଥିଲା, ସେହି କ୍ରମରେ ମହିମାଧର୍ମକୁ ପରିଚିହ୍ନିତ କରାଯାଇପାରିବ । ମହିମାଧର୍ମରେ ଊନବିଂଶ ଶତାବ୍ଦୀର ଧାର୍ମିକ ପୁନର୍ଜାଗରଣର ସମସ୍ତ ଗୁଣ ଓ ଲକ୍ଷଣ ରହିଥିଲେ ହେଁ ଏହା ଅନ୍ୟ ସମସ୍ତ ଆନ୍ଦୋଳନଠାରୁ ମୌଳିକ ରୂପେ ଅଲଗା ଥିଲା । ଆର୍ଯ୍ୟସମାଜ ବ୍ରାହ୍ମସମାଜ ଇତ୍ୟାଦି ଆନ୍ଦୋଳନରେ ପରମ୍ପରାରୁ ଭିନ୍ନ ଏକ ଆଧୁନିକ ମୂଲ୍ୟବୋଧର ସ୍ୱର ରହିଥିଲା । ବେଦ, ବେଦାନ୍ତ, ଶାସ୍ତ୍ର ପୁରାଣାଦିର ଆଧୁନିକ, ସ୍ଥଳବିଶେଷରେ ଅଣ-ପାରମ୍ପରିକ ବ୍ୟାଖ୍ୟା କରିବା ଥିଲା ପୂର୍ବୋକ୍ତ ଆନ୍ଦୋଳନମାନଙ୍କର ମୂଳ ଉଦ୍ଦେଶ୍ୟ । ହେଲେ ମହିମାଧର୍ମ ଏକ ପ୍ରାଚୀନ ଓଡ଼ିଆ ପରମ୍ପରାର ନବୀକରଣ କରିଥିଲେ । ତେଣୁ ପ୍ରଫେସର ଆନ୍‌ସର୍‌ଲଟ୍ ଏସ୍କମାନ୍ ଏହାକୁ An anti-traditional Movement within tradition ବୋଲି କହିଛନ୍ତି । ମହିମାଧର୍ମର ପରମ୍ପରା ସହ ସଂପର୍କ ଥିଲା ବିରୋଧାଭାଷାର ଏକ ଜଟିଳ ସମୀକରଣ । ମୂର୍ତ୍ତିପୂଜା, ଜାତିପ୍ରଥା, କର୍ମକାଣ୍ଡ, ଅବତାରବାଦ ଇତ୍ୟାଦି ପାରମ୍ପରିକ ରୂଢ଼ି ବିରୁଦ୍ଧରେ ସଂଘର୍ଷ ଥିଲା ମହିମାଧର୍ମର ମୂଳଭିତ୍ତି । କିନ୍ତୁ ପରମ୍ପରାର ଅଙ୍ଗ-ପ୍ରତ୍ୟଙ୍ଗକୁ ନିଜ ଢଙ୍ଗରେ ସଜେଇ ଏକ ନୂତନ ସମୀକରଣ ପ୍ରସ୍ତୁତ କରିଥିଲେ ମହିମାସ୍ୱାମୀ । ତେବେ ମହିମାସ୍ୱାମୀଙ୍କ ମୁଖପାତ୍ର ଥିଲେ ଭୀମଭୋଇ । ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଓଡିଶାର ନିର୍ଗୁଣ-ନିରାକାର ପରମ୍ପରାର ଏକ ଆଧୁନିକ ରୂପରେଖ ପ୍ରସ୍ତୁତ କଲେ ଭୀମଭୋଇ, ତାଙ୍କର ରାଶିରାଶି ଭଜନ, ଜଣାଣ, ଚଉତିଶା ଓ ସର୍ବୋପରି ସ୍ତୁତିଚିନ୍ତାମଣିରେ ।

ଓଡ଼ିଶାର ସାମାଜିକ ଇତିହାସରେ ମହିମାଧର୍ମର ପ୍ରତିଷ୍ଠା ଏବଂ ଭୀମଭୋଇଙ୍କ କବିତା ରଚନା ଏକ ଅଭିନବ ଘଟଣା ଥିଲା। ଆମ ଓଡ଼ିଆ ସାହିତ୍ୟର ଇତିହାସକାରମାନେ ଏହି ସମୟଖଣ୍ଡର ଯଥେଷ୍ଟ ଆଲୋଚନା କରିଥିବାବେଳେ ଉଭୟ ମହିମା ଧର୍ମ ଓ ଭୀମ ଭୋଇଙ୍କୁ ସତର୍କତାର ସହିତ ଆଡେଇ ଯାଇଛନ୍ତି।

୧୮୫୦ ମସିହାକୁ ଆଧୁନିକ ଓଡ଼ିଆ ସାହିତ୍ୟର ଉଷାକାଳ ଭାବରେ ପ୍ରାୟ ସମସ୍ତ ଆଲୋଚକ ପରିଚିହ୍ନିତ କରିଛନ୍ତି। ଭୀମଭୋଇଙ୍କ ଜନ୍ମ ସମୟ ସେହି ୧୮୫୦ କିମ୍ବା-ପାଖରେ। କାରଣ ତାଙ୍କ ଜନ୍ମ ସମୟ ଏଯାଏଁ ସଠିକ୍ ଭାବରେ ନିର୍ଣ୍ଣିତ ହୋଇନାହିଁ କି ହୋଇପାରିବ ନାହିଁ ମଧ୍ୟ। ୧୮୫୦ ରୁ ୧୮୯୫ ତାଙ୍କର ଜୀବନକାଳ। ରାଧାନାଥ ରାୟ (୧୮୪୮-୧୯୦୮), ମଧୁ ସୂଦନ ରାଓ (୧୮୫୩-୧୯୧୨), ଗଙ୍ଗାଧର ମେହେର (୧୮୬୨-୧୯୨୪), ଫକୀର ମୋହନ ସେନାପତି (୧୮୪୩-୧୯୧୮)ମାନଙ୍କର ସମସାମୟିକ କବି ଭୀମଭୋଇଙ୍କୁ ଆମର ବିଜ୍ଞ ଐତିହାସିକମାନେ ରୀତିଯୁଗରେ ସ୍ଥାନିତ କରିବାର କାରଣଟି କ'ଣ? ଏପରିକି ଓଡ଼ିଶାର ବିଶିଷ୍ଟ ଚିନ୍ତାନାୟକ, ପ୍ରଫେସର ଚିତ୍ତରଞ୍ଜନ ଦାସ ଲେଖିଲେ "ଭୀମ ଭୋଇଙ୍କର ସମୟ ହେଉଛି ଓଡ଼ିଆ ସାହିତ୍ୟର ଭଞ୍ଜଯୁଗ" । ପୁନଶ୍ଚ ଶ୍ରୀଦାସ ତାଙ୍କର ଅନ୍ୟ ଏକ ପୁସ୍ତକରେ ଓଡ଼ିଆ ସାମାଜିକ-ସାଂସ୍କୃତିକ ଭିତ୍ତିଭୂମିର ଆଲୋଚନା କାଳରେ ଭୀମଭୋଇଙ୍କୁ ରୀତି ଯୁଗର ଶେଷ ଭାଗରେ ସ୍ଥାନିତ କରି ଠିକ୍ ପରପୃଷ୍ଠାରେ "ଆଧୁନିକ ସାହିତ୍ୟର ପ୍ରଥମ ଶହେବର୍ଷ (୧୮୫୦-୧୯୫୦)"ର ଆଲୋଚନା କରିଛନ୍ତି। ଏପ୍ରକାର ବିଚାର ବିଭ୍ରାଟର କି କାରଣ ଥାଇପାରେ ? ରାଧାନାଥଙ୍କଠୁ ବୟସରଙ୍କ କନିଷ୍ଠ ଏବଂ ତାଙ୍କ ପୂର୍ବରୁ ମୃତ୍ୟୁବରଣ କରିଥିବା ଭୀମଭୋଇଙ୍କୁ ରୀତି ଯୁଗରେ ସ୍ଥାନିତ କରିବା ଏକ ପ୍ରକାର ଐତିହାସିକ ଉପହାସ (a historical joke), ଡଃ. ମାୟାଧର ମାନସିଂହଙ୍କ ମତରେ ୧୮୬୭ ବେଳକୁ ଓଡ଼ିଆ ଭାଷାର ଏକ ନବ ଯୁଗର ସୂତ୍ରପାତ ହୋଇଥିଲା। କିନ୍ତୁ ଏହି ସମୟରେ କବିତା ରଚନା ଆରମ୍ଭ କରିଥିବା ଭୀମଭୋଇଙ୍କୁ ସେ ବୈଷ୍ଣବ ଗୀତିକାରଗଣଙ୍କ ସହ ସାମିଲ କରିଛନ୍ତି। ଚିତ୍ତ ଦାସ ବା ମାୟାଧର ମାନସିଂ କେବଳ ନୁହନ୍ତି, ପ୍ରାୟ ସମସ୍ତ ଆଲୋଚକ ଏବଂ ଐତିହାସିକ ଭୀମଙ୍କ ପ୍ରତି ଉଦାସୀନ ମନୋଭାବ ପୋଷଣ କରିଛନ୍ତି। ଗୋଟେପଟେ ବ୍ରିଟିଶ୍ ରାଜତ୍ୱ, ଅନ୍ୟପଟେ ଗଡ଼ଜାତୀ ସାମନ୍ତ ରାଜାମାନଙ୍କର ଅନ୍ଧାରୀ ଶାସନ। ଏହିପରି ଓଡ଼ିଶାର ରାହୁ କାଳରେ

ଭୀମ ଭୋଇଙ୍କ କବିତା "ଓଡ଼ିଶାର ସର୍ବତ୍ର ବିଶେଷକରି ଗ୍ରାମାଞ୍ଚଳରେ ସହସ୍ର ସହସ୍ର ଶ୍ରୋତାଙ୍କୁ ମୁଗ୍ଧ କରି ରଖୁଥିଲେ"। (୧୫) ତାଳପତ୍ର ଖେଦାରେ ଶ୍ରୁତଲିଖନ ମାଧ୍ୟମରେ ଲିଖିତ ଏସବୁ କବିତାରେ ତୀବ୍ର ଭାବସଂଚାରୀଗୁଣ ସାରା ରାଜ୍ୟର ସାଧାରଣ ଲୋକ ମାନସରେ ଭୀମଭୋଇଙ୍କୁ "କବି" ଭାବରେ ପ୍ରତିଷ୍ଠିତ କରିଥିଲା। ରେଢାଖୋଲ-ସୋନପୁର ଗଡଜାତରେ ରଚିତ ଭୀମଭୋଇଙ୍କ ଭଜନ ସେ ସମୟରେ ଉପକୂଳ ଓଡ଼ିଶାର ବିଭିନ୍ନ ମହିମା ମେଳାମାନଙ୍କରେ ଗାନ କରାଯାଉଥିଲା। ୧୮୬୫ ରେ ଖୁଣ୍ଟୁଣିଠାରେ ମହିମା ବାଲ୍ୟଲୀଳା ଉତ୍ସବରେ ତାଙ୍କ ରଚିତ ପ୍ରଥମ ଭଜନ ଗାନ କରାଯାଇଥିଲା। ପାଣ୍ଡୁଲିପି ଆକାରରେ ରହିଥିବା ଏ ସବୁ କବିତାର ଲୋକପ୍ରିୟତା କଥା ଚିନ୍ତା କଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ।

ଆଲୋଚ୍ୟ ସମୟ ଖଣ୍ଡ ହେଉଛି ଓଡ଼ିଆ ସାହିତ୍ୟ ଆଧୁନିକ ଯୁଗର ଶୁଭାରମ୍ଭ। ରାଧାନାଥଙ୍କ ସେନାପତିତ୍ୱରେ ଆରମ୍ଭ ହୋଇଥିବା ଏ ସମୟର କବିତାର ଗୁଣ-ଲକ୍ଷଣ ନିର୍ଦ୍ଦେଶକରି ଆଲୋଚକମାନେ କହିଛନ୍ତି ଯେ, ଆଧୁନିକ କବିର ଦାୟିତ୍ୱ ତ୍ରିବିଧ-ବିବେକ ପ୍ରତି ଦାୟିତ୍ୱ, ପାଠକ ପ୍ରତି ଦାୟିତ୍ୱ ଓ ସମାଜ ପ୍ରତି ଦାୟିତ୍ୱ... ସବୁ କବିତାରେ ମାତ୍ର ଦୁଇଟି କଥା ଦେଖିବାକୁ ମିଳେ ମଣିଷ ଓ କବିତାର ପରିବେଶ। ଏ ଦୃଷ୍ଟିରୁ ବିଚାର କଲେ ଭୀମଙ୍କୁ ଆଧୁନିକ କବିତାର ଅନ୍ୟତମ ଦିଗପାଳ ବୋଲି ଅନାୟାସରେ ଚିହ୍ନଟ କରାଯାଇପାରିବ। ଧର୍ମ ପ୍ରଚାର ତାଙ୍କ କବିତାର ଉଦ୍ଦେଶ୍ୟ ହୋଇଥିଲେ ହେଁ, ଧାର୍ମିକ ବିଧି ବିଧାନର ବନ୍ଧନର ବନ୍ଧନରୁ ସେ ମୁକ୍ତ। ଏହି ସମୟଖଣ୍ଡ ମଧ୍ୟରେ ହିଁ ଭୀମଭୋଇଙ୍କର ସମସ୍ତ ଭଜନ, ଚଉତିଶା, ସ୍ତୁତି ଚିନ୍ତାମଣି, ନିର୍ବେଦ ସାଧନ ଇତ୍ୟାଦି ଗ୍ରନ୍ଥ ରଚିତ, ଅବଶ୍ୟ ତାଙ୍କ ରଚନା ଗୁଡ଼ିକର ସଠିକ୍ ସମୟ ନିର୍ଣ୍ଣୟ କରିବା କଷ୍ଟକର। ତେବେ ୧୮୮୬ (୧୮୮୫+୧୬ ବର୍ଷ)କୁ ତାଙ୍କ ରଚନା କାଳରେ ଆରମ୍ଭ ବୋଲି ଗଣାଯାଇପାରେ। ଆଧୁନିକ ଯୁଗର କବି ଓ ଭୀମ ଭୋଇଙ୍କ ରଚନାରେ ମୌଳିକ ତଫାତ୍ ରହିବା ସ୍ୱଭାବିକ। ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବ, ନବଜାଗରଣର ହାୱା ଏବଂ ଉପନିବେଶବାଦୀ ରୁଚିବୋଧ ଥିଲା ଆଧୁନିକ ସାହିତ୍ୟର ମୂଳଭିତ୍ତି। ଆହରଣ, ଅନୁକରଣ, ଅନୁବାଦ ଓ ଅନୁସୃଜନ ଥିଲା ଏ ଯୁଗର ମୁଖ୍ୟ ବିଭାଗ। ରାଧାନାଥଙ୍କର ପ୍ରଭାବ ଓ ପ୍ରତିଷ୍ଠା (ଦରକାରୀ-ଅମଲାତାନ୍ତ୍ରିକ କବି) ତାଙ୍କୁ 'ଯୁଗସ୍ରଷ୍ଟା'ର ଗୌରବ ପ୍ରଦାନ କରିଛି। ରାଜାନୁଗତ (ମୟୁରଭଞ୍ଜ ଓ

ବାମଣ୍ଡା ରାଜାଙ୍କ ଯଶଗାନ)କ'ଣ ଆଧୁନିକତା ? କିନ୍ତୁ ସାଲିସ୍ କରୁଥିବା ଦଳେ ବୁଦ୍ଧିଜୀବୀଙ୍କ ରଚନାରେ ଆଧୁନିକତାର ସନ୍ଧାନ କରି ଜଣେ ଦୁର୍ଦ୍ଧର୍ଷ ବେସାଲିସ ସଂଗ୍ରାମୀ କବିର ଭୂମିକାକୁ ଖର୍ବ କରିବାର ପ୍ରୟାସ ହିଁ ମାରାତ୍ମକ। ଭୀମଭୋଇଙ୍କ କବିତାର କେତୋଟି ପଙ୍‌କ୍ତି ଏଠି ଉଦ୍ଧାର କରୁଛି-

"କାହାରି ଅଧୀନେ ନ ଥାଉଟି ଆମ୍ଭେ ଶ୍ରୀଗୁରୁ ଅଧୀନେ ଥାଉ
କାହାରି ଆଜ୍ଞା ଶିର ପରେ ନ ବହୁ ଗୁରୁ ଆଜ୍ଞା ହେଲେ ଯାଉ।
ରାଜାର ପରଜା ନୋହୁଁ ସିନା ଆମ୍ଭେ ନୋହୁ ସାହୁର ଖାତକ।
ଯହିଁ ଗୁରୁ ନେବେ ତହିଁ ଯାଉ ଆମ୍ଭେ କେ ଅବା କରୁ ଅଟକ।
(ସ୍ତୁତିଚିନ୍ତାମଣି, ୬୪ ବୋଲି)

କାହାକୁ ହିଂସା କପଟ ନକରଇ ଅହଂକାର ଛନ୍ଦ ଭେଦ
ରାଜା ପରଜା ସମସ୍ତେ ମୋହ ସଙ୍ଗେ ଲାଗି ବସିଛନ୍ତି ବାଦ।"
(ସ୍ତୁତିଚିନ୍ତାମଣି, ୬୨ ବୋଲି)

ମୂଳତଃ ଭୀମଭୋଇ ସତ୍ତାଦ୍ରୋହୀ କବି। ଧରାତଳର କୌଣସି ଅନ୍ୟାୟ ଅନୀତିକୁ ବରଦାସ୍ତ କରିବା ଲୋକ ସେ ନୁହଁନ୍ତି ରାଜା ତ ରାଜା, ଦରକାର ପଡ଼ିଲେ ଈଶ୍ୱରଙ୍କୁ କାଠଗଡାରେ ଠିଆ କରେଇ ଗାଳି ଦେବାର ସାମର୍ଥ୍ୟ ଥିଲା କନ୍ଧ କବିଙ୍କର। ତାଙ୍କୁ ଆଧୁନିକ କବିତାର ଧାରାରେ ସାମିଲ୍ କରାଗଲା ନାହିଁ, ତାହା ଆମର ଦୁର୍ଭାଗ୍ୟ। କିନ୍ତୁ, ଆଧୁନିକ କାବ୍ୟ ଆନ୍ଦୋଳନର ସମାନ୍ତରାଳରେ ସେ ଯେ ଏକ ପରାକ୍ରମୀ ସ୍ରୋତ, ଏକଥାକୁ ସ୍ୱୀକାର ନକରି ତାଙ୍କୁ "ଭଞ୍ଜ ଯୁଗର କବି" ବୋଲି କହିବା ଅତ୍ୟନ୍ତ ଲଜ୍ଜାକର ଓ ହାସ୍ୟାସ୍ପଦ।

**ଶବ୍ଦରେ ଅସ୍ତ୍ର ଓ ଔଷଧି ନିର୍ମାଣ କଳା:**

ଭୀମଭୋଇଙ୍କ କବିତାକୁ ଐତିହାସିକମାନେ ପ୍ରାଚୀନ ବା ଆଧୁନିକ ଯେଉଁ ନାମରେ ଡାକିଲେ ବି ସେ ସର୍ବକାଳୀନ ଓ ସର୍ବାଧୁନିକ। ନିଜ ଜୀବନ, ସମୟ, ସମାଜ, ସଂସ୍କୃତି ଓ ପରମ୍ପରାର ସ୍ୱତଃସ୍ଫୂର୍ତ୍ତ ଉଚ୍ଚାରଣ, ତାଙ୍କୁ ଅମର କରି ରଖିଛି ଓ ରଖିଥିବେ। ବୋଧହୁଏ ଆଧୁନିକ କାଳର ସେ ଏକମାତ୍ର କବି ଯାହାଙ୍କର ଜୀବନକାଳ ମଧ୍ୟରେ ଧାଡ଼ିଏ ବି କବିତା ମୁଦ୍ରିତ ହୋଇପାରି ନାହିଁ। ଅଥଚ ଜଗନ୍ନାଥ ଦାସଙ୍କ ଭାଗବତ ପରେ, ଭୀମ ଭୋଇଙ୍କ କବିତା ହେଉଛି ଓଡ଼ିଶାର ଲୋକ ସାଧାରଣଙ୍କର

ଅତିପ୍ରିୟ। ସୌଭାଗ୍ୟକ୍ରମେ ତାଙ୍କ ମୃତ୍ୟୁର ଅନେକ ପରେ ଯାଇ ତାଙ୍କ କବିତା ମୁଦ୍ରିତ ହେଲା ଓ ବୌଦ୍ଧିକ ଆଲୋଚନାର ପରିସରଭୁକ୍ତ ହେଲା। କବିତାର ସ୍ୱଷ୍ଟୋକ୍ତି, ଧରାତଳର ମାଟିଆ ଅନୁଭବ, ଜୀବନରେ ଭୋଗିଥିବା ଦଂଶନର ଜ୍ୱାଳାକୁ ପରିପ୍ରକାଶ କରିପାରିବାର ଅତୁଳନୀୟ ସାମର୍ଥ୍ୟ ଏବଂ ମାଟି ଓ ମଣିଷ ଲାଗି କରୁଣା ତାଙ୍କ କବିତାକୁ ଶାଣିତ କରିଛି। ବୋଧେ ଓଡ଼ିଶାର ସେ ଏକମାତ୍ର କବି, ଯାହାଙ୍କ ଜୀବନ ଓ କବିତା ଭିତରେ କିଛି ତଫାତ୍ ନଥିଲା। କେବଳ କବିତା ରଚନା କରି ଯଶଭୋଗ ଲାଳସା ତାଙ୍କର ନଥିଲା। ନିଜକୁ କବି ବୋଲାଇବାରେ ତାଙ୍କର ବିମଳ ଆନନ୍ଦ। ମହିମାଧର୍ମର ଜଣେ ନିଷ୍ଠାପର ସାଧକ ଏବଂ ପ୍ରଚାରକ ଭାବରେ ତାଙ୍କର ଅଙ୍ଗୀକାରବଦ୍ଧତା ସ୍ୱାଭାବିକ। ହେଲେ ସେ ଅଙ୍ଗୀକାର ଯେ କବିତାରେ ଅବିକଳ ପ୍ରତିଭାତ ହେବ, ଏକଥା ଜଣେ ସାଧାରଣ କବିର କଳ୍ପନା ବାହାରେ । ଜୀବନକୁ ଜଳେଇ ଜଳେଇ, ସେହି ଅଗ୍ନିରେ ଶବ୍ଦରେ ନିର୍ମାଣ କରିଛନ୍ତି ଭୀମ ଭୋଇ। ତେଣୁ ତାଙ୍କ ଜୀବନ ଓ କବିତା ଅସହାୟ ହାତରେ ଆତ୍ମରକ୍ଷାର ଅସ୍ତ୍ର ଧରେଇ ଦେଇଛି। ଧାର୍ମିକ ରୂଢ଼ିର ଖଣ୍ଡନ ଲାଗି ସେ ସଜ କରିଛନ୍ତି ଶ୍ୱାସ ଓ ଶବ୍ଦ। ନିମ୍ନରେ ତାଙ୍କ କବିତା ଓ ଜୀବନର କେତୋଟି ବିଲକ୍ଷଣ ଦିଗ ବିଷୟରେ ସୂଚନା ଦେଉଛି।

୧. କବିତାରେ ପରମ୍ପରାର ବିଘଟନ ଏବଂ ପୌରାଣିକ କଥାବସ୍ତୁର ନବ ନିର୍ମାଣ। ଭୀମ ଭୋଇ କବି ଓ ପ୍ରଚାରକ ଉଭୟ। ମହିମା ଧର୍ମର ଅଣାକାର ଈଶ୍ୱର ତତ୍ତ୍ୱର ପ୍ରଚାର ଲାଗି ସେ ପୌରାଣିକ କଥାବସ୍ତୁର ନବନିର୍ମାଣ କରିଥିଲେ। "ନିର୍ବେଦସାଧନ"ରେ ଓଡ଼ିଶାର ରାଷ୍ଟ୍ରଦେବତା ଜଗନ୍ନାଥଙ୍କୁ ନୀଳକନ୍ଦରରୁ ବୌଦ୍ଧର ବଲାସିଂଗା ଗାଁକୁ ହକାରି ଆଣିଛନ୍ତି କବି। ମହିମାସ୍ୱାମୀଙ୍କ ଶିଷ୍ୟରୂପେ ଜଗନ୍ନାଥ ଗୋବିନ୍ଦ ଦାସ ବାବାଙ୍କ ରୂପ ପରିଗ୍ରହ କରିଛନ୍ତି। ଜଗନ୍ନାଥଙ୍କ ପ୍ରତିଷ୍ଠାକୁ ଆହ୍ୱାନ କରିବାର ସାମର୍ଥ୍ୟ ଏକ ବିରାଟ ସାହସିକତାର ବିଷୟ। 'ଆଦି-ଅନ୍ତ'ରେ ପୌରାଣିକ ଚିତ୍ର ଓ ତତ୍ତ୍ୱର ଭିନ୍ନ ବ୍ୟାଖ୍ୟା ତଥା 'ଶ୍ରୁତିନିଷେଧଗୀତା'ରେ ପ୍ରଥା ଓ ପରମ୍ପରାର ବିଘଟନ ଘଟାଇ ତା'ର ନୂତନ ରୂପ ସଂଚରିତ ହୋଇଛି। ଏ ବିଷୟକୁ ନେଇ ଭିନ୍ନ ସ୍ଥାନ ଭିନ୍ନ ସମୟରେ ବିସ୍ତୃତ ଆଲୋଚନ କରାଯାଇପାରେ। ତେବେ ଓଡ଼ିଆ କବିତାର ପରମ୍ପରାରେ ଏହା ଏକ ବିରଳ ଦୃଶ୍ୟପଟ।

୨. କବିତାରେ ଅସ୍ତ୍ରର ଶାଣ । ଭୀମଭୋଇଙ୍କ ଯାଏ କବିତାରେ ବିଦ୍ରୋହର ପାଦଚିହ୍ନ ଥିଲା ଅସ୍ପଷ୍ଟ । ଦୀନକୃଷ୍ଣଙ୍କ ପରି କବି କବିଦ୍ୱର ସ୍ୱାଭିମାନ ଏବଂ ବ୍ୟାଜସ୍ତୁତି ମାଧ୍ୟମରେ ବଳଦେବ ରଥଙ୍କ ପରି କବିମାନେ ଈଶ୍ୱରୀୟ ସତ୍ତାକୁ ଆହ୍ୱାନ କରିବାର ସାହସ କରିଥିଲେ । ଭୀମଭୋଇ କିନ୍ତୁ କବିତାରେ ଶବ୍ଦକୁ ଅସ୍ତ୍ରରେ ପରିଣତ କରିଦେଲେ । ଈଶ୍ୱରଙ୍କୁ ସିଧାସଳଖ ସାମନା କରି "ଭକ୍ତ ପ୍ରାଣଖିଆ ହରି" ବୋଲି ସମ୍ବୋଧନ କରିବାର ସାହସ ଆଉ କେଉଁ କବିର ଥିଲା ?

ନବଖଣ୍ଡ ମହୀ ଥାଳୀ ପ୍ରାୟ ହୋଇ ହେଜିଲେ ମନକୁ ଆସେ
ଏ ମୋର ନେତ୍ରକୁ ଛପ୍ପନ କୋଟି ଜୀବ ତିରଣ ପରାଏ ଦିଶେ ।
ଏକା ଦିବସରେ କ୍ଷଣିକ ଭିତରେ ଦ୍ୟନ୍ତି ପୃଥ୍ୱୀ ଲେଉଟାଇ
ଦାନ୍ତ କାମୁଡ଼ି କିସ ବୁଦ୍ଧି କରିବି ଶ୍ରୀ ଗୁରୁଙ୍କୁ ଆଜ୍ଞା ନାହିଁ ।
କହୁଛି ସଂସାରେ ସତେଶ ଅଙ୍କରେ ସାଧନ ନୋହିଲେ ପୃଥ୍ୱୀ
ନିଷ୍ଠୁର ବଚନ ସାଧୁ ସୁଜ୍ଞଜନ ଶୁଣ ଶୁଣ ମୋର ରୀତି ।
ବସିଥାଇ କୂଳ ମହାନଦୀ ଜଳ ଛୁଇଁଅଛି ସତ୍ୟକରି
ଧର୍ମକୁ ଲଘିବି ସୁରାପାନ କରିବି ହରିବି ବ୍ରାହ୍ମଣ ସ୍ତିରୀ ।।
(ସ୍ତୁତିଚିନ୍ତାମଣି, ୨୬ ବୋଲି)

କବିତାରେ ଏତେ ନିଷ୍ଠୁର ବଚନ ଆଗରୁ କେହି ଶୁଣାଇଥିଲେ କି ? କବିତା ତ ଏଠି ଗୋଟେ ଅଟଳ ପ୍ରତିଜ୍ଞା । ପୃଥ୍ୱୀସାଧନ ଲାଗି କବିଟିଏ ପଣ କରିଛି । ସମାଜପ୍ରତି କୁହନ୍ତୁ ପୃଥିବୀ ପ୍ରତି ନିଷ୍ଠାବାନ ନହେଲେ ଶବ୍ଦ ଏମିତି ଉତୁରେ ନାହିଁ । ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ, ସତ୍ତା ଓ ସାମ୍ରାଜ୍ୟ ବିରୁଦ୍ଧରେ, ଅସମାନତା, ଅନ୍ୟାୟ, ଅନାଚାର ବିରୁଦ୍ଧରେ ପୁଞ୍ଜାଏ ଶବ୍ଦ ଧରି ଲଢ଼େଇ କରିଛି କବିଟିଏ । କବିତା ସେଠି ଅସ୍ତ୍ର ନୁହେଁ ତ ଆଉ କ'ଣ ?

୩. କବିତାରେ ଆସ୍ଥା ଓ ଔଷଧି । କାଳକାଳରୁ ଓଡ଼ିଆ ଲୋକେ ଆସ୍ଥାବାନ କବିତାର ମନ୍ତ୍ରଶକ୍ତି ଉପରେ । ଜ୍ୱର ତାପରୁ ରକ୍ଷା ପାଇବା ଲାଗି ଲୋକେ ପହଞ୍ଚନ୍ତି ଗୁଣିଆ ପାଖରେ । ଭୀମଭୋଇ ଥିଲେ  କବି-ଗୁଣିଆଁ ।

ସ୍ତୁତିଚିନ୍ତାମଣିର ୭୧ ରୁ ୭୭ ବୋଲି ପଢ଼ିଦେଲେ ବହୁ ଅସାଧ ରୋଗ ଛାଡ଼ିଯାଏ, ସର୍ପ ବିଷ ହରଣ ହୁଏ ଏବଂ ତ୍ରି-ତାପରୁ ମୁକ୍ତି ମିଳେ ବୋଲି ମହିମାଧର୍ମୀମାନେ ଆଜି ବି ବିଶ୍ୱାସ କରନ୍ତି । ଆଠ ଭଜନ ଏବଂ ସ୍ତୁତି ଚିନ୍ତାମଣିର ମାନ୍ତ୍ରିକ ପ୍ରଭାବ ଉପରେ ଲୋକଙ୍କର ଅଖଣ୍ଡ ବିଶ୍ୱାସ । କ୍ଷେତ୍ର ଅଧ୍ୟୟନ କାଳରେ ଲୋକ ବିଶ୍ୱାସକୁ ମୁଁ ପ୍ରତ୍ୟକ୍ଷ କରିଛି । ହୋଇପାରେ ଏହା ଅନ୍ଧବିଶ୍ୱାସ । ତଥାପି କବିତା ଯେ ପୀଡ଼ିତ ମଣିଷ ଲାଗି ମହୌଷଧି, ଏକଥା ଭୀମଭୋଇଙ୍କ ପରି କବି ପ୍ରମାଣିତ କରିଦେଇ ଯାଇଛନ୍ତି । ସମ୍ଭବତଃ ସେ ଥିଲେ ସିଦ୍ଧ କବି ପରମ୍ପରାର ଶ୍ରେଷ୍ଠତମ କବି ଏବଂ ତାଙ୍କ କବିତା ମନ୍ତ୍ରଶକ୍ତି ସମ୍ପନ୍ନ ଶ୍ରେଷ୍ଠକବିତା ।

୪. କବିତାର ଅଗ୍ନିପଥ ଓ କବିର ଜ୍ୱାଳାମୟ ସମାଜ ଜୀବନ । ନିଜ କବିତାରେ ଅନେକତ୍ର ତାଙ୍କ ଜୀବନର ଜ୍ୱାଳାମୟ ପୃଷ୍ଠାମାନ ସେ ଉନ୍ମୋଚିତ କରିଛନ୍ତି । ଗୃହାସ୍ଥାଶ୍ରମରେ ରହି ସନ୍ନ୍ୟାସୀ ଓ ସାଧକର ଜୀବନ ତାଙ୍କର । ଖଲିଆପାଲିରେ ତାଙ୍କର ଆଶ୍ରମ । ତଥାକଥିତ ଆଶ୍ରମ ବ୍ୟବସ୍ଥାଠୁ ଭିନ୍ନ ଥିଲା ଖଲିଆପଲି ଆଶ୍ରମ ।

କ)ଆଶ୍ରମରେ ବ୍ରାହ୍ମଣ ହରି ପଣ୍ଡା, ବାସୁ ପଣ୍ଡାଙ୍କ ସହ ଅସଂଖ୍ୟ ନୀଚ ଜାତିର ଭକ୍ତ ଓ ଶିଷ୍ୟ ଏକତ୍ର ରହୁଥିଲେ ।

ଖ)ମହିମା ଧର୍ମରେ ନାରୀମାନଙ୍କୁ ଦୀକ୍ଷାଦାନରୁ ବଞ୍ଚିତ କରାଯାଉଥିଲେ ମଧ୍ୟ ଖଲିଆପାଲି ଆଶ୍ରମରେ ସେମାନଙ୍କ ସମସ୍ତ ଅଧିକାର ରହିଥିଲା ।

ଗ)ଆଶ୍ରମରେ ଆମିଷ ବାରଣ ନଥିଲା ।

ଘ)ରାଜାନୁଗ୍ରହ ପ୍ରାପ୍ତି ଲାଗି ଭୀମଭୋଇଙ୍କର ଆଗ୍ରହ ନଥିଲା । ବରଂ ସୋନପୁର ରାଜା ନୀଳାଧର ସିଂ ଦେଓଙ୍କ ଧର୍ମ ପରୀକ୍ଷା ଲାଗି ଭୀମଭୋଇ ଓ ତାଙ୍କର ଶିଷ୍ୟଗଣ ପ୍ରସ୍ତୁତ ଥିଲେ ।

ଙ)ଏହା ଥିଲା କବିତାର ଆଶ୍ରମ । ଧର୍ମଚର୍ଚ୍ଚା ଅପେକ୍ଷା କବିତା ରଚନା ଥିଲା ଆଶ୍ରମର ମୁଖ୍ୟକାର୍ଯ୍ୟ । ଭୀମଭୋଇଙ୍କ କବିତାର ଅଜସ୍ର ପାଣ୍ଡୁଲିପି

ଏଠାରେ ସଂଗୃହିତ ହୋଇ ରହିଥିଲା । କାଳକ୍ରମେ ସେଥିରୁ ଖୁବ୍ କମ୍ ବଞ୍ଚି ରହିଛି ।

ଚ) ମହିମାଧର୍ମର ପରା-ଅପରା ସନ୍ନ୍ୟାସୀ ପନ୍ଥାର ଜଟାସିଙ୍ଗା ବିଧି ବିଧାନରୁ ଭୀମଭୋଇଙ୍କ ଜୀବନ ସଂପୂର୍ଣ୍ଣ ଭିନ୍ନ ଥିଲା । ସମାଜ ପରିବର୍ତ୍ତନ ଲାଗି ତାଙ୍କ ଜୀବନ ଥିଲା ଏକ ପ୍ରୟୋଗଶାଳା ।

୫. କବିତାରେ ଧରାତଳର ଭାଷା । ପ୍ରତ୍ୟେକ କବି ଭାଷାକୁ ଉତ୍ତରାଧିକାର ସୂତ୍ରରେ ହାସଲ କରିଥାଏ ଏବଂ ନିଜ ପ୍ରତିଭାର ପ୍ରୟୋଗ କରି ଭାଷାକୁ ସମୃଦ୍ଧ କରିଥାଏ । ଭୀମଭୋଇ ତାଙ୍କ ସମୟର କବିତାଠୁ ଭିନ୍ନ ଏକ ଭାଷା ବ୍ୟବହାର କରିଛନ୍ତି । ଚର୍ଯ୍ୟାପଦ-ସାରଳା-ଅଚ୍ୟୁତାନନ୍ଦଙ୍କ ବାଟଦେଇ ସେ ଭାଷା ଭୀମଙ୍କ ପାଖରେ ପହଞ୍ଚିଛି । ମାନସଲୋକର ଦିବ୍ୟ ଅନୁଭବକୁ ଧରାତଳର ଭାଷାରେ ବୟାନ କରିବାର ସାମର୍ଥ୍ୟରେ ଭୀମଭୋଇ ବଳୀୟାନ । ପଶ୍ଚିମ ଓଡ଼ିଶାର ରାଶି ରାଶି ଶବ୍ଦ ସାହିତ୍ୟରେ ପ୍ରବେଶ କରିଛି ଭୀମଙ୍କ କବିତା ମାଧ୍ୟମରେ । ଦେଶଜ ଶବ୍ଦର ବହୁଳ ବ୍ୟବହାର ତାଙ୍କ କବିତାର ଏକ ବିଶିଷ୍ଟ ଲକ୍ଷଣ ।

–୦–

# ଦିବ୍ୟ ଯୁଗର ଦ୍ରଷ୍ଟା କବି ଭୀମ ଭୋଇ

ଆଦିକନ୍ଦ ସାହୁ

କବିଭୀମ ଥିଲେ ମାନବତାବାଦୀ ଜୀବନ ବୋଧର ଦ୍ରଷ୍ଟା, ଭକ୍ତ, ମାନବପ୍ରେମୀ ଓ ବିପ୍ଳବୀ । କବିଙ୍କର ଅକୁତୋଭୟତା ଓ ସର୍ବକାଳୀନ ବୃହତ୍ତର ମାନବିକ ମୂଲ୍ୟବୋଧ ତାଙ୍କୁ ଦିବ୍ୟଯୁଗ ଓ ଜୀବନର ପ୍ରବକ୍ତା କରିଥାଏ ।

ଭୀମ ଥିଲେ ସଙ୍କଳ୍ପବଦ୍ଧ ଭାବେ ଏକ ଦିବ୍ୟଜୀବନବୋଧର ଭାଷ୍ୟକାର । ତାଙ୍କ ଗ୍ରନ୍ଥାବଳୀର ଅଜସ୍ର ଧାଡ଼ି ହେଉଛି ସେହି ଭାଷ୍ୟର ସ୍ୱାକ୍ଷର । ସେ ଏପରି ଜଣେ ସନ୍ଥ କବି ଥିଲେ ଯେ ଆତ୍ମାର ବୌଦ୍ଧିକ ମୁକ୍ତିପାଇଁ ନିଜ ଅନ୍ତରକୁ ସର୍ବଦା ଉନ୍ମୁଖ କରି ରଖୁଥିଲେ । ଆତ୍ମା ଓ ଅନ୍ତରର ଏହି ବୌଦ୍ଧିକ ଉନ୍ମୁକତା କୋଟି ଜନତାର ହେଉ ଏହାହିଁ ଥିଲା ତାଙ୍କର କାମନା ।

ମଣିଷ ପ୍ରାଣରେ ଆତ୍ମାର ଏହି ବୌଦ୍ଧିକ ମୁକ୍ତିପାଇଁ ସମର୍ଥନ କରିନଥିଲେ । ସେ ଏହି ବିପୁଳ ବ୍ୟାବହାରିକ ପୃଥିବୀରେ ସମୁନ୍ନତ ଜୀବନ ଯାପନ କରିପାରିବ ନାହିଁ । ସ୍ୱାର୍ଥସଂଘର୍ଷ ସର୍ବସ୍ୱଜୀବନ ଯେଉଁ ଜାଗତିକ ଜୀବନର ଆବର୍ତ୍ତ ସୃଷ୍ଟି କରେ ମଣିଷ କେବଳ ତା'ରି ଭିତରେ ବଞ୍ଚି ରହିଲେ ସେ ଇତର ପଶୁ ସ୍ତରରେ ହିଁ ରହିଯିବ । ମଣିଷର ଏକ ସ୍ୱଷ୍ଟ ଓ ବଳଶାଳୀ ନୈତିକ ଓ ଆଧ୍ୟାତ୍ମିକ ଅଭିଳିପ୍ସା ରହିବା ଆବଶ୍ୟକ ।

କବି ଭୀମ ଯେଉଁ ସମୟରେ ଉପାନ୍ତ ବଣ ଭୂମିରେ ଶିଷ୍ୟ ପ୍ରଶିଷ୍ୟଙ୍କ ଗହଣରେ ବସି କବିତା ଲେଖୁଥିଲେ ସେତେବେଳେ ଏହି ଓଡିଶାରେ ଦେବ ଦେବୀ ଓ ଗନ୍ଧର୍ବ ଉପାଖ୍ୟାନ ଗୁଡ଼ିକ ଆମ କାବ୍ୟ ସାହିତ୍ୟର ଅତ୍ୟନ୍ତ ସାଙ୍ଗୀତିକ, ପଦ୍ୟବଦ୍ଧ ତଥା

ଆଳଙ୍କାରିକ ରୀତିରେ ବର୍ଣ୍ଣିତ ହୋଇଥିବାର ଦେଖିବାକୁ ମିଳେ। କବି ଭୀମଙ୍କ ସାହିତ୍ୟର ଅନ୍ୟତମ ମୌଳିକ ବିଶେଷତ୍ୱ ହେଲା ଯେ ସେ ମଣିଷ ଜାତିର ଆତ୍ମାକୁ ଦିବ୍ୟଜୀବନବୋଧ ଆଡେ ଉତ୍ତୋଳିତ କରିନେବାପାଇଁ ସଙ୍କଳ୍ପବଦ୍ଧ ହେବା। ଏପରି ସଙ୍କଳ୍ପ ତାଙ୍କ ସମୟରେ ଅନ୍ୟ କବିଙ୍କର ପ୍ରାୟତଃ ନଥିଲା।

କବି ଭୀମଙ୍କର ଆରାଧ୍ୟ ଦେବତା 'ଶୂନ୍ୟ-ପୁରୁଷ' ହେଲେ ହେଁ ସବୁବେଳେ ମହତ୍ତର ମାନବୀୟ ସଦ୍‌ଗୁଣାବଳୀ ଓ ତଦ୍‌ଜନୀତ ମୂଲ୍ୟବୋଧକୁ ସେ ସେହି ଶୂନ୍ୟଦେହୀଙ୍କଠାରେ ଆରୋପ କରିଛନ୍ତି। ଜାନ୍ତବ ଓ ଜାଗତିକ ଜୀବନ ନିର୍ବାହ କରୁଥିବା ଏ ଜଗତର କୋଟି ପ୍ରାଣୀ କିପରି ଏକ ମହାଜାଗତିକ ଜୀବନ ଆଡ଼କୁ ଆସିପାରିବେ ଓ ସେମାନଙ୍କର ଦୃଷ୍ଟିପଥ ମହାଦିଗନ୍ତକୁ ଭେଦକରିପାରିବ ତାହା ଥିଲା କବି ଭୀମଙ୍କ ଆତ୍ମାର ଅଭିଳାଷ ଓ ତାଙ୍କ ସାହିତ୍ୟ ହେଉଛି ସେହି ଅଭିଳାଷର ପ୍ରତିବନ୍ଧରୂପ।

ସଂଘ ହେଉ ବା ସମାଜ ହେଉ ତାହା ତୁଚ୍ଛ ଜାତିପ୍ରଥା ଦ୍ୱାରା ଯେ କଳୁଷିତ ହେଉଛି ଭୀମ ଏହା ଜାଣି ଜାତିପ୍ରଥା ବିରୋଧରେ ନିଜର ସ୍ୱଷ୍ଟ ମତବ୍ୟକ୍ତ କରିଛନ୍ତି। ଜଣକର ଦ୍ୱିଜତ୍ୱ ଉପବୀତ ଧାରଣ କରିବାରେ ନଥାଏ, ନିଜସ୍ୱ ଆଚରଣ, ମାର୍ଜିତ ରୁଚି ତଥା ଗଭୀର ଆଧ୍ୟାତ୍ମିକ ବିଶ୍ୱାସଜନିତ ବ୍ରହ୍ମଜ୍ଞାନରେ ହିଁ ପ୍ରକୃତ ଭାବେ ଜଣକର ଦ୍ୱିଜତ୍ୱ ପ୍ରକଟିତ ହୋଇଥାଏ।

ଆତ୍ମାର ଅନ୍ତର୍ଗତ ନିୟନ୍ତ୍ରଣକୁ ମାନବର ସମଗ୍ରାନୁଭୂତିର ସମୁଚିତ ଅନୁଶାସନ ବୋଲି କବି ଭୀମ ଉପଲବ୍ଧ କରୁଥିଲେ; ଯାହା ସଂଘୀୟ ସଂଗଠନକୁ ବ୍ୟକ୍ତିଗତ ସଂଘର୍ଷ, ଆଦର୍ଶଗତ ବ୍ୟବଧାନ ଓ ବ୍ୟକ୍ତିଗତ କବଳରୁ ରକ୍ଷା କରିଛି। ଧର୍ମଭୟ ନୁହେଁ, ନୀତି-ଅନୀତିର ଅନୁଶାସନ ବଳରେ ସେ ତାଙ୍କର ପ୍ରିୟ ଜଗତର ଲୋକଙ୍କ ସମଦର୍ଶୀ ହେବାପାଇଁ ଆହ୍ୱାନ କରିଛନ୍ତି। ଆତ୍ମସୁଖ ନୁହେଁ, ବରଂ ପର ସଂପର୍କ ହିଁ ଜଗତର ଅକଲ୍ୟାଣ ଦୂର କରିପାରିବ ବୋଲି ଭୀମ ଉପଲବ୍ଧ କରିପାରିଛନ୍ତି। ଏ ବିଚାରରେ ଭୀମ ଥିଲେ ଅଧିକାଂଶରେ ଜଣେ ହେତୁବାଦୀ।

ଏକ ବୃହତ୍ତର ସାମାଜିକ ଜୀବନବୋଧର ଲକ୍ଷ୍ୟ ନେଇ କବି ଭୀମ ମହିମା ଗାଦି ପରି ଯେଉଁ ଏକ ସଂଘର ପ୍ରତିଷ୍ଠା କରିଥିଲେ ତାହା ମଣିଷ ଜାତିର ଇତିହାସରେ ଏକ ସୃଷ୍ଟିଶୀଳ ଅନୁଷ୍ଠାନ ନିଶ୍ଚୟ। ତାହା କ୍ଷୁଦ୍ର ହେଲେ ହେଁ ସେଥିପ୍ରତି ଭୀମଙ୍କ

ପ୍ରାଣର ସତ୍ୟଶୀଳତା ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନକୁ ସୁମହତ କରିପାରିଛି । କବି ଭୀମ କେବଳ ନିଜ ପ୍ରାଣର ବୌଦ୍ଧିକ ଓ ଆଧ୍ୟାତ୍ମିକ ମୁକ୍ତିକାମନା କରିନାହାନ୍ତି ବରଂ ସେ କୋଟି ଜନତାର ଆତ୍ମାକୁ ଉତ୍ତୋଳିତ କରିବାପାଇଁ ସ୍ୱପ୍ନ ଦେଖିଛନ୍ତି । ସେଦିନର ରକ୍ଷଣଶୀଳ ଗଡ଼ଜାତି ସମାଜର ଜଣେ ନିଗୃହୀତ ନିପୀଡ଼ିତ କନ୍ଧ ଯୁବକ ପକ୍ଷେ ଏହା କମ୍ ବଡ ସ୍ପର୍ଦ୍ଧା ଓ ପୌରୁଷର ବିଷୟ ନୁହେଁ । ଜଣେ ଅତି ବଡ ସମାଜ ସଚେତନ କବି, ପୁଣ୍ୟାତ୍ମା ତଥା ସଂସ୍କାରକ ଭାବେ କବି ଯେଉଁ ଦିବ୍ୟଯୁଗ ପରିକଳ୍ପନାର ସ୍ୱପ୍ନ ଦେଖିଛନ୍ତି ତାହା ସେଦିନ ତାଙ୍କପରି ସାଧାରଣ ପରିଚୟ ନଥିବା ଗ୍ରାମେ ଗ୍ରାମେ ଗୋରୁ ଜଗି, ଦଉଡ଼ବଳି ପେଟ ପୋଷୁଥିବା, ବଣର ଫଳ ଓ ଝରଣାର ଜଳପାନ କରି କ୍ଷୁଧା ତୃଷ୍ଣା ନିବାରଣ କରୁଥିବା ଏପରି ଜଣେ ଅନ୍ଧ ଓ କନ୍ଧ ଯୁବକ ପକ୍ଷେ ପୁଣି କମ୍ ବଡ ଭୀଷ୍ମ ପ୍ରତିଜ୍ଞାର ବିଷୟ ନୁହେଁ ।

ଏକ ମିଶନାରୀ ଦାୟିତ୍ୱ ତୁଲାଇବା ପାଇଁ ସତେ ଯେପରି ସେ ତାଙ୍କ କବିତ୍ୱକୁ ଏକ ମାଧ୍ୟମ କରିଥିଲେ । ନୂତନ ଅଳଙ୍କାର ଚାତୁରୀ; ନୂତନ ବ୍ୟଞ୍ଜନା ପ୍ରସ୍ଥ ବା ସୁମଧୁର ସଙ୍ଗୀତାବଳୀ ସୃଷ୍ଟି କରିବାର ଲକ୍ଷ୍ୟ ଅପେକ୍ଷା ଦିବ୍ୟଯୁଗ ସୃଷ୍ଟି କରିବାର ଇଚ୍ଛା ତାଙ୍କୁ ବାରବାର ପ୍ରୋତ୍ସାହିତ କରିଛି ।

ନିଜ ଦୁଃଖ ଓ ଦାରିଦ୍ର୍ୟରେ ସେ ବ୍ୟଥିତ ହୋଇ ନାହାନ୍ତି । ସେ ବ୍ୟଥିତ ହୋଇଛନ୍ତି ସମାଜର ଅଧୋଗତି ଦେଖି । ସମାଜରେ ଅନେକଙ୍କ ଅନ୍ଧ-ଆସ୍ତିକତା, ପୌତ୍ତଳିକତା, ଅନ୍ୟପ୍ରତି ଅପ୍ରେମ, ଅଶ୍ରଦ୍ଧା, ଜଘନ୍ୟ ଜାତି ପ୍ରଥା ଆଦି ବହୁ ବିଷୟରେ ତାଙ୍କ ଚିତ୍ତ କ୍ଷୁବ୍ଧ ହୋଇଛି । ସେ ସମାଜକୁ ସବୁମତେ ସର୍ବାଙ୍ଗ ସୁନ୍ଦର କରିବାପାଇଁ ସ୍ୱପ୍ନ ଦେଖିଛନ୍ତି ଓ ଏହି ସ୍ୱପ୍ନହିଁ ତାଙ୍କ କବିତାର ବହୁ ପଦ ପଂକ୍ତି ଭିତରେ ପ୍ରକାଶିତ ହୋଇଛି ।

କବିଙ୍କର କେତେକ ଧାଡ଼ି ରଚନା ସେହି "ସର୍ବେସନ୍ତୁ ନିରାମୟା" ଶ୍ଳୋକ ଉଚ୍ଚାରଣ କରିଥିବା ବୈଦିକ ଋଷିର ବାଣୀ ପରି ନିଜସ୍ୱ ପ୍ରାର୍ଥନା, ନିଜ ସଂକଳ୍ପର ସଶ୍ରଦ୍ଧ ପ୍ରକାଶ ଅଥଚ କେତେ ଉଦାତ୍ତ ଓ ଗମ୍ଭୀର ସେ ବାଣୀ ।

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।

ହିଂସା ନୁହେଁ ଅହିଂସା ହିଁ ମଣିଷ ମଣିଷ ଜୀବନର ଶ୍ରେଷ୍ଠ ଚର୍ଯ୍ୟା ହେବା ଉଚିତ। କବିଙ୍କ ନବଜୀବନ ବୋଧ ତାଙ୍କ ସମୟରେ ସମାଜ ଦ୍ୱାରା ସେତେ ବେଶୀ ଗୃହୀତ ହୋଇ ନଥିଲା। ସେଦିନର ଧର୍ମାନ୍ଧ ଓ ଜାତିପ୍ରଥା ଦ୍ୱାରା କଳୁଷିତ ସମାଜକୁ ମାର୍ଜିତ କରିବା ପାଇଁ ମଣିଷର ଦୈନନ୍ଦିନ ଜୀବନ ପରିଚର୍ଯ୍ୟା ସଂପର୍କରେ କବି ଭୀମ ନାନା ହେତୁବାଦୀ ପ୍ରଶ୍ନ ଉତ୍‌ଥାପନ କରିଯାଇଛନ୍ତି। ଧର୍ମ, ବିଚାର, ଆତିଥ୍ୟ, ଆଚରଣ, ସମାଜସେବା, ଗୁରୁପୂଜା, ଈଶ୍ୱର-ବିଶ୍ୱାସ ଏପରିକି ଦାଂପତ୍ୟ ଜୀବନର ପ୍ରେମ-ପ୍ରଣୟ ସଂପର୍କରେ ନବଯୁଗ ଦ୍ରଷ୍ଟା କବି ଭୀମ ବାସ୍ତବ ପ୍ରବଚନ ଦେଇଯାଇଛନ୍ତି। ଆତ୍ମା ଓ ଶରୀର ଉଭୟର ସ୍ୱାସ୍ଥ୍ୟବିଧାନ ଥିଲା ଭୀମଙ୍କ ନୂତନ ସମାଜ ପରିକଳ୍ପନାର ଅନ୍ୟତମ ଲକ୍ଷ୍ୟ। ବ୍ୟକ୍ତିର ଶରୀର ରୁଗ୍ଣ ହୋଇ ପଡ଼ିଲେ ତା'ର ସମାଜ-ଧର୍ମ ମଧ୍ୟ ବିପନ୍ନ ହୋଇପଡିବ ବୋଲି ସେ ମନେ କରୁଥିଲେ।

ଏକ ଆଧ୍ୟାତ୍ମିକ ଜୀବନ ପ୍ରତି କବିଙ୍କ ପ୍ରାଣର ଉନ୍ମୁଖତା କବିଙ୍କୁ ନିର୍ଭୀକ କରିବା ସଙ୍ଗେ ସଙ୍ଗେ ଏକ ସୁନ୍ଦର ପ୍ରେମମୟ ନବଜୀବନ ପ୍ରତି ଆକୃଷ୍ଟ କରିଥିଲା। ଯେଉଁ ଜୀବନ ସତତ ପାପତାପରେ ପୀଡ଼ିତ, ଶଙ୍କାକୁଳ ଅସ୍ଥିର ଓ ଅସଂଯତ ସେ ଜୀବନ ଦେଇ ଜଣେ ନବଜୀବନର ସ୍ୱାଦ ଲାଭ କରିପାରିବ ନାହିଁ। ଅନ୍ତରକୁ ନିର୍ଭୀକ ଓ ନିର୍ମଳ କଲେ ଯାଇ ଜଣେ ପ୍ରକୃତରେ ଦେବତ୍ୱର ଉପଲବ୍ଧି କରିପାରିବ।

ଏକାନ୍ତରେ ଗୃହସ୍ଥର ଜୀବନର ଭିତରେ ବି ନିଜର କୌଳିକ ବୃତ୍ତି କରି ଜଣେ ଈଶ୍ୱରମୟ ଜୀବନ ଯାପନ କରିପାରେ। ନିର୍ମଳ ମନ, ସଦ୍‌ଗୁରୁ ଗ୍ରହଣ ଓ ଉଦାର ମାନବ ପ୍ରେମ ହିଁ ଜଣକୁ ଦିବ୍ୟଜୀବନ ଲାଭର ମାର୍ଗ ଉନ୍ମୁକ୍ତ କରିଦିଏ। ଆଗାମୀ ଦିନର ସାମାଜିକ ସଂସର୍ଗ, ସଂସ୍କୃତି, ଧର୍ମଧାରଣା ତଥା ଜାତୀୟତାବୋଧର ବାସ୍ତବ ରୂପଲେଖ କ'ଣ ହେବ ତାହା ଭୀମ ଜଣେ ଭବିଷ୍ୟଦ୍ରଷ୍ଟା ଭାବେ ଯେପରି ଜାଣି ପାରୁଥିଲେ।

ସେ ଲେଖିଛନ୍ତି-

ପୂର୍ବର ଲୋକ ପଶ୍ଚିମେ ପଳାଇବେ
ପଶ୍ଚିମର ଲୋକେ ପୂର୍ବେ।
ଚଉଦିଗ ଲୋକ ଏକାତ୍ମ ହୋଇବେ
ମିଶା ମିଶା ହୋଇ ସର୍ବେ।

ଭୀମ ଯେଉଁ ଦିବ୍ୟଯୁଗ ଓ ଜୀବନର ସ୍ୱପ୍ନ ଦେଖିଥିଲେ ଏ ପ୍ରତିମା ପୂଜା ସେହି ଜୀବନବୋଧର ବାଧକ ବୋଲି ସେ ସ୍ପଷ୍ଟ ଉପଲବ୍ଧି କରୁଥିଲେ। ଗୋଟିଏ ପ୍ରତିମା ଗୋଟିଏ ଭୂଖଣ୍ଡର ଜନପୁଞ୍ଜଙ୍କୁ ଗୋଟିଏ ଶ୍ରେଣୀରେ ପରିଣତ କରେ। ସେହିପରି ଆଉ ଗୋଟିଏ ପ୍ରତିମା ଅନ୍ୟ ଏକ ଧର୍ମାବଲମ୍ବୀ ଶ୍ରେଣୀ ସୃଷ୍ଟିକରେ। କିଏ ଦେବଭକ୍ତ ତ କିଏ ଦେବୀ ଉପାସକ ହୋଇଥାଏ। କିଏ ଶୈବ, କିଏ ଶାକ୍ତ ତ ପୁଣି କିଏ ବୈଷ୍ଣବ ଅବା ପୁଣି କିଏ ଗାଣପତ୍ୟ। ଏହି ପ୍ରତିମା ପୂଜା ଭେଦରେ ଗଢିଉଠିଥିଲା ଧାର୍ମିକଶ୍ରେଣୀ ମଧ୍ୟରେ ସଂଘର୍ଷ ଏକାନ୍ତ ଦୁର୍ନିବାର।

ଭୀମଙ୍କ ମୃତ୍ୟୁର ଅନେକ ବର୍ଷ ପରେ ବି ଭାରତବର୍ଷରେ ଆଜି ଏହି ପ୍ରତିମାପୂଜା ଓ ମେଢ ଶୋଭାଯାତ୍ରା ସମୟରେ ଦଙ୍ଗା ହୋଇ ଶହ ଶହ, ହଜାର ହଜାର ଲୋକ ମୃତ୍ୟୁବରଣ କରନ୍ତି। ଭାରତବର୍ଷର କୌଣସି ନା କୌଣସି ଭୂଖଣ୍ଡ ମଣିଷ ରକ୍ତରେ ରଂଜିତ ହୁଏ। କବି ଭୀମଙ୍କର ଦିବ୍ୟଜୀବନ ସଂପର୍କିତ ସ୍ୱପ୍ନ ଯଦି ସାର୍ଥକ ହୋଇଥାନ୍ତା ତାହେଲେ ଜାତି ଓ ପୌତ୍ତଳିକତା ନାମରେ ମଣିଷ ସମାଜରେ ଆଜି ନରସଂହାର ଚାଲି ନଥାନ୍ତା।

ସତେ ଯେପରି କବି ଭୀମଭୋଇ ଜଣେ ମହାନ ସନ୍ନ୍ୟାସୀଙ୍କ ପରି ନିଜର ଆଧ୍ୟାତ୍ମ୍ୟ ଅଭିଲିପ୍‌ସାକୁ ସରସ ସଙ୍ଗୀତାବଳୀ ଭିତରେ ଗାଇ ଯାଇଛନ୍ତି। କବିତାକୁ ମଧ୍ୟଯୁଗୀୟ ଆଳଙ୍କାରିକ ଆଦର୍ଶରେ ଗଢିତୋଳିବାର ଆଳଙ୍କାରିକ ଚେଷ୍ଟା ଅପେକ୍ଷା ନିଜ ଭାବଭାବନାକୁ ସରଳ ପଦ ପଦାର୍ଥ ଭିତରେ ବ୍ୟକ୍ତ କରିବାର ପ୍ରଣବତା ତାଙ୍କର ଅଧିକ ଥିଲା। କବିତା ଥିଲା ତାଙ୍କ ନବଯୁଗ ନିର୍ମାଣର ଏକ ମାଧ୍ୟମ।

ସମାଜକୁ ନୂଆ କରି ଗଢିବାର ଅଭିଳାଷ ଭୀମଙ୍କୁ କ୍ରମଶଃ ଏକ ବୃହତ୍ତର ଆଧ୍ୟାତ୍ମିକ ସଂଗଠନ ଭିତରକୁ ନେଇ ଯାଇଥିଲା। ଏ ପାର୍ଥିବ ଜଗତରେ ଜଣେ ସଂସାର କର୍ମବ୍ୟସ୍ତ ଗୃହସ୍ଥ ନିଜକୁ ସମର୍ପି ଦେଇ କେବଳ ସଦାଚାରୀ ହୋଇପାରିବ ବୋଲି ଭୀମ ଉପଲବ୍ଧ କରିଛନ୍ତି। ଭୀମ ଲେଖିଛନ୍ତି–

'ଆପଣା ପିଣ୍ଡ ପ୍ରାଣ ଦାନ କରିବା ସଦ୍‌ଗୁରୁଙ୍କ ପାଦେ
ଦାରାସୁତ ବିତ୍ତ ସକଳ ସମର୍ପି ରହିବା ମନ ଆନନ୍ଦେ।

ଆପଣା ଭାଇ ଭଗ୍ନୀ ଜ୍ଞାତି ବାନ୍ଧବ ସକଳ ସମର୍ପି ଦେଇ
ପାଇଲେ ବୋଲି ସତ୍ୟ ସତ୍ୟ କହିବ ମନରେ ଆନନ୍ଦ ହୋଇ ।'

ବିଷୟାସକ୍ତି ହିଁ ଅନନ୍ତ ଦୁଃଖର କାରଣ। ଜଣେ ବିଷୟୀ ମଣିଷ ଜଗତର ହୀରା, ନୀଳା, ମୋତି ମାଣିକ୍ୟଠାରୁ ଆହୁରି ମନଲୋଭା ବଣର ଫୁଲ, ଆକାଶର ତାରା ଭରା ବାଦଲ ରାତି ପ୍ରତି ବେଳେ ବି ପ୍ରଲୁବ୍ଧ ହୋଇପାରେ ନାହିଁ। ଜୀବନ ସରିଯାଏ। କି ଅସାର ଜୀବନ ସେମାନଙ୍କର ! ଭୀମ ସେମାନଙ୍କ ଜୀବନର ଆନନ୍ଦ ପାଇଁ, ମୁକ୍ତି ପାଇଁ ଗୀତ ଗାଇଛନ୍ତି।

କ୍ଷମା, କରୁଣା ରାଜଦଣ୍ଡକୁ ନିୟନ୍ତ୍ରଣ କରୁ। କୌଣସି ପ୍ରକାର ଅମାନବିକ କଠିନ ରାଜଦଣ୍ଡକୁ ନିୟନ୍ତ୍ରଣ କରୁ। କୌଣସି ପ୍ରକାର ଅମାନବିକ କଠିନ ରାଜଦଣ୍ଡ ଶାସିତର ହୃଦୟ ବଦଳାଇ ଦେଇପାରେ ନାହିଁ ବୋଲି ଭୀମ ମନେ କରୁଥିଲେ। ତଦାନୀନ୍ତନ ପ୍ରଜାପୀଡ଼କ ରାଜପୁରୁଷଙ୍କୁ ଆହ୍ୱାନ ଦେଇ କବି ଗାଇଛନ୍ତି।

"ରାଜମାନେ ରାଜନୀତି କରୁଥାନ୍ତୁ ଦଣ୍ଡ ସିଂହାସନେ ବସି
ଦୋଷକୁ ଚାହିଁ ବୁଝାମଣା କରନ୍ତୁ ହୃଦରେ ମହିମା ଘୋଷି
ଦୋଷକୁ ଚାହିଁ ଦଣ୍ଡ ନଦେଲେ କି ରୂପେ ଚଳିବ ପୃଥି,
ରଇତ ପରଜା କି ରୂପେ ମାନିବେ ବଣା ହୋଇଯିବ ମତି।"

କବି ଭୀମ ମନେ କରୁଥିଲେ, ଅନ୍ତରର ଆବେଗ ବଳରେ ମଣିଷ ଏ ବିଶ୍ୱବ୍ରହ୍ମାଣ୍ଡକୁ ଅନୁଭବ କରେ। ବିଶ୍ୱପ୍ରାଣତାର ବିପୁଳପ୍ରବଣତା ନଥିବା ମଣିଷଟି ଇତରଙ୍କ ପରି ଆତ୍ମରତିରେ କେବଳ ଘାଣ୍ଟି ହେଉଥାଏ। ବିଶ୍ୱକୁ ଦେଖିବା ବିଶ୍ୱାତ୍ମାଙ୍କୁ ଅନୁଭବ କରିବାର ପ୍ରଶସ୍ତ ଗବାକ୍ଷ ହେଉଛି ବ୍ୟକ୍ତିର ଅନ୍ତରଙ୍ଗ ଆତ୍ମା। ତାହା ବିଶ୍ୱଭାବରେ ବିଗଳିତ ହେଲେ ବ୍ୟକ୍ତିର ଆତ୍ମା ଅନ୍ତରର ଉପଲବ୍ଧି କରେ। ପରମ ପୁରୁଷାର୍ଥ ହେଉଛି ସମସ୍ତଙ୍କଠାରେ ସମଚିତ୍ତ ହେବା ପାଇଁ ଶାଶ୍ୱତର ଦାର୍ଶନିକ ଶଙ୍କର କହିଛନ୍ତି–'ଭବ ସମଚିତ୍ତଃ ସର୍ବତ୍ର ତ୍ୱଂ'।

ବିଶ୍ୱକୁ ନିଜ ଅନ୍ତରରେ ଅଭିଷିକ୍ତ କରିବାଠାରୁ କବି କବିତ୍ୱ ଆଉ କିଛି ନାହିଁ। ସେହି ବିଶ୍ୱଭାବ ପ୍ରବୋଧକ ହୃଦୟ ହିଁ ସତ୍ କବିତ୍ୱର ଉତ୍ସ। ତର୍କ, ଧର୍ମ ନାମରେ

ଅନ୍ଧ ହୋଇ ଅନ୍ୟ ଧର୍ମର ମଣିଷଙ୍କ ପ୍ରତି 'ଅଶ୍ରଦ୍ଧ' ଓ ଅନୁଦାର ହେବାରୁ ଚର୍ଚ୍ଚଙ୍କୁ ସେପାଇଁ ଅନେକ ବିଶ୍ୱପ୍ରେମୀ ବାଛନ୍ଦ କରିଥିଲେ ।

ଭୀମଙ୍କ ନୂତନ ସମାଜ ପରିକଳ୍ପନାକୁ ସେ ଦିନର ରାଜା ଓ ବ୍ରାହ୍ମଣମାନେ ଘୋର ବିରୋଧ କରିଛନ୍ତି । ଭୀମ ତେଣୁ ସମାଜର ପ୍ରଭାବଶାଳୀ ଲୋକଙ୍କ ସମର୍ଥନ ନପାଇ ବ୍ୟଥିତ ହୋଇଛନ୍ତି ।

'ପଞ୍ଚଭୂତ ଆତ୍ମା ଦଗ୍ଧି ହେଉଛି ଜୀବନ କାନ୍ଦୁଛି ନିତି
ଅନ୍ୟାୟ ସଂସାର ଅନୀତି ଆଚାର ଦେଖି କଳିଯୁଗ ରୀତି'
(ସ୍ତୁତି ଚିନ୍ତାମଣି)

ଦିବ୍ୟଯୁଗର ପ୍ରତିଟି ଯୁଗାଦର୍ଶ ଓ ଦିବ୍ୟଜୀବନ ସଂପର୍କରେ ସମାଜ ବିତାଡ଼ିତ ଭୀମ ଭୋଇ ଯେଉଁ ସ୍ୱପ୍ନ ଦେଖିଥିଲେ ତା'ର ମହତ୍ତର ମାନବ ସଂପର୍କ ଦୃଷ୍ଟିରୁ ଏ ମାଟିର ବିପୁଳ ସାଂସ୍କୃତିକ, ସାମାଜିକ ତଥା ସାରସ୍ୱତ ଗତିଧାରାରେ ତାଙ୍କ କବିତା ଅନେକ ମାନବବାଦୀଙ୍କ ପାଇଁ ଉଭୟ ପ୍ରେମ ଓ ବିପ୍ଳବର ମହାନ୍ ବାଣୀ ହୋଇ ରହିଯିବ ।

-୦-

# ଦିବ୍ୟଦ୍ରଷ୍ଟା କବି : ଭୀମ ଭୋଇ

**ସତ୍ୟାନନ୍ଦ ସ୍ୱାଇଁ**

ସନ୍ଥ, କବି ଓ ଦିବ୍ୟଦ୍ରଷ୍ଟା ଭୀମଭୋଇ ଓଡ଼ିଆ ସାହିତ୍ୟିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ଜଗତର ଏକ ଅନନ୍ୟ ପ୍ରତିଭା। ଚିନ୍ତା ଓ ଚେତନାର ନୂତନତ୍ୱରେ, ସରଳ କିନ୍ତୁ ଉଦାର ଭାଷା ପ୍ରୟୋଗରେ, ନିଗୁଢ଼ ଦାର୍ଶନିକ ତତ୍ତ୍ୱକୁ ସରଳ କବିତାରେ ପ୍ରକାଶ କରିବା କୌଶଳରେ ଓ ସର୍ବୋପରି ସାହିତ୍ୟକୁ ସମାଜ ମଙ୍ଗଳର ଅସ୍ତ୍ର ରୂପେ ବ୍ୟବହାର କରିବାରେ ଭୀମ ଭୋଇ ଯେଉଁ ସାର୍ଥକତା ଲାଭ କରିଛନ୍ତି ତାର ତୁଳନା ନାହିଁ। ଏକ ଯୁଗ ସନ୍ଧିକ୍ଷଣରେ, ଯେତେବେଳେ ଓଡ଼ିଆ କାବ୍ୟ ସାହିତ୍ୟ ରୀତିଯୁଗୀୟ ଛନ୍ଦୋବଦ୍ଧ ସାଙ୍ଗୀତିକତାରୁ ଧୀରେ ଧୀରେ ଆଧୁନିକତା ଦିଗରେ ଅଗ୍ରସର ହେଉଥିଲା ଠିକ ସେତିକିବେଳେ ଭୀମଭୋଇ ତାଙ୍କର ସାହିତ୍ୟ ସୃଷ୍ଟିରେ ନିମଗ୍ନ ଥିଲେ। ଏହା ଥିଲା ଏମିତି ଏକ ସମୟ ଯେତେବେଳେ ଓଡ଼ିଆ ପାଠକ ଭଞ୍ଜ କବିତାର ମଧୁର ମୂର୍ଚ୍ଛନାକୁ ତ୍ୟାଗ କରିପାରୁ ନଥାଏ ବା ରାଧାନାଥୀୟ ଆଧୁନିକତାକୁ ସାମଗ୍ରିକ ଭାବେ ଗ୍ରହଣ କରିପାରୁ ନଥାଏ। ଓଡ଼ିଆ ସାହିତ୍ୟାକାଶରେ 'ଇନ୍ଦ୍ରଧନୁ'ର ବର୍ଣ୍ଣବିଭା ଓ 'ବିଜୁଳି'ର ଝଲକ ସଂଦର୍ଶନରେ ସେ ଯେତିକି ରୋମାଞ୍ଚିତ ହେଉଥାଏ, ସେତିକି ହେଉଥାଏ ଚମତ୍କୃତ। ଏମିତିକି ଆଧୁନିକ ଯୁଗସ୍ରଷ୍ଟା କବିବର ରାଧାନାଥ ଓଡ଼ିଆ ନାବିକଙ୍କ କଣ୍ଠରେ ଓଡ଼ିଶୀ ସଙ୍ଗୀତ ଶୁଣି ସମ୍ମୋହିତ କଣ୍ଠରେ ଗାଉ ଥାଆନ୍ତି –

ତାଙ୍କ କଣ୍ଠେ କବିସୂର୍ଯ୍ୟ କଥାମୃତ
ଗଲାଣିତ ଗଲା କଥାରେ ସଙ୍ଗାତ ।

ଆଶ୍ଚର୍ଯ୍ୟଜନକ ଭାବେ, ରେଢ଼ାଖୋଲରୁ ଖଲିଆପାଲି ଓ ଯୋରନ୍ଦାରୁ ମାଳବିହାର ପୁର (ବାଙ୍କୀ) ପର୍ଯ୍ୟନ୍ତ ବାରମ୍ବାର ପଦବ୍ରଜରେ ପର୍ଯ୍ୟଟନ କରୁଥିବା ଓ

ଅଗଣନ ଆଧାତ୍ମ ଓ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ ସଂସ୍ପର୍ଶରେ ଆସୁଥିବା ଦ୍ରଷ୍ଟାକବି-ଭୀମଭୋଇ କୌଣସି ଗୋଟିଏ ସ୍ରୋତରେ ଭାସିଯାଇ ନାହାନ୍ତି; କୌଣସି ଗୋଟିକୁ ଆପଣେଇ ନେଇ ନାହାନ୍ତି । ବରଂ ସେହି ସମସ୍ତ ସ୍ରୋତ ବିରୋଧରେ ଉଜାଣି ବହିଛନ୍ତି । ଏପରି ପ୍ରତିକ୍ରିୟା ପ୍ରକାଶ କରି ସେ ଏକ ସ୍ୱତନ୍ତ୍ର ସ୍ୱର ଓ ସ୍ୱାକ୍ଷର ରଖିଯାଇଛନ୍ତି ତାଙ୍କ କାବ୍ୟକୃତିରେ । କୌତୁହଳର ବିଷୟ ସେହି ସମୟକୁ ଲକ୍ଷ କଣ୍ଠରେ ଗୀତ ଭୀମଭୋଇଙ୍କ ସିଦ୍ଧ ବ୍ରହ୍ମବାଣୀ ଭଜନ, ଜଣାଣ, ସ୍ତୁତି ଅବନୀ ବ୍ୟାପୁଥିଲା ବେଳେ ତାଙ୍କର ସତୀର୍ଥ ଜଣକୁ ହେଲେ ସେହି ସ୍ୱର ଝଙ୍କାର ଶୁଭି ନାହିଁ । ସୁଜ୍ଞାନୀ ପଣ୍ଡିତ ମଣ୍ଡଳୀ କେହି ଜଣେ ଆଗେଇ ଆସି ତାଙ୍କ ସାହିତ୍ୟର ତର୍ଜମା କରି ନାହାନ୍ତି । କୋଳାହଳମୟ ନଗରରେ ବହୁ ଦୂରରେ ପ୍ରବୁଦ୍ଧ ଗୁରୁ ମହିମା ସ୍ୱାମୀଙ୍କ ଶୁଭାଶିଷ ଲାଭ କରି ଭୀମଭୋଇ ରଚନା କରୁଛନ୍ତି ଏମିତି ଏକ କାଳଜୟୀ ସାହିତ୍ୟ ଯାହା ବିଶ୍ୱର ଶ୍ରେଷ୍ଠ ସାହିତ୍ୟ କୃତିର ସମତୁଲ୍ୟ ।

ସମାଲୋଚନା ଓ ସାହିତ୍ୟର ଇତିହାସକାରମାନେ ଭୀମଭୋଇଙ୍କ ସାହିତ୍ୟକୁ ସନ୍ଥ ବା ଭକ୍ତି ସାହିତ୍ୟର ପର୍ଯ୍ୟାୟଭୁକ୍ତ କରିଥାଆନ୍ତି । କିନ୍ତୁ ଲକ୍ଷ୍ୟ କରିବାର କଥା ତାଙ୍କର ପୂର୍ବଜ ବୈଷ୍ଣବ ପଞ୍ଚସଖାଙ୍କ ପଦାଙ୍କ ଅନୁସରଣ କରିବା ତ ଦୂରର କଥା ସେମାନଙ୍କ ଶାଶ୍ୱତ ପ୍ରଭାବରୁ ସେ ନିଜକୁ ମୁକ୍ତ ରଖିବାର ସଫଳ ପ୍ରୟାସ କରିଛନ୍ତି । ଭୀମଭୋଇଙ୍କ କବିତାର ଆଙ୍ଗିକ ଓ ଆତ୍ମିକ ସର୍ଜନା ଆଶ୍ଚର୍ଯ୍ୟଭାବେ ମୌଳିକ । ବିଶ୍ୱବିଖ୍ୟାତ ସମାଲୋଚକ ଟି.ଏସ୍. ଏଲିଅଟ୍ ମତ ଦିଅନ୍ତି ଓ ଆମେ ସମସ୍ତେ ଉପଲବ୍ଧ କରୁ ଗୋଟିଏ ପରମ୍ପରା ବିନା ବ୍ୟକ୍ତି ପ୍ରତିଭାର ବିକାଶ ଅସଂଭବ । କିନ୍ତୁ ଭୀମଙ୍କ କ୍ଷେତ୍ରରେ ତାର ଏକ ଅଲୌକିକ ବ୍ୟତିକ୍ରମ ଲକ୍ଷ୍ୟ କରିବାର କଥା । ତାଙ୍କର ସମସାମୟିକ ବା ନିକଟ ଅତୀତର ସ୍ରଷ୍ଟାମାନଙ୍କୁ ଠାରୁ ସେ ଏକ ଭିନ୍ନ ସ୍ୱାଦର ସାହିତ୍ୟ ସୃଷ୍ଟି କରିଛନ୍ତି । ସିଦ୍ଧ ସାଧନାରୁ ପ୍ରସୂତ ତାଙ୍କର ଚିରନ୍ତନୀ ଚିନ୍ତା । ପ୍ରାଚୀନ ସଂସ୍କୃତ, ଇଂରେଜୀ, ହିନ୍ଦୀ ଆଦି ଅନେକ ସୃଷ୍ଟି ସହ ସାମଞ୍ଜସ୍ୟ ପ୍ରତିଷ୍ଠା କରିପାରିଛି । ସବୁଠୁ ବଡ଼ କଥା ହେଲା ସାଧାରଣ ମଣିଷର କଥାକୁହା ଭାଷାରେ ସେ ବେଦାନ୍ତର ନିଗୂଢ଼ ତତ୍ତ୍ୱକୁ କୌଣସି ଆଖ୍ୟାୟିକାର ପ୍ରୟୋଗ ନ କରି ହାର୍ଦ୍ଦ୍ୟ ଭାବେ ପରିବେଷଣ କରିପାରିଛନ୍ତି ।

ସାହିତ୍ୟବିଦ୍‌ଗଣ ସହମତ ଯେ କୌଣସି ଗୋଟିଏ ଧରାବନ୍ଧା କଥାବସ୍ତୁ ନ ଥିଲେ ସାର୍ଥକ ସାହିତ୍ୟ ସୃଷ୍ଟି ସଂଭବ ନୁହେଁ । ତେଣୁ ପୁରାଣ, ଲୋକକଥା, କାହାଣୀକୁ

ଆଧାର କରି କାବ୍ୟ ସୃଷ୍ଟି ହୁଏ। ଆଦିକବି ସାରଳାଦାସ ଓ ବୈଷ୍ଣବୀୟ ପଞ୍ଚସଖା ସେଇଥିପାଇଁ ସଂସ୍କୃତ ମହାଭାରତ, ରାମାୟଣ, ଭାଗବତ, ଭଗବଦ ଗୀତାର ଉତ୍କଳୀୟ ରୂପ ସୃଷ୍ଟି କଲେ ସେହି ସମସ୍ତ କବିଙ୍କ ପ୍ରତି ଭୀମଙ୍କର ଯଥେଷ୍ଟ ଶ୍ରଦ୍ଧା ଓ ସମ୍ମାନ ଥିଲା। କିନ୍ତୁ ଭୀମ ସେମିତି କୌଣସି ପ୍ରଚେଷ୍ଟା କରି ନାହାନ୍ତି ରୀତିଯୁଗୀୟ କବିମାନେ ରାଧାକୃଷ୍ଣଙ୍କ ପ୍ରେମଭକ୍ତି ସାହିତ୍ୟ ସୃଷ୍ଟି କଲେ। କବି ସମ୍ରାଟ ରାମକଥାର କାବ୍ୟସୌଧ ନିର୍ମାଣ କରି ଗଲେ 'ବୈଦେହୀଶ ବିଳାସ' ରୂପରେ। କାହିଁ ଭୀମତ କାହାରି ପଦାଙ୍କ ଅନୁସରଣ କଲେ ନାହିଁ ! ଅବଶ୍ୟ ଯୁକ୍ତି ହୁଏ ଭୀମ ପାଠ ପଢ଼ି ନ ଥିଲେ। ନିଜେ ସେ ମଧ୍ୟ ନିଜର ଅଜ୍ଞତା ସ୍ୱୀକାର କରି ଅନେକ ପଦ ରଚନା କରିଛନ୍ତି। କିନ୍ତୁ ସେ କଣ ଜଗନ୍ନାଥ ଦାସଙ୍କ ଭାଗବତର ପକ୍ତି ଶୁଣି ନ ଥିବେ ? କିମ୍ବଦନ୍ତୀ କହେ ଭୀମ ତାଙ୍କ ମାଲିକଙ୍କ ଠାରୁ ଭାଗବତ ଶୁଣି ପ୍ରତ୍ୟେକ ଧାଡ଼ି ମନେରଖି ପାରୁଥିଲେ ଓ ପରିବେଷଣ କରିପାରୁଥିଲେ। ଭଞ୍ଜ ସଙ୍ଗୀତର ଗ୍ରାମୀଣ ପରିବେଷଣ ଶ୍ରବଣ କରି ମଧ୍ୟ ସେ ସ୍ୱୀୟ ସ୍ୱତନ୍ତ୍ରତା ପ୍ରତିପାଦିତ କରିପାରିଛନ୍ତି ।

ବିଶ୍ୱକବି ରବୀନ୍ଦ୍ରନାଥ ସ୍ୱୀୟ ମୌଳିକ ସୃଷ୍ଟି ପାଇଁ ଦୁଇଟି ଅଭାବ : ଆନୁଷ୍ଠାନିକ ଶିକ୍ଷା ଓ ଆନୁଷ୍ଠାନିକ ଧର୍ମକୁ ଦାୟୀ କରିଥିଲେ। ସେହିପରି ଭୀମଭୋଇଙ୍କ ମୌଳିକତା ପାଇଁ ତାଙ୍କର ଦୁଇଟି ସ୍ୱାଧୀନତା ଥିଲା। ସେ ପାରମ୍ପରିକ ଶିକ୍ଷା ଲାଭ କରି ନ ଥିଲେ ଓ ତାଙ୍କର କିଛି ପାରମ୍ପରିକ ଧର୍ମ ଦୀକ୍ଷା ନ ଥିଲା। ସେ ଶାସ୍ତ୍ରୀୟ ନୀତିନିୟମର ଊର୍ଦ୍ଧ୍ୱରେ ରହି ସତ୍ୟ ସାଧନ ଓ ସତ ଚିନ୍ତାରେ ଲିପ୍ତ ରହୁଥିଲେ। ହେତୁ (reason), ଚେତା (consciousness) ବଳରେ ସେ ସତ୍ୟାନୁସନ୍ଧାନର ଓ ପ୍ରତିଷ୍ଠା କରିଥିଲେ। ଏଥିପାଇଁ ତାଙ୍କପ୍ରତି ନୈସର୍ଗିକ ପ୍ରେରଣା ମିଳିଥିଲା।

ପିତା ଅଟନ୍ତି ମୋ ଅନାଦି ଠାକୁର ମାତା ଆଦି ଶକ୍ତି ନାରୀ
ଦୁତିଯୁଗଳରୁ ଜନମ ଲଭିଛି କବିକୃତ କଳା ଧରି ।
(ସ୍ତୁତି ଚିନ୍ତାମଣି)

କାଳ ସହ କାଳାତୀତର ସଂଶ୍ଲେଷଣ (intersection of time with timeless) ଘଟିଲେ ସୃଷ୍ଟି ସଂଭବ ହୁଏ। ଏହା ଦର୍ଶନସମ୍ମତ ଆକଳନ। ଭୀମଙ୍କ ସୃଷ୍ଟିସଂଭାର ଏହି ପରମ ପ୍ରକ୍ରିୟା ସଂଭବ ହୋଇଛି। ଏକ ଦିବ୍ୟ ଦୃଷ୍ଟିରେ ଭୀମ କାଳ ଓ କାଳାତୀତ ସମସ୍ତ ପ୍ରକ୍ରିୟାର ଅବଲୋକନ କରିପାରିଛନ୍ତି। ଏଥିପାଇଁ ତାଙ୍କର

କୌଣସି ଲୌକିକ ଶିକ୍ଷା ବା ଶାସ୍ତ୍ରଜ୍ଞାନର ଆବଶ୍ୟକତା ହୋଇ ନାହିଁ। ସହଜ ସରଳ ଭାଷାରେ କହିଲେ କୌଣସି ଶାସ୍ତ୍ରଜ୍ଞ ବ୍ୟକ୍ତି ଭୀମଙ୍କ ପରି ମୌଳିକ ସାହିତ୍ୟ ସୃଷ୍ଟି କରିପାରିବ ନାହିଁ ବା ଭୀମ ନିଜେ ଆନୁଷ୍ଠାନିକ ଶିକ୍ଷାଲାଭ ଓ ପାରମ୍ପରିକ ଶାସ୍ତ୍ର ଅଧ୍ୟୟନ କରିଥିଲେ ଏପରି ମୌଳିକ ସୃଷ୍ଟି କରିପାରି ନ ଥାନ୍ତେ। ନିଶ୍ଚିତରୂପେ ତାଙ୍କର ପୂର୍ବଜଗଣ ତାଙ୍କୁ ପ୍ରଭାବିତ କରିଥାଆନ୍ତେ।

ଭୀମ ଭୋଇ ଜାତିସ୍ମର ଥିଲେ। ପୂର୍ବ ଜନ୍ମର ସଂସ୍କାର ବଳରେ ସେ ବେଦ ଓ ବେଦାନ୍ତରେ ଯେଉଁ ଆଦି ସତ୍ୟର ସନ୍ଧାନ କରାଯାଇଥିଲା ତାର ପୁନଃ ସନ୍ଧାନ କରି ପାରିଥିଲେ। ସେଥିପାଇଁ ସେ ବେଦ ବେଦାନ୍ତ ପଢ଼ି ନାହାନ୍ତି। ବ୍ରହ୍ମଜ୍ଞାନ ତାଙ୍କର ମାତୃଗର୍ଭ ଜ୍ଞାନ। ସେ ଉଲ୍ଲେଖ କରିଛନ୍ତି –

ଜନନୀ ଉଦର ଗୋପ ମଧୁପୁର ପାସୋର ନ ଯାଏ ଚିତ୍ତୁ,
ମାତୃଗର୍ଭ ଯେଉଁ ପାଠ ପଢ଼ିଥିଲେ ଟିକେ ଟିକେ ଅଛି ହେତୁ।

ସମ୍ୟକ୍ ମାତୃଗର୍ଭଜ୍ଞାନ, ଗଭୀର ଅନୁଶୀଳନ ଓ ମହିମାସ୍ୱାମୀଙ୍କ ଶୁଭାଶିଷ ଲାଭ କରି ଭୀମ ଯେଉଁ କାବ୍ୟସୌଧ ନିର୍ମାଣ କରିଯାଇଛନ୍ତି ଆଲୋଚକମାନେ ତାର ଚୌହଦୀ ନିରୂପଣ କରିବାକୁ ସକ୍ଷମ ହୋଇ ନାହାନ୍ତି। ତେବେ ଗୋଟିଏ କଥା ସ୍ପଷ୍ଟ ହୋଇଛି ଭୀମ ଥିଲେ ସତ୍ୟସନ୍ଧ ଓ ତାଙ୍କର କାବ୍ୟ ସୃଷ୍ଟି ସେହି ସତ୍ୟାନୁସନ୍ଧାନର ଫଳଶ୍ରୁତି। ତାଙ୍କର ସତ୍ୟ ହିରଣ୍ମୟ ପାତ୍ରରେ ଆବୃତ୍ତ ନୁହେଁ ଅର୍ଥାତ୍ ଏହା ବିମଳ ଜ୍ଞାନ। ସେ ଏହି ସତ୍ୟକୁ ଧର୍ମ ଓ ମହିମାଧର୍ମକୁ ସତ୍ୟଧର୍ମ ଆଖ୍ୟା ଦେଇଛନ୍ତି। ସ୍ୱଗୁରୁ ପ୍ରବୁଦ୍ଧ ଗୁରୁ ମହିମାସ୍ୱାମୀ ପ୍ରଚରିତ ସତ୍ୟ ଧର୍ମ ହିଁ ତାଙ୍କ ପାଇଁ ସବୁ କିଛି।

ସତ୍ୟ ଧର୍ମ ବିନୁ କିଛି ନ ଜଣାଇ ପାପ ପୁଣ୍ୟ ଭଲ ମନ୍ଦ,
ବସି ଦିବା ନିଶି ଘୋଷି ଅହର୍ନିଶି ଶ୍ରୀଗୁରୁ ଚରଣାବିନ୍ଦ ।

(ସ୍ତୁତି ଚିନ୍ତାମଣି ୬/୫୮)

ମହାତ୍ମାଗାନ୍ଧୀ ବିମଳ ବିବେକାନୁମୋଦିତ କାର୍ଯ୍ୟକୁ ସତ୍‌କର୍ମ କହିଛନ୍ତି। ତାଙ୍କ ପାଇଁ ସତ୍ୟ ଓ ଅହିଂସା ପରିପୂରକ। ମହିମାଧର୍ମ ଏହି ସତ୍ୟ ଓ ଅହିଂସା ଉପରେ ଆଧାରିତ। ତେଣୁ ଭୀମ ମହିମା ମାର୍ଗ ନିର୍ଣ୍ଣୟ କରି ଗାଇଛନ୍ତି –

ସତ୍ୟ କର୍ମ କର ସତ୍ୟ ଧର୍ମ ଧର ସତ୍ୟ କର ଗୁରୁ ସେବା,
ପ୍ରସନ୍ନ ହୋଇବେ ଅଲେଖ ପୁରୁଷ, ଅବଶ୍ୟ ମୁକତି ଦେବା। (୪/୮୨)

ସତ୍ୟରେ ସ୍ନାହାନ ସତ୍ୟରେ ମାର୍ଜନ, ସତ୍ୟରେ କର ଭୋଜନ,
ସାତ୍ତ୍ୱିକ କର୍ମରେ ସେ ଅଲେଖ ଦିଅଁ ନିଶ୍ଚୟ ହେବେ ପ୍ରସନ୍ନ। (୫/୮୨)
ସତ୍ୟରେ ଶୋଇବ ସତ୍ୟରେ ବସିବ ସତ୍ୟ କରି ଫନ୍ଦା ବୃତ୍ତି,
ମହିମା ଭଜିବା ଲୋକମାନେ ଯେତେ କର ଏହି ଧର୍ମକୀର୍ତ୍ତି। (୬/୮)
ସତ୍ୟରେ କହିବ, ସତ୍ୟ ରହିଥିବ ସତ୍ୟରେ ଯିବ ଆସିବ,
ସତ୍ୟ କର୍ମରେ ଯେତେ କୀରତିମାନ ଯୁଗ ଯୁଗ ରହିଥିବ। (୭/୯)
(ସ୍ତୁତି ଚିନ୍ତାମଣି)

ପୁଣି ଧର୍ମର ସଂଜ୍ଞା ନିରୂପିତ ହୋଇଛି- ଧର୍ମପଦ ଯେ ଅଟଇ ସତ୍ୟାଦିବଚନ ନୁହଇ ଆନ (ଭଜନ-୧୬୩)

ମହିମା ଧର୍ମର ଉପାସ୍ୟ ଗୁରୁ ସତ୍ୟାଦି ପୁରୁଷ। ତାଙ୍କର ଅନୁଭବ କେବଳ ସତମାର୍ଗରେ ହିଁ ସମ୍ଭବ। ତେଣୁ ମହିମା ମାର୍ଗ ଅବ୍ୟଭିଚାରୀ (unadultered) ଧାରା। ଏଠାରେ କପଟତାର ସ୍ଥାନ ନାହିଁ। ସତ୍ୟାନୁଭବ, ସଦାଭିବ୍ୟକ୍ତି ଓ ସଦାଚାର ହେଉଛି ମହିମା ମାର୍ଗର ମୂଳମନ୍ତ୍ର। ଭୀମ ଏହି ପନ୍ଥାର ଅଗ୍ରଣୀ ପଦଚାରୀ ଭାବେ ଅନୁଗାମୀମାନଙ୍କୁ ଏହି ସତ୍ୟର ଉତ୍ସ ଅନାଦି ଅଲେଖ ବ୍ରହ୍ମ ବୋଲି ନିର୍ଣ୍ଣୟ କରିଛନ୍ତି। ଆତ୍ମାନୁଶୀଳନ କରି ସେ ଯେଉଁ ସତ୍ୟ ଉପଲବ୍ଧ କରି ତାହା ଉପନିଷଦୀୟ ଅନୁଭବ ପରି ଶାଶ୍ୱତ। ବ୍ରହ୍ମଙ୍କ ସ୍ୱରୂପ ନିରୂପଣ କରି ଭୀମ ଭୋଇ ଲେଖୁଛନ୍ତି –

ନାହିଁ ତାଙ୍କ ବର୍ଣ୍ଣ ଚିହ୍ନ। ଅଶେଷ ରୂପରୁ ଭିନ୍ନ ।।
ନାହିଁ ତାଙ୍କ ଜିହ୍ୱାନାସା। ଉତ୍ତର ନ ଦିଏ ଭାଷା ।।

ପୁନଶ୍ଚ : ପାଦ ପାଣି ନାହିଁ ତାକୁ ଧରିବ କିଏ ।
ଏମନ୍ତ ବ୍ରହ୍ମ ସ୍ୱରୂପ ଚିହ୍ନା ନ ଯାଏ ।
ଯାର ନାହିଁ ରୂପକାୟା ତାକୁ କି ଲାଗିବ ମାୟା ?

ମୁଣ୍ଡକ ଉପନିଷଦରେ ବ୍ରହ୍ମ ନିରୂପଣ କରାଯାଇଛି –

ଯତ୍ ତଦ୍ ଅଦୃଶ୍ୟମ୍ ଅଗ୍ରାହ୍ୟମ୍
ଅଗୋତ୍ରମ୍ ଅବର୍ଣ୍ଣମ ଅଚକ୍ଷୁ ଶ୍ରୋତମ।
ତତ୍ ଅପାଣିପାଦମ୍।

ଗୋସ୍ୱାମୀ ତୁଳସୀ ଦାସ, ରାମଚରିତ ମାନସରେ ରାମଙ୍କୁ ବ୍ରହ୍ମ ରୂପେ ବର୍ଣ୍ଣନା କରିଛନ୍ତି । ସେ ମଧ୍ୟ ଉପନିଷଦୀୟ ସତ୍ୟର ସନ୍ଧାନ କରିଛନ୍ତି । ସେ ଗାଇଛନ୍ତି-

ତନୁ ନେହି ପରଶ, ନୟନ ନହି ଦେଖା,
ଗ୍ରାହାୟି ପ୍ରାଣ ବିନୁ ରୂପ ଅଶେଷା ।

ଏଠାରେ ଲକ୍ଷ୍ୟ କରିବାର କଥା ଗୋସ୍ୱାମୀଜୀ ସାକାର ଓ ନିରାକାର ରାମ ବ୍ରହ୍ମଙ୍କୁ ଏକତ୍ର ଦେଖୁଥିବାରୁ ଅରୂପକୁ ସ୍ପର୍ଶକ୍ଷମ ଓ ଅଚକ୍ଷୁକୁ ଦର୍ଶନକ୍ଷମ କରିଛନ୍ତି । କିନ୍ତୁ ଭୀମଙ୍କ ସତ୍ୟସିଦ୍ଧ ନିରାକାର ବ୍ରହ୍ମ 'ଅଚକ୍ଷୁଶ୍ରୋତମ' ହୋଇ ଉତ୍ତର ନ ଦିଏ ଭାଷା । ବ୍ରହ୍ମ କେଉଁ ଭାଷାରେ ବା ଉତ୍ତର ଦେବେ ? ଖ୍ରୀଷ୍ଟଧର୍ମୀଙ୍କ ମତରେ ହିବ୍ରୁ ଈଶ୍ୱରଙ୍କ ଭାଷା, ହିନ୍ଦୁମାନଙ୍କ ମତରେ ସଂସ୍କୃତ ଦେବ ଭାଷା । ଆଜିର ମଣିଷ ପାଇଁ ଏ ଦୁଇଟିରୁ କେଉଁଟି ସତ୍ୟ କେଉଁଟି ବାସ୍ତବ ? ଏହା ସତ୍ୟର ସାମଗ୍ରିକ ପରିପ୍ରକାଶ କି ?

ଭୀମଙ୍କ କବିତା ସୃଷ୍ଟିରେ ଏକମାତ୍ର ପ୍ରୟାସ ଥିଲା ବ୍ରହ୍ମଜ୍ଞାନର ପରିପ୍ରକାଶ । ତେଣୁ ସେ ଯେତେବେଳେ ବ୍ରହ୍ମ ସମ୍ପର୍କିତ ସତ୍ୟର ସନ୍ଧାନ କରୁଥିଲେ, ତାର ଅଭିବ୍ୟକ୍ତି କରୁଥିଲେ ସାଧାରଣ ବୋଧଗମ୍ୟ ଭାଷାରେ । ବ୍ରହ୍ମଙ୍କ ସର୍ବବ୍ୟାପକତା ସମ୍ପର୍କରେ ସେ କହିଛନ୍ତି,

ସ୍ଥାବରୁ ଜଙ୍ଗମ କୀଟରୁ ପତଙ୍ଗ ଋହିଁଦେଲେ ଅନୁସରି,
ସକଳ ଘଟରେ ପୁରୀ ସମାନରେ ନୁହେଁ ସାନବଡ଼ କରି ।

ଈଶୋପନିଷଦ୍‌ରେ କୁହାଯାଇଛି –

ଈଶାବାଶ୍ୟମ୍ ଇଦମ୍ ସର୍ବଂ ଯତ୍ କିଂଚିତ୍ ଜଗତ୍ୟାମଜଗତ୍,
ତେନ ତ୍ୟକ୍ତେନ ଭୁଞ୍ଜିଥା ମା ଗୃଧ କସ୍ୟସ୍ୱିଦ୍ ଧନମ୍ ।

ଉପନିଷଦର ଏହି ଶ୍ଳୋକଟିରେ ଈଶ୍ୱରଙ୍କ ସର୍ବବ୍ୟାପକତା ହେତୁ ବସ୍ତୁ ସହ ବ୍ୟକ୍ତିସତ୍ତାର ତ୍ୟାଗଯୁକ୍ତ ସମ୍ପର୍କ ସ୍ଥାପନ କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଭୀମ ମଧ୍ୟ ଏକ ଭଜନରେ ଖୁବ ସଂକ୍ଷେପରେ 'ତେନ ତ୍ୟକ୍ତେନ ଭୁଞ୍ଜିଥା'ର ଏକ ରୂପାନ୍ତରିତ ବକ୍ତବ୍ୟ ଦେଇ ଗାଇଛନ୍ତି – 'ସମର୍ପି ଦେଲି ପାଇଲି ସର୍ବ ।' ସତେ ଯେପରି ଉପନିଷଦକାର କହୁଛନ୍ତି । ତ୍ୟାଗପୂର୍ବକ ଭୋଗ କର, ବହୁ ଶତାବ୍ଦୀ ପରେ ଦିବ୍ୟଦ୍ରଷ୍ଟା ଭୀମ ତାଙ୍କ ମୁହଁକୁ ଋହିଁ କହିଲା ପରି କହୁଛି- 'ସମର୍ପଣ କରି ସବୁ ପାଇଲି' । ଉପନିଷଦ୍‌ରେ ଶବ୍ଦପେଟିକାରୁ ସାଧାରଣ ମଣିଷ ପାଇଁ ଭୀମ ମନ୍ତ୍ର ଉଚ୍ଚାରଣ କରୁଛନ୍ତି,

ସେହି ସାଧାରଣ ମଣିଷର କଥିତ ଭାଷାରେ ଉପନିଷଦ ଉପଦେଶ ଦେଇହେବ, ଭୀମ ଉଦାହରଣ ଦେଇଛନ୍ତି। ଯୋଗୀ ଶ୍ରୀ ଅରବିନ୍ଦ କହିଥିଲେ କବିତାର ସର୍ବୋଚ୍ଚ ଉତ୍ତରଣର ଅନ୍ୟ ନାମ ମନ୍ତ୍ର। ଭୀମଙ୍କ ପ୍ରତ୍ୟେକ ପଂକ୍ତି ଗୋଟିଏ ଗୋଟିଏ ସୂକ୍ତ ଏବଂ ଭୀମ ଦେଉଛନ୍ତି ନିରୋଳା ମାନବବାଦର ମାନ୍ତ୍ରିକ। ସେ ସିନା ନିଜେ ଗୀତା ଭାଗବତ, ବେଦ ସାରସ୍ୱତ ପୋଥା କରି ନାହାନ୍ତି, ତାଙ୍କର ପଲ୍ଲିଭାଷାରେ ଗୀତରେ ଶ୍ଳୋକର ପ୍ରତିଧ୍ୱନି ଶୁଣିବାକୁ ମିଳୁଛି। ବ୍ରହ୍ମଙ୍କ ଅବସ୍ଥିତି ସଂପର୍କରେ ଗୀତାକାର କହନ୍ତି,

ନ ତଦଭାସୟେତ୍ ସୂର୍ଯ୍ୟା। ନଶଶାଙ୍କୋନପାବକଃ।
ଯଦ ଗତ୍ୱା ନ ନିବର୍ତ୍ତନ୍ତେ। ତଦ୍ଧାମପରମଂ ମମ ।

ବ୍ରହ୍ମଲୋକରେ ସୂର୍ଯ୍ୟ ଦିବସରେ ଦୀପ୍ତି ପ୍ରକଟ କରେ ନାହିଁ ବା ଚନ୍ଦ୍ର ରଜନୀକୁ ଜ୍ୟୋତ୍ସ୍ନା ପ୍ଳାବିତ କରେ ନାହିଁ। ସେଠାକୁ ଥରେ ଯାଇଥିବା ଲୋକ ଆଉ ଫେରିପାରେ ନାହିଁ। ବ୍ରହ୍ମ ପ୍ରାପ୍ତି ଅର୍ଥାତ ଅଖଣ୍ଡ ଆଶିଷ ପ୍ରାପ୍ତି। ଭୀମ ମଧ୍ୟ ବ୍ରହ୍ମଙ୍କର ଅନୁରୂପ ଆବାସସ୍ଥଳ ନିର୍ଣ୍ଣୟ କରୁଛନ୍ତି –

ଯେଉଁଠାରେ ବ୍ରହ୍ମ ଅଛି, ଉଦେଅସ୍ତ ନାହିଁ କିଛି
ପୁଣି – ଅଭୟପୁର ମଣ୍ଡଳ। ନାହିଁ ଅନ୍ଧାର ଉଜ୍ଜ୍ୱଳ
ପୁଣି – ଅଲେଖ ପାଟଣାପୁର ସେ ଠାବରେ ତାଙ୍କ ଘର,
ନାହିଁ ଶରଦ ଉଷୁମ ସାଧୁଜନେ ହେତୁ କର।

ଏହି ବ୍ରହ୍ମପ୍ରାପ୍ତି ହିଁ ସମସ୍ତ ସଚେତନ ପ୍ରାଣୀର କାମ୍ୟ। କିନ୍ତୁ ଏହା ସର୍ବତୋଭାବେ ପ୍ରଶାନ୍ତ। ମୋକ୍ଷସ୍ଥଳ ପ୍ରାପ୍ତି ଏତେ ସହଜସାଧ୍ୟ ନୁହେଁ। ସେଥିପାଇଁ ଜାଗ୍ରତ ହେବାକୁ ହେବ। ଉପନିଷଦକାର କହୁଛନ୍ତି,

ଉତିଷ୍ଠତ ଜାଗ୍ରତ ପ୍ରାପ୍ୟବରାନ୍ ନିବୋଧତ,
କ୍ଷୁରସ୍ୟଧାରଂ ନିଶି ଗୁହୟା ଦୁର୍ଗପଥସ୍ତାତ କବିୟୋବଦନ୍ତି।

ଚିର ଜାଗ୍ରତ ହେବାକୁ ହେବ। ସାଧୁସୁଜ୍ଞଜନଙ୍କୁ ଭେଟି ପଚାରି ବୁଝିବାକୁ ହେବ କିପରି ସେ ଅଗମ୍ୟ ସ୍ଥାନକୁ ଗମନ କରିବା। ଖୁରଧାର ପରି ଦୁର୍ଗମ ସେ ପଥ। ଭୀମ ଉପଲବ୍ଧ କହିଛନ୍ତି ଏ ସତ୍ୟ। ସେ ଗାଉଛନ୍ତି –

ଘୋର କଳିକାଳେ ଏ ଧର୍ମ ଉଦିତ ତହିଁରୁ ନାହିଁନା ବଢ଼,
ଅଲେଖ ମହିମା ନାମ ଯେଉଁ ପଦ ଅଙ୍ଗାଇତ ଖଣ୍ଡୋଦାଢ଼ ।

ପୁଣି –  ଦୁର୍ଗମ ପଥ ଅଟଇ ହସ୍ତ ଗୋଡ଼ ପାଉ ନାହିଁ

ତେଣୁ – ଉଠ ମନ କର ଦରଶନ। ପୁଣି ପ୍ରଭୁଙ୍କୁ କହିଛନ୍ତି –

ଉଠ ଉଠ ବିଜେ କର। "ଉତ୍ତିଷ୍ଟତ, ଜାଗ୍ରତ"।
ଦେଖ ଆଦି ବ୍ରହ୍ମ ମୂର୍ତ୍ତି ନିତି ପଡ଼ିଛି ଆହୁତି
ଚିହ୍ନି ସୁଜ୍ଞ ଜନ ସାଧୁ ନିରନ୍ତର ଭଜୁଛନ୍ତି।
ମହାନିର୍ବେଦ/ଦୁର୍ଗମ ଅଟଇ ଏ ପଥ ଅର୍ନ୍ତଗତେ।
ନାମଯଜ୍ଞ ହୁଅ ରହିତ ।

ଯେଉଁ ସାଧୁ ସୁଜ୍ଞଜନ ନିରନ୍ତର ବ୍ରହ୍ମଚେତନାରେ ନିମଗ୍ନ ଅଛନ୍ତି ସେହିମାନେ ଶ୍ରେଷ୍ଠ। ତାଙ୍କୁ ଭେଟିବା ପାଇଁ ତାଙ୍କଠାରୁ ବ୍ରହ୍ମଚର୍ଯ୍ୟ ମନ୍ତ୍ର ଶିକ୍ଷା ପାଇଁ ଆମକୁ ଉଠିବାକୁ ହେବ, ଜାଗିବାକୁ ହେବ। ଉପନିଷଦୀୟ ଉଦ୍‌ଘୋଷଣାକୁ ସାଧାରଣ ଭାଷାରେ ବ୍ୟକ୍ତ କରି ମଧ୍ଯ ସେହି ସତ୍ୟ ତଥ୍ୟର ଆତ୍ମିକ ଅବକ୍ଷୟ ଘଟିଛି କି ? ବେଳେ ବେଳେ ଭୀମଙ୍କ ସ୍ୱର ହୋଇ ଉଠିଛି ଅଧିକତର ଉଦାତ୍ତ ଓ ସ୍ୱଚ୍ଛ। ସେ ବ୍ରହ୍ମକୁ ସତ୍ ଚିତ୍ ଓ ଆନନ୍ଦ ରୂପେ ଆକଳନ କରି ବ୍ରହ୍ମଙ୍କ ପୂର୍ଣ୍ଣତା ତତ୍ତ୍ୱ, 'ପୂର୍ଣ୍ଣ ମିଦଂ ପୂର୍ଣ୍ଣମଦଂ'କୁ ନିଜସ୍ୱ ଅନୁଭବରେ ନିଜ ଭାଷାରେ କହୁଛନ୍ତି ;

ସଦାଜୟ ପୂର୍ଣ୍ଣାନନ୍ଦ। ପାଇଲେ ଚରଣେବିନ୍ଦ ।

ଭୀମଭୋଇ ଥିଲେ ବ୍ରହ୍ମ ଦ୍ରଷ୍ଟା, ଦିବ୍ୟଦ୍ରଷ୍ଟା, ସତ୍ୟଦ୍ରଷ୍ଟା। ତେଣୁ ଯାଜ୍ଞବଲକ୍ୟାଦି ଋଷି ମୁନି ଯେଉଁ ସତ୍ୟ ସନ୍ଧାନ କରିଥିଲେ, ଭୀମ ମଧ୍ୟ ସେହି ସତ୍ୟ ସନ୍ଧାନ କରିଥିଲେ।। ତାଙ୍କର ଉପଲବ୍ଧ ଥିଲା ସ୍ୱୟଂସଂପୂର୍ଣ୍ଣ ଓ ମୌଳିକ। ପ୍ରତି ପଂକ୍ତି କବିତାରେ ଭୀମ ମନ୍ତ୍ରବତ୍ ଉଚ୍ଚାରଣ କରି ଓଡ଼ିଆ ସାହିତ୍ୟରେ ଏକ ସଂଭାବନା ସୃଷ୍ଟି କରିଛନ୍ତି ଯାହା ଅନ୍ୟ କୌଣସି କବି ବା ସାଧକ କରିପାରି ନାହାନ୍ତି।

ବ୍ରହ୍ମ ସଂଧାନ କରି ସେହି ବ୍ରହ୍ମଙ୍କ ସର୍ବଶକ୍ତିମୟ ପଦରେ ଆତ୍ମ ସମର୍ପଣ କରି ଗାଇଛନ୍ତି,

ତୁମ୍ଭେ ତାତ ମାତ ଇଷ୍ଟ ବଂଧୁ ଭ୍ରାତ, ଭକ୍ତର ହୃଦୟ ମଣି।
ତେଣୁ ତୁମ୍ଭ ପଦେ ଶରଣ ପଶୁଛି ଭବରୁ ରଖିବ ଛାଣି ॥

ତ୍ୱମେବ ପିତାଚ ମାତା ତ୍ୱମେବ ...

କେବଳ ବ୍ରହ୍ମ ନିରୂପଣରେ ଭୀମ ଭୋଇଙ୍କ କବିମନୀଷା ସନ୍ତୁଷ୍ଟ ହୋଇ ନାହାନ୍ତି। ବ୍ରହ୍ମଙ୍କ ସୃଷ୍ଟି ପିଣ୍ଡ ଓ ବ୍ରହ୍ମାଣ୍ଡ ତାଙ୍କ କବିତାର ଅନ୍ୟ ଦୁଇ ପ୍ରମୁଖ କଥାବସ୍ତୁ। ସେ ସେହି ପିଣ୍ଡବ୍ରହ୍ମାଣ୍ଡର ସୁରକ୍ଷା ପାଇଁ ବ୍ରହ୍ମଙ୍କୁ ଆକୁଳ ଆବେଦନ କରି ଗାଇଛନ୍ତି –

ବ୍ରହ୍ମ ହୁଅ ପରକାଶ,
ପିଣ୍ଡବ୍ରହ୍ମାଣ୍ଡ ଦୂରିତ, ଝଟତିରେ ନାଶ।

ତା'ର କାରଣ ଦର୍ଶାଇବାକୁ ଯାଇ ନିଷ୍କପଟ ଭାବେ ଶିଶୁସୁଲଭ ସରଳ ଭାଷାରେ ଭୀମ ଜଣାଣ କରୁଛନ୍ତି,

ଅଶେଷ ବ୍ରହ୍ମାଣ୍ଡ ତୁଚ୍ଛା ଜୀବ ଯେବେ କାହିଁରେ ରହିବି ମୁହିଁ।
ମନ ଛନ ଛନ ହେଉଛି ଉଛନ୍ନ, ଏ ପିଣ୍ଡବ୍ରହ୍ମାଣ୍ଡ ପାଇଁ ।।

ସେ ଲକ୍ଷ୍ୟ କରୁଛନ୍ତି ବ୍ରହ୍ମାଣ୍ଡ ପାତକ ଭାରାରେ ଜର୍ଜରିତ। ତେଣୁ ଏହାର ଧ୍ୱଂସ ଅବସମ୍ଭାବୀ। ଧ୍ୱଂସ ମୁଖରୁ ଏ ବିଶ୍ୱବ୍ରହ୍ମାଣ୍ଡକୁ ରକ୍ଷା କରିବା ପାଇଁ ଗୁରୁଦେବ ସ୍ୱାମୀ ହିଁ କେବଳ ସମର୍ଥ। ତେଣୁ ତାଙ୍କରି 'ରଞ୍ଜିଲା' ବିଶ୍ୱକୁ ରକ୍ଷା କରିବା ପାଇଁ ସେ ତାଙ୍କୁ ହିଁ ପ୍ରାର୍ଥନା କରି ସଚେତନ ମନୁଷ୍ୟ ସମାଜର ଆପଣେ ଆପେ ପ୍ରତିନିଧିତ୍ୱ କରୁଛନ୍ତି ଯାହା ତାଙ୍କର ବିରଳ ମାନବବାଦୀ ମାନସିକତାର ପରିଚୟ ଦେଉଛି,

ବେଳକୁ ବେଳ ବଚନ କହିଲାଣି ନାଶିବ ପିଣ୍ଡବ୍ରହ୍ମାଣ୍ଡ ।
ସମସ୍ତଙ୍କୁ ଏକାବେଳେ ମୁଁ ଭକ୍ଷିବି ଛେଦି ପକାଇବି ମୁଣ୍ଡ। ( ୧୭/୪୬ )
ଏ ବଚନ କାଳ ମୁଖେ ଭାସିଲାଣି କେମନ୍ତେ ହେଉଛି କଥା,
କିମ୍ବା ଏ ପିଣ୍ଡବ୍ରହ୍ମାଣ୍ଡ କେମନ୍ତେ ରହିବ ଲାଗୁଅଛି ମୋତେ ଚିନ୍ତା ( ୧୮/୪୬ )
ଏତେବେଳେ ଦେଖ ମହାଶୂନ୍ୟଦେହୀ ଛାଣିରଖ ଭବାର୍ଣ୍ଣବୁ,
ସତ୍ୟ ଧର୍ମ ଘେନି ଉଦୟ ହୋଇଛି ଅଟ ଯେବେ ମହାପ୍ରଭୁ। (୧୯/୪୬)

ମହିମାଧର୍ମର ଉଦାରବାଦୀ ଦର୍ଶନ, ବ୍ରହ୍ମାଣ୍ଡ ମଙ୍ଗଳରେ ପିଣ୍ଡର ମଙ୍ଗଳ, ଜଗତ ଭଗତର ମୁକ୍ତିରେ ବ୍ୟକ୍ତିର ମୁକ୍ତି, ଭୀମ ଭୋଇଙ୍କ କବିତାର ଛତ୍ରେ ଛତ୍ରେ ଲିପିବଦ୍ଧ। ବ୍ରହ୍ମାଣ୍ଡ ବିଲୟରେ ବ୍ୟକ୍ତିର ବିଲୟ ନିହିତ। ତେଣୁ ବ୍ୟକ୍ତି ସ୍ୱାର୍ଥ ନୁହେଁ, ବ୍ୟଷ୍ଟୀ ସ୍ୱାର୍ଥ ଦ୍ୱାରା ହିଁ ବୃହତ୍ତର କାର୍ଯ୍ୟ ସାଧିତ ଓ ସଂପାଦିତ ହୋଇପାରିବ। ସେଇଥିପାଇଁ ସେ ଆତ୍ମୋତ୍ସର୍ଗର ମହାମନ୍ତ୍ରମାନ କରିଛନ୍ତି –

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ, ଦେଖୁ ଦେଖୁ କେବା ସହୁ।
ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ॥

ମାନବ ଜାତିର ପରମ ହିତୈଷୀ ଭୀମ ଭୋଇ ଥିଲେ ପରମ ଦରଦୀ। ତାଙ୍କର ପ୍ରାଣ ପର ପାଇଁ ସଦାସର୍ବଦା ବିଚଳିତ ହେଉଥିଲା। ସକଳ ପ୍ରକାର ଦୁଷ୍କ୍ରିୟାର ପ୍ରତିକ୍ରିୟା ପ୍ରକାଶ କରି ଭୀମଭୋଇ ଭିନ୍ନ ଭିନ୍ନ ପ୍ରସଙ୍ଗରେ ଜଣାଣ କରିଛନ୍ତି। ପର ଦୁଃଖ ସହି ନ ପାରି ନିଜେ ନର୍କଗାମୀ ହୋଇ ଜନଜଗତର ମଙ୍ଗଳ ପାଇଁ ସେ ଯେଉଁ ଆହ୍ୱାନ ଦେଲେ ତାହା ବିଶ୍ୱ ସାହିତ୍ୟରେ ବିରଳ। ଅବଶ୍ୟ ପୂର୍ବରୁ ଆର୍ଯ୍ୟଋଷିଗଣ ବିଶ୍ୱମଙ୍ଗଳ କାମନା କରି ଗାଇଥିଲେ-

ସର୍ବେ ଭବନ୍ତୁ ସୁଖିନୋ ସର୍ବେ ସନ୍ତୁ ନିରାମୟାଃ,
ସର୍ବେ ଭଦ୍ରାଣି ପଶ୍ୟନ୍ତୁ। ମା କଶ୍ଚିତ୍ ଦୁଃଖ ଭାବ ଭବେତ୍।

ଅଥବା : କାମୟେ ଦୁଃଖତପ୍ତାନାଂ। ପ୍ରାଣୀନାଂ ଆର୍ତ୍ତନାଶନମ ॥

କିନ୍ତୁ କେହି ଏ ନିମିତ୍ତ ମୂଲ୍ୟ ଦେବା ପାଇଁ ପ୍ରସ୍ତୁତ ନ ଥିଲେ। ଭୀମଙ୍କର ନର୍କଗତି ପ୍ରସ୍ତାବ ବିଶ୍ୱଚେତନା ପ୍ରତି ଏକ ଶକ୍ତ ଆହ୍ୱାନ। ଋକ୍ ବେଦର ସତ ପରିଚିନ୍ତନର ଆହ୍ୱାନ। 'ଆନୋଭଦ୍ରା କ୍ରତବୋ ଜନ୍ତୁ ବିଶ୍ୱତଃ', ମୋ ନିକଟରୁ ସବୁ ଦିଗରୁ ସତ ଚିନ୍ତା, ମହତ ଚିନ୍ତା ଆସୁ ବୋଲି ପ୍ରାର୍ଥନା କରାଯାଇଛି। ସମସ୍ତେ ମହତ ଚିନ୍ତା କରନ୍ତୁ ବୋଲି ବେଦାନ୍ତବିଦ୍‌ଗଣ ଆହ୍ୱାନ କଲେ। କିନ୍ତୁ ଭୀମ ଆତ୍ମପ୍ରତ୍ୟୟର ସହିତ କହିଲେ,

ସୁବିଚ୍ଛର ବିନୁ କପଟ ବିଚ୍ଛର ଅର୍ଥ ର୍ଗତେ ଥିଲେ ରଖି
ଭଣେ ଭୀମ ଭୋଇ ଗୁରୁପାଦ ଧ୍ୟାୟି ଗୁରୁଦେବ ଛନ୍ତି ସାକ୍ଷୀ।

"ପ୍ରାଣୀମାନଙ୍କର ଆନନ୍ଦ ମଙ୍ଗଳ, ଅନ୍ୟରେ କି ଲାଭ ଅଛି ?" ଭୀମ ଭୋଇଙ୍କ ଅଭିଳାଷ। ମହାତ୍ମାଗାନ୍ଧୀଙ୍କ ପରି ସବୁ ଆଖିରୁ ଲୁହ ସବୁ ପୋଛି ଦେବାର ଦୁର୍ବାର ଅଭୀପ୍ସା ତାଙ୍କୁ ଅନନ୍ୟ କବି ପଦରେ ଅଧିଷ୍ଠିତ କରିଛି। ପାଶ୍ଚାତ୍ୟ ସମାଲୋଚକ ଟି.ଏସ୍. ଏଲିଅଟ କହିଥିଲେ ସାର୍ଥକ କବିତାରେ କବି ବ୍ୟକ୍ତିତ୍ୱର ପ୍ରକାଶ ଘଟେ ନାହିଁ, ବରଂ ପରିସମାପ୍ତି ଘଟେ। ସେ ସବୁ ସମାଲୋଚକୀୟ ଜଞ୍ଜାଳ ସଂପର୍କରେ ସଚେତନ ନ ଥାଇ ଆତ୍ମିକ କ୍ଷେତ୍ରରେ ଆତ୍ମୋତ୍ସର୍ଗର ଯେଉଁ ମହାନ୍ ଉଦାହରଣ

ଦେଖାଯାଉଛି, ତାକୁ ଯେକୌଣସି ଭାବରେ ପ୍ରକାଶ କଲେ ମଧ୍ୟ ତାହା ସାର୍ଥକ କବିତା ହୋଇଯିବ ।

ଭୀମ ଜାଣିଥିଲେ କେବଳ ଜଣେ ଲୋକର ଆତ୍ମବଳୀ ସମୟ ସମୁଦ୍ରରେ ଗୋଟିଏ ତରଙ୍ଗ ସୃଷ୍ଟି କରି ପୁଣି ବିଲୁପ୍ତ ହୋଇଯିବ। ତେଣୁ ବହୁ ସଂଖ୍ୟାରେ, ଏପରିକି ସମସ୍ତେ ଧର୍ମର ଠିକ ଅର୍ଥ ବୁଝନ୍ତୁ, ଠିକ ବ୍ୟବହାର କରନ୍ତୁ, । କାରଣ ଧର୍ମ ନାମରେ ବେଶି ସାମାଜିକ ବିଶୃଙ୍ଖଳା ଦେଖାଦେଇଛି । କେବଳ 'ହେତୁ ଚେତା' ପ୍ରୟୋଗ କରି ଧର୍ମ ପ୍ରଚାର ଓ ପ୍ରୟୋଗ କରାଯାଇପାରିବ । ତେଣୁ ସେ ଇଷ୍ଟ ମହିମା ସ୍ୱାମୀଙ୍କୁ ପ୍ରାର୍ଥନା କରିଯାଇଛନ୍ତି

ଏକୋଇଶପୁର ଚଉଦ ବ୍ରହ୍ମାଣ୍ଡ ଯେଉଁଠାରେ ଯେବା ଛନ୍ତି,
ସବୁଠାରେ ପ୍ରଭୁ ହେତୁ ଚେତା ଦିଅ ଉଠୁ ଅଲେଖ ଭଗତି ।

ଧର୍ମରାଜ୍ୟରେ ବିବେକ ବିଚାର ପ୍ରୟୋଗ ପାଇଁ ଭୀମ ଯେଉଁ ଆହ୍ୱାନ ଦେଇଛନ୍ତି, ତାହା ଆଜି ଏକ ଆନ୍ଦୋଳନରେ ପରିଣତ ହୋଇଛି । ସବୁକ୍ଷେତ୍ରରେ ବିବେକ ବିଚାର ପ୍ରୟୋଗ କରିବାକୁ ଆହ୍ୱାନ ଦେଇଥିଲେ ବୋଲି ସକ୍ରେଟିସ୍‌ଙ୍କ ପରି ବିଶ୍ୱର ପ୍ରଥମ ଦାର୍ଶନିକଙ୍କୁ ବିଷପାନ କରି ପ୍ରାଣ ଦେବାକୁ ପଡ଼ିଥିଲା । ତାଙ୍କର ସେହି ମହତ ଆକାଂକ୍ଷା ଦୁଇ ସହସ୍ର ବର୍ଷ ପରେ ଭୀମ ତାଙ୍କର କାର୍ଯ୍ୟ ଓ ବାକ୍ୟରେ ପ୍ରଦର୍ଶିତ କଲେ। ସେଇଥିପାଇଁ ତାଙ୍କୁ ଅନେକ ଦୁଃଖ ସହିବାକୁ ହେଲା । ପଳାୟନ କରିବାକୁ ହେଲା, ସ୍ଥାନରୁ ସ୍ଥାନାନ୍ତର । କିନ୍ତୁ ଦୃଢ଼ ମନୋବଳ, ଗଭୀର ଆତ୍ମବିଶ୍ୱାସ ଓ ବିଭୁ ପ୍ରେମବଳରେ ସେ ଅସାଧ ସାଧନ କଲେ । ଏହି ସତ୍ୟ ସଂସ୍ଥାପନା ସଂପର୍କରେ ସେ ଅନେକ ତଥ୍ୟ ସ୍ୱୀୟ ଶ୍ରେଷ୍ଠ କୃତୀ, 'ସ୍ତୁତିଚିନ୍ତାମଣି'ରେ ଉପସ୍ଥାପିତ କରିଛନ୍ତି ଦିବ୍ୟଦ୍ରଷ୍ଟା କବି ଅନୁଭବ କରିଛନ୍ତି, କୁସଂସ୍କାର, ସ୍ୱାର୍ଥାନ୍ଧତା, ଦୁଷ୍କର୍ମ, ଦୁର୍ନୀତି କବଳରେ ସମସାମୟିକ ପୃଥ୍ୱୀ ଉତ୍ପୀଡ଼ିତ । ମହିମା ଧର୍ମ, ଅନ୍ୟ ପକ୍ଷରେ ବିଶୁଦ୍ଧ ସତ୍ୟ ତଥ୍ୟ ଉପରେ ଆଧାରିତ ତେଣୁ ସେହି ଦୁଇ ସ୍ରୋତ ମଧ୍ୟରେ ସଂଘର୍ଷ ଅନିବାର୍ଯ୍ୟ ।

ଏକ ସୁନ୍ଦର କାବ୍ୟିକ ଚିତ୍ରକଳ୍ପ ମାଧ୍ୟମରେ ସେ ବର୍ଣ୍ଣନା କରୁଛନ୍ତି,

ମହାଘୋର କଳିପାପସାଗରକୁ ମହିମା ସାଗର ଧର୍ମ,
ବେନିକୂଳ ମିଳି ଯୁଦ୍ଧ ଲାଗିଛନ୍ତି କିସ ଦେବା ଅନୁପମ । (୯/୮୯)

ଏହି ପରସ୍ପର ବିରୋଧୀ ଭାବଧାରାକୁ ଅନ୍ୟତ୍ର ସେ 'ଭବସିନ୍ଧୁ' ଓ 'ଭାବସିନ୍ଧୁ' ରୂପେ ଆକଳନ କରିଛନ୍ତି ଏବଂ ସତ୍ୟର ଅନୁଗାମୀ ହୋଇଛନ୍ତି । ଅସତ୍ୟ କବଳିତ ଅସତ୍ୟର ସମର୍ଥକମାନେ ତାଙ୍କର ଜୀବନ ଦୁର୍ବିସହ କରି ଦେଇଛନ୍ତି । ସେ କହୁଛନ୍ତି-

ସ୍ତିରୀ ପୁରୁଷ ଏକାନ୍ତ ମତ ହୋଇ ନିନ୍ଦା କରୁଛନ୍ତି ମୁଖେ,
ପାଖକୁ ଗଲେ ଆଡ଼ ହୋଇ ପଳାନ୍ତି ତିନି ଭୁବନର ଲୋକେ ।( ୧/୫୧ )

ଦେବଲୋକ, ନରଲୋକ, ନାଗଲୋକ, କେହି ସହିପାରୁ ନାହାନ୍ତି ଭୀମଙ୍କ ଚେତନାଦୀପ୍ତ ବାକ୍ୟକୁ, ତେଣୁ ସେ ସେମାନଙ୍କୁ ବୁଝାଉଛନ୍ତି ଅତି ଶାନ୍ତ ଭାଷାରେ-

ଅସୁଖ ନ ପାଅ ମନେ କ୍ଷୋଭ ନୁହଁ ପିଣ୍ଡ ପରାଣକୁ ହିତ,
ଭଣେ ଭୀମ ଭକ୍ତ ଊନବିଂଶ ଶତ ପଦେ ହେତୁ କରି ଚେତ । ( ୨୦/୯୦ )

ଭୀମଭୋଇଙ୍କ ଆକଳନରେ ସିଦ୍ଧି ଲାଭ ପାଇଁ, ଗତି, ମୁକ୍ତି ପାଇଁ ବ୍ୟକ୍ତି ଜୀବନରେ ଜ୍ଞାନ, କର୍ମ ଓ ଭକ୍ତିର ତ୍ରିବେଣୀ ସଙ୍ଗମ ହେବା ଆବଶ୍ୟକ । ତେଣୁ ସତ ପରିଚିନ୍ତା ନ କରିବା ସହ ବ୍ୟକ୍ତି ସତ୍କର୍ମ କରୁ, ତାର ହୃଦୟକୁ ଭକ୍ତି ତଥା ବିଭୁପ୍ରେମରେ ପ୍ଲାବିତ କରୁ । ସେ ନିଜସ୍ୱ ଜୀବନକୁ ତ୍ରିବିଧ ଭାବେ ସତ୍ୟସିଦ୍ଧ, ଦୟାସିଦ୍ଧ, କ୍ଷମାସିଦ୍ଧ କରି ଅମରତ୍ୱ ଲାଭ କଲେ କିନ୍ତୁ, କ୍ରାନ୍ତିର କାବ୍ୟକାର ଭୀମ ଅନ୍ୟାୟ, ଅତ୍ୟାଚାର ପ୍ରତି ଅକ୍ରୋଧ ଆଚରଣ କରିପାରି ନାହାନ୍ତି । ତେଣୁ ସେ ଭିନ୍ନ ଭିନ୍ନ ସ୍ୱରରେ ନିଜର ବକ୍ତବ୍ୟ ଉଚ୍ଚାରଣ କରିଛନ୍ତି । ସେ କହିଛନ୍ତି,

ପ୍ରେମେ ପୁଲକିତ, ଅଶ୍ରୁଜଳଯୁକ୍ତ, କ୍ରୋଧ ଭରେ ଗଦ ଗଦ,
କପାଳରେ ହସ୍ତ ଦେଇ ଭୀମ ଭକ୍ତ କହେ ତିନି ଶତ ପଦ । ( ୨୦/୧୫ )

ତେଣୁ ବିପ୍ଳବୀ କବି ଅନ୍ୟାୟ, ଅନୀତି, ଭେଦାଭେଦ ଭାବ ଦେଖି ତାର ସମାଧାନ ପାଇଁ ସଂପୃକ୍ତ ବ୍ୟକ୍ତିଙ୍କୁ ସତର୍କ କରାଇ ଦେବା ସହ ସ୍ୱଗୁରୁଙ୍କୁ ମଧ୍ୟ ଝିଙ୍ଘାଂସ ବଚନ ପ୍ରୟୋଗ କରିଛନ୍ତି । ପୁଣି କ୍ଷମା ପ୍ରାର୍ଥନା କରିଛନ୍ତି । ବାରମ୍ବାର କୁହାଯାଉଛି ଭୀମ ଜଣେ ଦ୍ରଷ୍ଟାକବି (Poet of vision) । ତେଣୁ ସେ ଯାହା ମନଶ୍ଚକ୍ଷୁରେ ଦେଖିଲେ, ପୋଥିରେ ଲେଖିଲେ ସେଥିପାଇଁ ସେ କିଛି ଭାବିବାକୁ ସମୟ ପାଇଲେ ନାହିଁ । ତେଣୁ ତାଙ୍କ ରଚନାରେ ଧାରାବାହିକତା ରହିଲା ନାହିଁ । ସେ ନିଜେ କହିଲେ, "ତର ତରେ ବସି ତିଆରିଲି ପଦ, ଭଲ ମନ୍ଦ ନ ଜାଣଇ ବେଦ କି ନିର୍ବେଦ ।" କିନ୍ତୁ

ନିରୀକ୍ଷଣ କଲେ ଭୀମଙ୍କ କାବ୍ୟକୃତିର ଛତ୍ରେ ଛତ୍ରେ ବ୍ରହ୍ମଚେତନା ଓ ବିଶ୍ୱହିତ ଚେତନାର ସ୍ରୋତ ପ୍ରଭାବିତ। କ୍ରମାନ୍ୱୟିକତା ଅଭାବରେ ଭୀମଙ୍କ ରଚନା ଦୁର୍ବୋଧ ହୋଇ ନାହିଁ କାରଣ ସେ କିଛି ବର୍ଣ୍ଣନାମୂଳକ ରଚନା କରି ନାହାନ୍ତି। ଯାହା ଦେଖିଛନ୍ତି, ଅନୁଭବିଛନ୍ତି ତାକୁ ହିଁ ଲେଖା କରାଇଛନ୍ତି। ତେଣୁ ଭୀମ ଅଦୃଶ୍ୟବ୍ରହ୍ମ ଓ ଦୃଶ୍ୟଜଗତର ଆର୍ତ୍ତ ମନୁଷ୍ୟ ମଧ୍ୟରେ ସେତୁଟିଏ ପରି ରହି କେତେବେଳେ ସ୍ୱଇଷ୍ଟଙ୍କୁ ଜଣାଣ କରୁଛନ୍ତି, କେତେବେଳେ ସୃଜନମାନଙ୍କୁ ସତ୍‌ମାର୍ଗ ପ୍ରଦର୍ଶନ କରୁଛନ୍ତି। ତେଣୁ ଭୀମଭୋଇଙ୍କ କବିତା ଜୀବନ ବଚନିକା (living dialogue) ହୋଇଯାଇଛି। ତାଙ୍କୁ ବୁଝିବା ପାଇଁ ପାଠକକୁ ଏହି ସୂତ୍ରଟିକୁ ଧରି ନେବାକୁ ହେବ। ଭୀମଙ୍କ ଶରୀର ଧୂଳିଧରଣୀରେ ଓ ମନ ବ୍ରହ୍ମଲୋକରେ। ବେଦାନ୍ତ ଘର 'ନିର୍ବେଦ ଭୁବନ', ଦୀକ୍ଷା କେବଳ ଆଧ୍ୟାତ୍ମିକ ପରିଚିନ୍ତନ ବା ଧାର୍ମିକ ପରିପ୍ରକ୍ଷରେ ଭୀମଭୋଇଙ୍କ ସାହିତ୍ୟ ସୃଷ୍ଟି ସୀମିତ ନୁହେଁ, ଏହା ସମସାମୟିକ ସମାଜ ଚିତ୍ରର ସୁନ୍ଦର ଆଲେଖ୍ୟରେ ପରିପୂର୍ଣ୍ଣ। ଅବଶ୍ୟ ସମାଜର ନୈତିକ ଅବକ୍ଷୟ ତାଙ୍କୁ ବେଶି ବ୍ୟଥିତ କରିଛି ତେଣୁ ସେ ସମାଜର ଏହି ଅବସ୍ଥା ପ୍ରତି ବ୍ୟଥା ପ୍ରକାଶ କରି ଲେଛନ୍ତି –

କିବା ରାଜପୁତ୍ର, କିବା ସାଧୁ ସନ୍ଥ ସର୍ବେ ହେଲେଣି ଦୁର୍ଜନା,
ଏ ତିନି ବ୍ରହ୍ମାଣ୍ଡ ସାଧିବୁ ତୁ ପରା କିସ ଦେଖୁଛୁ ଭାବନା।
ପୁରେ ପୁରେ କଳି, ଘରେ ଘରେ କଳି ଘଟେ ଘଟେ କଳା ବାସ,
ତିନି ଭୁବନରେ ଯେତେ ଲୋକଛନ୍ତି , ନାହାନ୍ତି ଆତ୍ମବିଶ୍ୱାସ। ( ୨/୫୫ )

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଭାରତୀୟ ସାମାଜିକ ବ୍ୟବସ୍ଥା ଅନ୍ଧକାରମୟ ଥିଲା। ଏହା ଥିଲା ସାଂସ୍କୃତିକ, ଅର୍ଥନୈତିକ, ସାମାଜିକ ଅବକ୍ଷୟର ଯୁଗ। ପରାଧୀନତା, ଅବିଗ୍ଚର, କ୍ଷୁଧା, ଅଶିକ୍ଷାର ଅନ୍ଧକାର ଆଚ୍ଛନ୍ନ କରିଥିଲା ଜନ ଜୀବନକୁ। ସେହି ସାମାଜିକ ଚିତ୍ରକୁ ଏକ ଜନ ପଦରେ ପ୍ରକାଶ କରି ପଣ୍ଡିତ ନେହେରୁ କହିଥିଲେ encircling gloom/ ପରିବ୍ୟାପ୍ତ ଅନ୍ଧକାର। ଦିଗହରା ଗୋଟିଏ ଜାତି ନିଜ ସଂସ୍କୃତି ଓ ଧର୍ମକୁ ଭୁଲି ପରମୁଖା ହୋଇ ଯିଏ ଯେଉଁଆଡ଼େ ଆକର୍ଷଣ କଲା ସେ ଆକର୍ଷିତ ହେଲା। ତେଣୁ ସେ ବ୍ୟଥିତ କଣ୍ଠରେ ଗାଇଉଠିଲେ –

କୁହୁଡ଼ିକୁ ଦେଖୁ ଝାସି ପଡୁଛନ୍ତି ସତ୍ୟପ୍ରାୟ ମଣି ଚିତ୍ତେ,
ଦେଖିଲା ବେଳକୁ ତୁଚ୍ଛାହିଁ ପସରା ମୃତ୍ୟୁ ଘୋଟେ ଅଦଭୂତେ।( ୧ ୨/୫୫)

ଏମିତି ଏକ ମନୋଭାବକୁ କବିବର ରାଧାନାଥ ପ୍ରାୟ ଏକାପ୍ରକାର ରୂପକ ପ୍ରୟୋଗ କରି ଲେଖିଥିଲେ –

ସୁଖ ବୋଲି ଯାହା ଜଳ ନେତ୍ରେ ଦିଶେ
ହାତେ ଆସେ ହାତୁ ପଡ଼ିବା ପାଇଁ ସେ ।
ସଂପଦ ନୁହଇ ଅଟଇ ସେ ଧୂମ
ଅନ୍ୟ ନାମ ତାର ଆକାଶ କୁସୁମ । (ଦରବାର)

ତେଣୁ ଭୀମ ସାମାଜିକ ବାସ୍ତବତା ପ୍ରତି ଜଣେ ଦାର୍ଶନିକ ଓ ନେତା ସ୍ୱଭାବ ଆଭିମୁଖ୍ୟ ପୋଷଣ କରିଥିଲେ । ତାଙ୍କର ସମାଜକୁ ଦିଗ୍‌ଦର୍ଶନ ଦେବାର ଆତ୍ମବିଶ୍ୱାସ ଥିଲା –

ସେ ନିଜେ କନ୍ଧ ଥିଲେ, ତାଙ୍କର ଶିକ୍ଷାଗତ ଯୋଗ୍ୟତା ନ ଥିଲା, ଧନସଂପତ୍ତି ନ ଥିଲା ବୋଲି ସେ ନିଜ ପ୍ରଭୁଙ୍କ ପାଖରେ ଜଣାଇଛନ୍ତି । କିନ୍ତୁ ସେ ନିଜକୁ କ୍ଷୁଦ୍ର ମନେ କରି ନାହାନ୍ତି । ସେ କେବଳ ଶ୍ରୀଛାମୁରେ ନୀଚ ହୋଇ (୨୦/୭୨) ପ୍ରାର୍ଥନା କରୁଛନ୍ତି । ମାନବ ସମାଜକୁ ପଥ ପ୍ରଦର୍ଶନ କରୁଛନ୍ତି । ତାଙ୍କର ଆଧ୍ୟାତ୍ମିକ ଉତ୍ତରଣ ତାଙ୍କୁ ଏହି ସାହସ ଦେଇଥିଲା । ତେଣୁ ସେ କହୁଥିଲେ,

କର ନିଷ୍କାମ ଭକ୍ତି ସୁଚିରେ ଗୋ ।
ଦେହଧାରୀ ଅଛ ଯେତେ ଜଗତେ ଗୋ ॥

ଏବଂ, ତିନିଭୁବନକୁ ତିନିବାର ଆମ୍ଭେ ଡାକି କହୁଅଛୁ ଶୁଣ,
ମୁକତି ଯାଚି ଯାଚି ଦେବା ଭାଗ୍ୟ ଅଛି ଯେବେ ଘେନ ।

ଶୂଦ୍ରକବି ଯଦୁମଣି ପ୍ରବନ୍ଧ-ପୂର୍ଣ୍ଣଚନ୍ଦ୍ର କାବ୍ୟ ରଚନା କଲାବେଳକୁ ତାଙ୍କର ସଂଶୟ ଥିଲା । ଉଚ୍ଚ ବର୍ଗର ଲୋକେ ତାକୁ ପଢ଼ି ନ ପାରନ୍ତି । ତେଣୁ ସେ ଆବେଦନ କରି ଯୁକ୍ତି କରି କହିଲେ-

ଶୂଦ୍ର ମୁଖୁ ଏ ହୋଇଛି ବାହାର
ରହୁତା ବହି ବିଚାର ନ କର । ଇତ୍ୟାଦି

କିନ୍ତୁ, ଭୀମସେନ ଭୋଇ କୁତ୍ରାପି ନିଜକୁ ଛୋଟ ମନେ କରି ନାହାନ୍ତି । ସେ କବିତା ରଚନା କାଳରେ ସଚେତନ ଅଛନ୍ତି, "ଅପାରେ କାବ୍ୟ ସଂସାରେ କବିରେବ

ପ୍ରଜାପତିଃ" କବି କେବଳ କାବ୍ୟସଂସାର କାହିଁକି ଏ ବହିଃସଂସାର ରେ ମଧ୍ୟ ବ୍ୟବସ୍ଥାପକ (unacknowledged legislator) ହୋଇପାରିଛନ୍ତି, ଏହା ଥିଲା ତାଙ୍କର ଆତ୍ମବିଶ୍ୱାସ। ତେଣୁ ସେ ସୁବିଚାର ପାଇଁ ସୁବ୍ୟବସ୍ଥା ପାଇଁ ଜନସମାଜକୁ ଭିନ୍ନ ଭିନ୍ନ ସ୍ଥାନରେ ଉପଦେଶ ଦେଇଛନ୍ତି, ଉଦାହରଣ ଦେଇଛନ୍ତି କିନ୍ତୁ ସବୁ କ୍ଷେତ୍ରରେ ଯୁକ୍ତିଯୁକ୍ତତା ପ୍ରଦର୍ଶନ କରିଛନ୍ତି।। ସ୍ଥାନେ ସ୍ଥାନେ ସ୍ୱକାର୍ଯ୍ୟ ପାଇଁ ଉତ୍ତରଦାୟୀ କରି ପରିଣତି ସଚେତନ କରାଇଛନ୍ତି–

ଅହିଂସା ଧର୍ମରେ ଆଶ୍ରେ କଲ ଯେବେ ଅହିଂସାରେ କର ଦୃଢ଼,
ଗୁରୁ ସେବା କହି ମିଥ୍ୟାବାଦୀ ହେଲେ ଶୂନ୍ୟରୁ ପଡ଼ିବ ମାଡ଼।
ସାହୁ ଗଙ୍ଗାଜଳ ହୃଦୟ ନିର୍ମଳ ହେଲେ ଖାତକକୁ ଲାଭ,
ଖାତକ ବୁଝିଲେ ସାହୁ ନେଉଥିଲେ ସବୁଦିନେ ପ୍ରୀତି ଥିବ। (୧୮/୪୭)

ବ୍ରହ୍ମସଚେତନ ଭୀମ ଭୋଇ ନିଜର ବକ୍ତବ୍ୟକୁ ଅଯଥା ଅଳଙ୍କାର ବୋଝରେ ଭାରାକ୍ରାନ୍ତ କରି ନାହାନ୍ତି। ମଣିଷର କଥାକୁହା ଭାଷାରେ, ଅତି ଜଣାଶୁଣା ରୂପକ ପ୍ରୟୋଗରେ ସେ ବେଦାନ୍ତ ସତ୍ୟକୁ ପ୍ରକାଶ କରିଛନ୍ତି। ଚିତ୍ରକଳ୍ପ ପ୍ରୟୋଗରେ ଭୀମଙ୍କ ମୌଳିକତା ଲକ୍ଷ୍ୟ କରିବାର କଥା –

କଲିକତର କୀଟତା ହ୍ରଦ ପଙ୍କ ଭିତରେ ଯେ ଥାଏ ପଡ଼ି,
ବାହାର ହୋଇଲେ କିଛି ନ ଲାଗଇ ତା ଦେହୁଁ ପଡ଼ଇ ଝଡ଼ି। (୧୨/୭୫)
ସେହିପରି ମୁହିଁ ପାପ ହୃଦ ପଙ୍କ ଭିତରେ ଅଛି ପଶି,
ଅନ୍ତର୍ଯାମୀ ଗୁରୁ ପାରିକର ମୋତେ ପଦ୍ମକରରେ ଆଉଁଶି। (୧୩/୭୫ )

କେତେବେଳେ ତାଙ୍କ ଉପରେ ନିନ୍ଦା ଶ୍ରାବଣ ବରଷା ପରି ଉଜାଡ଼ି ହୋଇ ପଡ଼ୁଛି ଓ ଘଣ୍ଟି ଘାଙ୍ଗୁଡ଼ି ପରି ଚଉକତି ଝୁଲି ପଡୁଛି। ସେ ଚାତକ ପକ୍ଷୀ ମେଘକୁ ଚାହିଁଲା ପରି ବିଭୁକୃପାକୁ ଚାହିଁଛନ୍ତି। ପାପ କାଟିବା ପାଇଁ ସେ ପ୍ରଭୁଙ୍କୁ ପ୍ରାର୍ଥନା କରି କହୁଛନ୍ତି –

ଅରୁଣ ତରାସ ପଡ଼ିଲେ ଯେସନେ ଅନ୍ଧକାର ଯାଏ ଫାଟି,
ସେହିପରି ପ୍ରଭୁ ଜ୍ଞାନ ଖଡଗରେ ଘାତକ ପକାଅ କାଟି।

'ସୂର୍ଯ୍ୟୋଦୟ ହେଲେ ଅନ୍ଧକାର ଦୂର ହେବା' ଠାରୁ ଆଉ ସାଧାରଣ ରୂପକ (common imagery) କଣ ହୋଇପାରେ ? ଏଇଠି ଅରୁଣ ତରାସ ଶବ୍ଦ ଟିକେ

ଅସାଧାରଣ ଲାଗୁଛି । କିନ୍ତୁ ଏହା କବିତାର କାବ୍ୟିକତାକୁ ବଢ଼ାଇ ଦେଉଛି । କଥିତ ଭାଷାର ମଝିରେ ମଝିରେ ଏପରି ଉଦାତ୍ତ ଶବ୍ଦ ପ୍ରୟୋଗ ଭାଷାର ସୌନ୍ଦର୍ଯ୍ୟ ବୃଦ୍ଧି କରିଥାଏ । ଭୀମ ଭୋଇଙ୍କ ସ୍ତୁତି ଚିନ୍ତାମଣି ଓ ଅଗଣିତ ଭଜନମାନଙ୍କରେ ଏହିପରି ଅସଂଖ୍ୟ ଉପମା ପରିପୂର୍ଣ୍ଣ । ସେ ସାଧାରଣ ଭାଷା କିପରି ଅତ୍ୟୁଚ୍ଚ ସୋପାନଙ୍କୁ ଉତ୍ତୀର୍ଣ୍ଣ ହୋଇପାରେ ତାହା ପରୀକ୍ଷା କରି ଦେଖାଇ ପାରିଛନ୍ତି । ଏପରିକି ତାଙ୍କର ସରଳ ଭାଷା ପ୍ରୟୋଗ ବାଇବେଲର ଭାଷା ପରି ସରଳ ଓ ଉଦାତ୍ତ ହୋଇପାରେ । ଉଦାହରଣ ସ୍ୱରୂପ ଆଉଁ ଭୀମ ଗାଇଛନ୍ତି -

"କାହିଁ ପଳାଇବି, କେଉଁଆଡ଼େ ଯିବି ବୁଦ୍ଧି ଦିଶୁ ନାହିଁ ମୋତେ" ବାଇବେଲରେ କୁହାଯାଇଛି -

Where can I go from your spirit?
Or Where can I flee from your presence ?

ପ୍ରସଙ୍ଗ ଭିନ୍ନ ହୋଇପାରେ କିନ୍ତୁ, ଭାଷା ପ୍ରୟୋଗରେ କି ଅପୂର୍ବ ସରଳତା ଅଥଚ ସାବଲୀଳତା ଏହାହିଁ ସାର୍ଥକ କବିତା !

ଆମେ ସ୍ମରଣ କରିବା ଉଚିତ ଜଣେ ଉପେନ୍ଦ୍ର ଭଞ୍ଜ ସଂସ୍କୃତ କାବ୍ୟ ପରଂପରାକୁ ଆହ୍ୱାନ ଦେଇ ବୈଦେହୀଶ ବିଳାସ ଲେଖିଗଲେ ଓ ପ୍ରମାଣ କରିଗଲେ ଓଡ଼ିଆରେ ମଧ୍ୟ ମାଘକାବ୍ୟ ରଚିତ ହୋଇପାରିବ । ସେହିପରି ଭୀମ ଭୋଇ ପ୍ରମାଣ କରିଗଲେ ଓଡ଼ିଆରେ ମଧ୍ୟ ବେଦାନ୍ତର ମୌଳିକ ଭାବେ ରଚିତ ହୋଇପାରିବ । ହୋଇପାରିଛି । ଭାଷା ପ୍ରୟୋଗରେ ରୂପକଳ୍ପ ପ୍ରୟୋଗରେ ଭୀମଙ୍କ ଆଧୁନିକତା ଅନୁକରଣୀୟ ।

ପ୍ରସଙ୍ଗକ୍ରମେ ଉଲ୍ଲେଖ କରାଯାଇପାରେ, ଷୋଡ଼ଶ ଶତାବ୍ଦୀରେ ମହାକବି ସେକ୍‌ସପିୟର ଯେତେବେଳେ ନାଟକ ଓ ସଙ୍ଗୀତମୟ କବିତା ରଚନା କରୁଥିଲେ ଏବଂ ପାଠକ ସମାଜ ସେହି ସଂଗୀତ ସ୍ରୋତରେ ଭାସିଯାଉଥିଲେ, ଠିକ୍ ସେହି ସମୟରେ ଜନ୍ ଡନ୍ ତାଙ୍କର ଆଧିଭୌତିକ କବିତା (Metaphysical) ରଚନା କରୁଥିଲେ । କିନ୍ତୁ, ସେ ସମୟରେ ତାଙ୍କୁ କେହି ଜାଣୁ ନ ଥିଲେ । ସେ ମଣିଷର କଥିତ ଭାଷା (speaking voice) ଓ ଅତି ପ୍ରଚଳିତ ଚିତ୍ରକଳ୍ପ ବ୍ୟବହାର କରୁଥିଲେ । ତାଙ୍କ ଭାଷାରେ କେମିତି ଏକ ବେପରୁଆ ଭାବ ଥିଲା । ସେ ବିରକ୍ତ ହୋଇ ସୂର୍ଯ୍ୟଦେବଙ୍କୁ ଗାଳି ଦେଇ କହିଥିଲେ - You old fool unruly sun.

ଭୀମ ଭୋଇ ମଧ୍ୟ ଅନୁରୂପ ପରିସ୍ଥିତିରେ କବିତା ରଚନା କରୁଥିଲେ ଓ ସେହି ସ୍ୱର ବ୍ୟବହାର କରୁଥିଲେ । ଲକ୍ଷ୍ୟ କରାଯାଇପାରେ –

ଆରେ କଳିଯୁଗ, ଭବଭୟ ରୋଗ ଖଟ ପ୍ରଭୁ ପାଦତଳେ ।

ପୁନଶ୍ଚ– ଗୁରୁ ଆଜ୍ଞା ହେଲା ଯାଆରେ ପାତକ ନିଜ କର୍ମକୁ ଆଦରି,
ଯହୁଁ ଆସିଥିଲୁ ତହିଁକି ତୁ ଯାଆ ଆଦ୍ୟର ବସା ସୁମରି । (୧୮/୭୬)

ରୂପକ ପ୍ରୟୋଗ ସଂପର୍କରେ ପୂର୍ବରୁ ସମ୍ୟକ୍ ଆଲୋଚନା କରାଯାଉଛି, କିପରି ଭୀମ କଲିକତରାକୁ କବିତାରେ ସ୍ଥାନ ଦେଇଛନ୍ତି । ଡନ୍ ମାଛି (flea) ବୋଲି ଗୋଟିଏ କବିତା ଲେଖୁଛନ୍ତି । ଉଭୟ ଭୀମ ଓ ଡନ୍ ଯୁକ୍ତିବାଦୀ, ହେତୁବାଦୀ ।

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ପ୍ରଖ୍ୟାତ କବି ଓ ସମାଲୋଚକ ଟି.ଏସ୍. ଏଲିଅଟ୍ ଡନ୍‌ଙ୍କୁ ବିସ୍ମୃତପ୍ରାୟ ଅବସ୍ଥାରେ ଆବିଷ୍କାର କଲେ । ତାଙ୍କରି କବିତାରେ ଆଧୁନିକ କବିତାର ମୂଳତତ୍ତ୍ୱ ଖୋଜି ପାଇଲେ । ଆଜିର ବିଶ୍ୱ ଆଧୁନିକ କବିତା ଡନ୍‌ଙ୍କୁ ହିଁ ଅନୁସରଣ କରୁଛି । ଓଡ଼ିଆ ଆଧୁନିକତା ମଧ୍ୟ ସେହି ଡନ୍ ପନ୍ଥାବଲମ୍ବୀ । କିନ୍ତୁ ଭୀମ ରେଢ଼ାଖୋଲର ଘୋର ବନରେ ରହିଗଲା ପରି ଲାଗୁଛି । ଯଦି କେହି ଭୀମ ଭୋଇ ସୃଷ୍ଟି ସମ୍ଭାରର ସାମଗ୍ରିକ ଆକଳନ କରିପାରିବ, ସେ ମଧ୍ୟ ଓଡ଼ିଆ କାବ୍ୟିକ ଆଧୁନିକତାର ସଂଜ୍ଞା ପରିବର୍ତ୍ତନ କରିପାରିବ । ଆଜି ଅନେକ ଭୀମଙ୍କ ବହୁଧା ଉଦ୍ଧୃତ 'ପ୍ରାଣୀଙ୍କ ଆରତ' ପଦ ଗାନ କରି ଭାଷଣ ଦେଉଛନ୍ତି, ତାଙ୍କୁ ସାହସୀ, ସଂସ୍କାରକ କହୁଛନ୍ତି । କିନ୍ତୁ ତାଙ୍କ କାବ୍ୟ କୌଶଳକୁ ଗ୍ରହଣ କରି ନୂତନ ପରୀକ୍ଷା ନିରୀକ୍ଷା କରୁ ନାହାନ୍ତି । କାରଣ ତାଙ୍କର କାବ୍ୟକୃତିକୁ ଶ୍ରଦ୍ଧା ଓ ସତର୍କତାର ସହ କେହି ପଢୁନାହାନ୍ତି । କେବଳ 'ସ୍ତୁତି ଚିନ୍ତାମଣି' ଗ୍ରନ୍ଥ (ଯାହା ଚିତ୍ତରଞ୍ଜନ ଦାସଙ୍କ ଆକଳନରେ ଅନ୍ଧକୁ ବାଟ ଦେଖାଇବା ଓ ପଙ୍ଗୁକୁ ଗିରି ଲଙ୍ଘିବାର ଶକ୍ତି ଯୋଗାଏ) ଅନୁଶୀଳନ କଲେ ଭୀମ ଭୋଇ ଓଡ଼ିଆ ଭାଷାକୁ କିପରି ସମ୍ଭାବନାମୟ ମାଧ୍ୟମରେ ପରିଣତ କରିଛନ୍ତି , ତାହା ସହଜରେ ଉପଲବ୍ଧ ହେବ । ଭୀମଙ୍କ ରଚନାଗୁଡ଼ିକୁ କେବଳ ମହିମାଧର୍ମର ପ୍ରଚାରପତ୍ର ବୋଲି ବିଚାର କରି ସମାଲୋଚକଗଣ ନିରାପଦ ଦୂରତ୍ୱ ରକ୍ଷା କରି ଓଡ଼ିଆ କାବ୍ୟସାହିତ୍ୟର ଅନବଦ୍ୟ ରଚନାର ସାରସ୍ୱତ ଆବେଦନକୁ ପାଠକଙ୍କ ପାଖରେ ପହଞ୍ଚାଇପାରୁ ନାହାନ୍ତି ।

ଏଇଠି ମନେ ରଖିବାକୁ ହେବ ଦାର୍ଶନିକ ଭୀମ ଭୋଇ ଓ କବି ଭୀମ ଭୋଇ ଏକ ପ୍ରକାର ନୁହନ୍ତି । ଭୀମ ମହିମାଧର୍ମ ଦର୍ଶନକୁ ନିଜ କବିତାରେ କହିବା ପାଇଁ

ଆଜ୍ଞା ପାଇଥିଲେ, ଗୁରୁ ଆଜ୍ଞା ପାଇ ଅଦ୍ୱୈତ ଦର୍ଶନକୁ ବିଶୁଦ୍ଧରୂପେ ପ୍ରତିପାଦିତ କରିଗଲେ। ପାଶ୍ଚାତ୍ୟ ମାପକାଠିରେ ଭୀମଙ୍କ ରଚନାରେ ଦାର୍ଶନିକ ଯୁକ୍ତିସିଦ୍ଧତା କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରୁଛି। କିନ୍ତୁ କବି ଭୀମ ଭୋଇଙ୍କ ନିକଟରେ ଏହି ଦୁର୍ବଳତାର ସ୍ଥାନ ନାହିଁ। ତାଙ୍କର କାବ୍ୟ ସୃଷ୍ଟି ଆଙ୍ଗିକ ଓ ଆତ୍ମିକରେ ନିତ୍ୟନୂତନ ମୌଳିକ ଓ ବୌଦ୍ଧିକ। ତାଙ୍କ କବିତାରେ ବୌଦ୍ଧିକ ଅନ୍ତଃସ୍ୱର କବିତାଗୁଡ଼ିକୁ ମନ୍ତ୍ରବତ୍ ପ୍ରଭାବଶାଳୀ କରିଛି। ସେ ଆତ୍ମଦ୍ରଷ୍ଟା କବି ସତ୍ୟ ସନ୍ଧାନରେ ବିହ୍ୱଳିତ ହୋଇ ପଡ଼ିଛନ୍ତି। ଯାହା ତାଙ୍କୁ 'ତରତର' କରିଛି ଓ ଯାହାକୁ ସେ ଲିପିବଦ୍ଧ କରି ସ୍ୱପ୍ରଭୁଙ୍କୁ ସମର୍ପଣ କରି କହୁଛନ୍ତି : "ତାଳପତ୍ରେ ଲେଖା ଅଛି ବୁଝିବ ବାରତା" ଦିବ୍ୟଦ୍ରଷ୍ଟା କବିଙ୍କର ଏପରି ଆଧ୍ୟାତ୍ମିକ ଉତ୍ତରଣ ଲକ୍ଷ୍ୟ କରି ଶ୍ରୀ ଅରବିନ୍ଦ କହିଛନ୍ତି – It comes from the stress of the soul vision behind the word; it is the spiritual excitement of a rhythmic voyage of self-discovery among the magic islands of form and name in these inner and outer worlds. (Future Poetry - 16).

ଭୀମ ଭୋଇ ଏକ ଦିବ୍ୟ ଚେତନା ପ୍ରବାହର ନାମାନ୍ତର। ତାଙ୍କର ଅନ୍ତଃସତ୍ତା ବିଶ୍ୱ ମଙ୍ଗଳକାମୀ କବିତା ରୂପେ ପ୍ଲାବିତ। କେବଳ ଏକ ଉନ୍ମୁକ୍ତ ଉଦାର-ହୃଦୟ-ପାଠକ ଏହି କରୁଣାସିକ୍ତ ଜଳଧାରରେ ଅବଗାହନ କରି ଅନନ୍ତ ଆନନ୍ଦ ଉପଭୋଗ କରିପାରେ ଓ ସେହି ଦିବ୍ୟଦ୍ରଷ୍ଟା କବିଙ୍କ ପରି ସମଗ୍ର ବିଶ୍ୱକୁ ଘର ବଖୁରିଏ କରି ଆଲିଙ୍ଗନ କରି ବିଶ୍ୱପ୍ରେମର ବାର୍ତ୍ତା ପ୍ରଚାର କରି ବିଶ୍ୱ ପ୍ରାଣକୁ ପୁଲକିତ କରିପାରେ।

-୦-

# ଦୃଷ୍ଟି ଓ ଦର୍ଶନରେ ଭୀମଭୋଇ ଓ ଗୋପବନ୍ଧୁ

ଅଧ୍ୟାପକ ବିଶ୍ୱରଂଜନ

ଓଡ଼ିଶା ମାଟିରେ ଏଭଳି ଦୁଇ କବି ମନିଷୀଙ୍କର ଆର୍ବିଭାବ ଘଟିଥିଲା ଯେଉଁମାନଙ୍କର ବ୍ୟକ୍ତିଗତ ଜୀବନ ଉତ୍ତରୀତ ହୋଇଥିଲା ବିଶ୍ୱଜୀବନକୁ। ଏହି ଦୁଇ ମହାତ୍ମା ନିଜର ଦୃଷ୍ଟି ଓ ସୃଷ୍ଟି ମାଧ୍ୟମରେ ମାନବିକତାର ଯେଉଁ ମହାମନ୍ତ୍ର ଗାନକରିଥିଲେ, ତାହା ଦେଶକାଳପାତ୍ରର ସୀମାକୁ ଅତିକ୍ରମ କରି ନିନାଦିତ ହେଉଛି ସମଗ୍ର ବିଶ୍ୱଭୂବନରେ। ଜଣଙ୍କର ମର୍ମବାଣୀ ମର୍ମରିତ ହେଉଛି ବିଶ୍ୱ ଜାତିସଂଘର ପ୍ରବେଶ ପଥରେ "ମୋ ଜୀବନପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ"; ଆଉଜଣେ କହୁଛନ୍ତି "ନିଜ ସୁଖ ଲାଗି ଜାତ ନୁହେଁ ହିନ୍ଦୁ, ବିଶ୍ୱହିତେ ତାର ପ୍ରତି ରକ୍ତ ବିନ୍ଦୁ"। ପ୍ରଥମ ଜଣକ ହଲେ ଓଡ଼ିଶାର ପଶ୍ଚିମାଞ୍ଚଳରେ ଜନ୍ମିତ ଭୀମଭୋଇ ଅନ୍ୟ ଜଣକ ହେଲେ ଆମର ଉପକୂଳବର୍ତ୍ତୀ ପୂର୍ବାଞ୍ଚଳରେ ଜନ୍ମଗ୍ରହଣ କରିଥିବା ଗୋପବନ୍ଧୁ ଦାସ। କଣ କହିବା ଏ ଦୁଇ ଜଣଙ୍କୁ ? ଲୋକନେତା, ଜ୍ଞାନୀ, ଦାର୍ଶନିକ, ସମାଜସେବୀ, ସଂସ୍କାରକ, କବି ନା ସ୍ୱପ୍ନପୁରୁଷ ? ନାଏସବୁକୁ ମିଶେଇ କହିବା, କବିତାର ମନ୍ତ୍ରରେ ଅଭିମନ୍ତ୍ରିତ ଏ ଦୁଇଜଣ କ୍ରାନ୍ତିଦର୍ଶୀ କାବ୍ୟପୁରୁଷ। କବିଦ୍ୱର ଆଲୋକରେ ଆଲୋକିତ୍ ହେଲାବେଳେ ଜୀବନର ସାମଗ୍ରିକ ସତ୍ତା ଓ ସମଗ୍ର ସମାଜ ଓ ସଂସାରର ପରିସରଭୁକ୍ତ ହୋଇଯାଏ। ସେଠି ନିଜର ଜୀବନ ଓ ଜଗତ ମଧ୍ୟରେ କୌଣସି ପାର୍ଥକ୍ୟ ରହେ ନାହିଁ। ଅନ୍ତଃପ୍ରକୃତି ଓ ବହିଃପ୍ରକୃତିର ସମନ୍ୱୟରେ ଛନ୍ଦାୟିତ ହେଇଉଠେ ଜୀବନ ଛନ୍ଦ।

ଉନବିଂଶ ଶତାବ୍ଦୀର ଶେଷଭାଗରେ କବି ଭୀମଭୋଇ ଏଭଳି ଜଣେ କବି, ଯିଏ ସମସ୍ତ ବର୍ଣ୍ଣନାରୁ ଊର୍ଦ୍ଧ୍ୱରେ ଥାଇ ମଧ୍ୟ ପ୍ରଚଳିତ ଧର୍ମ-ପରମ୍ପରାର ବିରୋଧୀ

ଥିଲେ। ସଂସାର ଗତି ମଧ୍ୟ ସନ୍ନ୍ୟାସୀ, ପ୍ରେମରେ ଆପ୍ଲୁତ ହୃଦୟ, ଏଣେ କିନ୍ତୁ ପ୍ରତିବାଦରେ ପ୍ରଖର, ବହ୍ନିମାନ। ସେ ଅନ୍ଧ କି କନ୍ଧ, ସେ ଯୋଗୀ କି ଭୋଗୀ କି ତ୍ୟାଗୀ, ସେ ସବୁର ବିଚାର, ବିତର୍କ ଅର୍ଥହୀନ। ମାତ୍ର ସେ ଏଭଳି ଜଣେ ଯୋଗଜନ୍ମା, ଯିଏ କେବଳ ଏକ ବ୍ୟକ୍ତିଜୀବନର ଜନମମରଣ ବନ୍ଧନଭିତରେ ବାନ୍ଧି ହୋଇ ଯାଇନାହାନ୍ତି। ବ୍ୟକ୍ତିସତ୍ତାର ବହୁତ ଊର୍ଦ୍ଧ୍ୱରେ ଏକ ଆଧ୍ୟାତ୍ମିକ ପ୍ରତ୍ୟୟ, ଜୀବନ-ଜିଜ୍ଞାସାର ଆଲୋକ ଉଜ୍ଜଳ ପ୍ରତୀକଟିଏ ପାଲଟିଯାଇଛନ୍ତି। ଓଡ଼ିଶାର ବିଶିଷ୍ଟ ସାହିତ୍ୟ ସମାଲୋଚକ ଚିତ୍ତରଞ୍ଜନ ଦାସଙ୍କ ଭାଷାରେ "ଭୀମ ଭୋଇ ପ୍ରଥମେ ଭକ୍ତ, ତାପରେ କବି, ପ୍ରଥମେ ଦ୍ରଷ୍ଟା, ତାପରେ ସାହିତ୍ୟ ସ୍ରଷ୍ଟା"। ଶୂନ୍ୟପୁରୁଷଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ କବିକଣ୍ଠରୁ ସ୍ୱତଃ ଝରି ପଡୁଥିଲା ରାଶିରାଶି ଭଜନ, ଜଣାଣ, ଯାହା ତାଳପତ୍ର ଖେଦାରେ ଲେଖି ରଖୁଥିଲେ ତାଙ୍କର ଅନୁଗାମୀମାନେ। ଭକ୍ତ ହୋଇ ଉପାସ୍ୟ ଦେବତାଙ୍କର ଗୁଣକୀର୍ତ୍ତନ ଓ ନାମରେ ଲୟ ନରଖିଲେ, ଭକ୍ତ ଜୀବନ ବୃଥା। ମରଣଶୀଳ ମଧ୍ୟରୁ ଅମୃତର ସଂଧାନ, ଅନ୍ଧକାର ଭିତରୁ ଜ୍ୟୋତିର ସଂଧାନ, ଭବସିନ୍ଧୁ ଭିତରୁ ଭାବ-ସିନ୍ଧୁର ସଂଧାନ ଏହାହିଁ ଶ୍ରେଷ୍ଠ କବିର ଆଚରିତ ଧର୍ମ। ଏହି କବି ଧର୍ମର ଅଭିବ୍ୟକ୍ତି ଆମ୍ଭେ ଦେଖିବାକୁ ପାଉ ଭୀମ ଭୋଇଙ୍କ 'ସ୍ତୁତି ଚିନ୍ତାମଣି', 'ଚଉତିଶା ମଧୁଚକ୍ର', 'ଆଦିଅନ୍ତ ଗୀତା', 'ବ୍ରହ୍ମନିରୂପଣ ଗୀତା' ଇତ୍ୟାଦି ସୃଷ୍ଟି ସମ୍ଭାରରେ। ମାତ୍ର ଭୀମ ଭୋଇ ହେଉଛନ୍ତି ଆଧୁନିକ କାଳର ଏକମାତ୍ର କବି ଯାହାଙ୍କ ଜୀବନକାଳ ମଧ୍ୟରେ ଧାଡ଼ିଟିଏବି କବିତା ମୁଦ୍ରିତ ହୋଇନାହିଁ। ଅଥଚ ଜଗନ୍ନାଥ ଦାସଙ୍କ ଭାଗବତ ପରେ ଭୀମ ଭୋଇଙ୍କର କବିତା ହେଉଛି ଓଡ଼ିଶା ଲୋକଙ୍କର ଅତିପ୍ରିୟ। ତାଙ୍କର ମୃତ୍ୟୁର ଅନେକ ବର୍ଷ ପରେ ତାଙ୍କ କବିତା ମୁଦ୍ରିତ ହେଲା ଏବଂ ଆଲୋଚନାର ପରିସରକୁ ଆସିଲା। ମହିମା ଧର୍ମର ନିଷ୍ଠାପର ସାଧକ ଓ ପ୍ରଚାରକ ଭାବରେ ତାଙ୍କର ଅଙ୍ଗୀକାରବଦ୍ଧତା ପ୍ରତିଫଳିତ ହୋଇଥିଲା କବିତାର ଆତ୍ମୀୟତାରେ।

ନାନା ପ୍ରତିକୂଳତା ଭିତରେ ପ୍ରତିବାଦର ଅଗ୍ନିଶିଖା ହୋଇ ପ୍ରତିଭାତ ହୋଇଛନ୍ତି ଭୀମ ଭୋଇ, ଜୀବନକୁ ଜଳେଇ ଜଳେଇ। ସେଇ ଅଗ୍ନିରେ ଶବ୍ଦ ନିର୍ମାଣ କରିଛନ୍ତି ଭୀମ ଭୋଇ। ତେଣୁ ତାଙ୍କର ଜୀବନ ଓ କବିତା ହୋଇଯାଇଛି ଅସହାୟ ମଣିଷ ହାତରେ ଆତ୍ମରକ୍ଷାର ଅସ୍ତ୍ର। ନାନା ଅନ୍ଧବିଶ୍ୱାସ, ଧାର୍ମିକରଢ଼ିର ଖଣ୍ଡନଲାଗି ସେ ଆପଣାର ନିଃଶ୍ୱାସ ପ୍ରଶ୍ୱାସ ନେଇ ଗଢିଛନ୍ତି ଶବ୍ଦ ସୌଧ। ବିଦ୍ରୋହ, ବିଶ୍ୱାସ, ଜୀବନ ପ୍ରତି ଅପୂର୍ବ ଆସକ୍ତି ଏବଂ ଅଧ୍ୟାତ୍ମିକ ଅଭିପ୍ସା ହେଉଛି ଭୀମ ଭୋଇଙ୍କ କବିତାର

ମୂଳଭିତ୍ତି। ତାଙ୍କ କବିତାରେ ଆବେଦନ ମନ୍ତ୍ରପ୍ରାୟ। କହିବାକୁ ଗଲେ ସେ ଜଣେ ମନ୍ତ୍ରସିଦ୍ଧ କବି। କବିତାର ମନ୍ତ୍ରରେ ଥିଲା ମାନବିକତାର ଜୟଗାନ, ଜାତିହୀନ ସମାଜର ସ୍ୱପ୍ନ। "ଜାତି ଖୋଜିଲେ ମୁକ୍ତି ନାହିଁ, ମୁକ୍ତି ଖୋଜିଲେ ଜାତି ନାହିଁ" ଏହା ହେଉଛି ମହିମାଧର୍ମର ମର୍ମବାଣୀ। ଜାତିବର୍ଣ୍ଣର ବିଭେଦ ବିଚାର ଥିଲା ତାଙ୍କ ପାଇଁ ସମ୍ପୂର୍ଣ୍ଣ ଧର୍ମବିରୋଧୀ।

ଛତିଶକୁଳ ଯେ ବାଉନ ପାଟକ ଜାତି ବୋଲାଯାଏ ନାହିଁ।
ପାଣି ଅନ୍ତର ପାଟକ ସିନା ଏହୁ ଆଉ କିଛି ହିଁ ନ ଥାଇ।
ତିନି ବ୍ରହ୍ମାଣ୍ଡରେ ଲୋଡ଼ିଆସ ତୁମ୍ଭେ ଏକଜଣ ଏକଜାତି
ସେହି ସବୁକୁ ଶତ ଜାତି କରିଛି ତାହାର ରଞ୍ଜିଲା ପୃଥୀ ।

× × × × ×

ଛତିଶ-କୁଳ ବାଉନ ଯେ ପାଟକ ଯେ ଅଛ ସ୍ତିରୀ ପୁରୁଷ,
ଉଚ୍ଚନୀଚ ବୋଲି ବାରଣ ନକରି ନାମରେ ଶରଣ ପଶ ।

( ସ୍ତୁତିଚିନ୍ତାମଣି )

ବ୍ରହ୍ମଭକ୍ତି ଭାବନାରେ ଜାତିର ସ୍ଥାନ ନାହିଁ। ଉଚ୍ଚନୀଚର ଭେଦା ଭେଦ ନାହିଁ। ଦିବ୍ୟ ଅନୁଭୂତି ସଂଜାତ ପରମସତ୍ୟକୁ ଲୋକ ଜୀବନରେ ବିଚ୍ଛୁରିତ କରି ଏବଂ ସତ୍ୟନିଷ୍ଠ ସମାଜ ଗଠନରେ ପ୍ରୟାସୀ ଥିଲେ ଭୀମ ଭୋଇ ଓ ମହିମାପନ୍ଥୀମାନେ। ସେମାନେ ସ୍ୱର ଉତ୍ତୋଳନ କରିଥିଲେ ଜଗନ୍ନାଥ ଧାମରେ ଦେଖା ଦେଉଥିବା ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ। ଧର୍ମ, ମୋକ୍ଷ, ତୀର୍ଥ, ପୁଣ୍ୟ ପ୍ରଭୃତି ନାମରେ ଚାଲିଥିବା ଯାବତୀୟ ଭ୍ରଷ୍ଟାଚାର ବିରୁଦ୍ଧରେ।

କେବଳ ସାମାଜିକ ବା ଧାର୍ମିକ କ୍ଷେତ୍ରରେ ପରିଲକ୍ଷିତ ଅନ୍ୟାୟ ଅନୀତି ବିରୁଦ୍ଧରେ ନୁହେଁ, ରାଜକ୍ଷମତାର ଅହଂକାର ଓ ଔଦ୍ଧତ୍ୟ ବିରୁଦ୍ଧରେ ଭୀମ ଭୋଇଙ୍କର କବିତା ଓ ଜୀବନ ଥିଲା ପ୍ରଚଣ୍ଡ ପ୍ରତିବାଦର ଆଗ୍ନେୟ ଉଚ୍ଚାରଣ। ରେଢାଖୋଲ ରାଜା ଓ ସୋନପୁର ରାଜାଙ୍କ ସହ ତାଙ୍କ ମତଭେଦର ଏକ ସୁଦୀର୍ଘ ଇତିହାସ ରହିଛି। ସେଇଥିପାଇଁ ସେ ଲେଖିଥିଲେ;

କାହାରି ଅଧୀନେ ନଥାଉଟି ଆମ୍ଭେ ଶ୍ରୀଗୁରୁ ଅଧୀନେ ଥାଉ ।
କାହାରି ଆଜ୍ଞା ଶିର ପରେ ନ ବହୁ ଗୁରୁ ଆଜ୍ଞାହେଲେ ଯାଉ ।।

ରାଜାର ପରଜା ନୋହୁ ସିନା ଆମ୍ଭେ ନୋହୁ ସାହୁର ଖାତକ ।
ଯହିଁ ଗୁରୁ ନେବେ ତହିଁ ଯାଉ ଆମ୍ଭେ କେ ଅବା କରୁ ଅଟକ ॥

ଯେ କୌଣସି ରାଜଶକ୍ତି ଯେତେବେଳେ ଧରାକୁ ସରା ମନେ କରେ, ନିଜର କ୍ଷମତା ପ୍ରଯୋଗରେ ପ୍ରଦର୍ଶନ କରେ ଅହଂକାର ଓ ଔଦ୍ଧତ୍ୟ, ସେତେବେଳେ କବିତା ତାକୁ ତାର ଊର୍ମି ସମ୍ପର୍କରେ ସଚେତନ କରିଦିଏ। ତାଙ୍କୁ ଶାନ୍ତ, ଶୀତଳ କରିଦିଏ। ଏ ସମ୍ପର୍କରେ ଯଥାର୍ଥରେ ଆମେରିକାର ପ୍ରାକ୍ତନ ରାଷ୍ଟ୍ରପତି ଜନ୍.ଏଫ୍. କେନେଡୀ କହିଛନ୍ତି

*When power leads man towards arrogance, poetry reminds him his limitations. When power narrows the area of man's concern, poetry reminds him of the richness and diversity of his existence. When power corrupts, poetry cleanses.*

ଭୀମଭୋଇଙ୍କ କବିତାରେ ଥିଲା ରାଜଶକ୍ତିକୁ ନିଜର ସୀମା ସଂପର୍କରେ ସଚେତନ କରେଇଦେବାର ଶକ୍ତି। ବିଦ୍ରୋହର ଶାଣିତ ସ୍ୱର ଅନୁରଣିତ ହେଇଥିଲା ତାଙ୍କ କବିତାରେ। ସେଭଳି ବିଶ୍ୱଦୃଷ୍ଟି ଓ ବିଶ୍ୱପ୍ରେମରେ ମଧ ଉଦ୍ଭାସିତ ତାଙ୍କର କବିତ୍ୱ। ଅନ୍ୟର ଦୁଃଖକୁ ଏପରିକି ସାରା ବିଶ୍ୱର ଦୁଃଖକୁ ନିଜର କରିବାରେ ଭୀମ ଭୋଇଙ୍କ କବିଦୃଷ୍ଟିର ତୁଳନା ନାହିଁ। ବିଶ୍ୱନିୟନ୍ତାଙ୍କୁ ତାଙ୍କର ପ୍ରାର୍ଥନା;

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବ ସହୁ।
ମୋ ଜୀବନ ପଛେ ନର୍କେ ପଡିଥାଉ, ଜଗତ ଉଦ୍ଧାର ହେଉ ॥

ନିଜର ଜୀବନ ପଛେ ନର୍କ ଯନ୍ତ୍ରଣାରେ ଘାଣ୍ଟି ହେଉଥାଉ, ହେଲେ ଜଗତର ଦୁର୍ଦ୍ଦଶା ମୋଚନ ପାଇଁ ସତେ ବ୍ୟାକୁଳ କବି ପ୍ରାଣ। କବି ପୁଣି କହୁଛନ୍ତି –

ମୋ ପିଣ୍ଡ ପ୍ରାଣ ଦାନ ଦେଇ ଅଛି ଅଲେଖ ପୁରୁଷ ପାଦେ ।
ଶ୍ରୀ ଛାମୁରେ ମୁହିଁ ବ୍ରହ୍ମାଣ୍ଡର ପାଇଁ ଜଣାଣ କରୁଛି ଏବେ ॥
ଅଶେଷ ବ୍ରହ୍ମାଣ୍ଡ ବୁଡି ଯେବେ ଯିବ କାହିଁରେ ରହିବି ମୁହିଁ।
ମନ ଛନଛନ ହେଉଛି ଉଚ୍ଛନ୍ନ ଏ ପିଣ୍ଡବ୍ରହ୍ମାଣ୍ଡ ପାଇଁ ॥

x x x

ବ୍ରହ୍ମାଣ୍ଡ ନିମନ୍ତେ କର ଯୋଡି ମାଥେ ପଡ଼ି ଶ୍ରୀଗୁରୁଙ୍କ ପାଦେ ।
କହେ ଭୀମଭୋଇ ଅଷ୍ଟାଶତପଦେ ନେତ୍ରୁ, ଲୁହ ପୋଛି କାନ୍ଦେ ॥

କବିର ଅଶ୍ରୁସଜଳ ନୟନରେ ଫୁଟି ଉଠୁଛି ସମଗ୍ର ବିଶ୍ୱର ଦୁଃଖ, ଦୈନ୍ୟର ଛବି। କବି ହୃଦୟରେ ଏ ବିଶୁଦ୍ଧ କାରୁଣ୍ୟ ଏବଂ କବିତାରେ ତାର ଅନୁଶରତା ସତରେ ଏହାର କୌଣସି ତୁଳନା ନାହିଁ ବିଶ୍ୱ ସାହିତ୍ୟରେ।

ଭୀମଭୋଇଙ୍କ ସତ୍ୟ, ଧର୍ମ, ବିଦ୍ରୋହ ଓ ବିଶ୍ୱପ୍ରେମ ଆଧାରିତ କବି ଦୃଷ୍ଟି ଓ ସୃଷ୍ଟି ସହିତ ଗୋପବନ୍ଧୁଙ୍କର କବିଦୃଷ୍ଟିର ତୁଳନା କଲେ ଆମ୍ଭେ ଦେଖି ପାରିବା ଅଦ୍ଭୁତ ସାମଞ୍ଜସ୍ୟ। ବୈଷମ୍ୟ କେବଳ ଏତିକି, ଗୋପବନ୍ଧୁ ଶ୍ରୀ ଜଗନ୍ନାଥଙ୍କ ନିକଟରେ ପୂର୍ଣ୍ଣ ସମର୍ପିତ କରି କହୁଥିଲେ।

ପ୍ରଭୁ ଜଗନ୍ନାଥ ପତିତ ପାବନ।
ଜୀବନ ମରଣେ ତୁମ୍ଭେ ମୋ ଶରଣ ॥

ଭୀମ ଭୋଇ ନିର୍ଗୁଣ, ନିରାକାରଙ୍କ ଉପାସକ ଭାବରେ ନିଜକୁ ଅଭିହିତ କରିଛନ୍ତି-

ପିତା ଅଟନ୍ତି ମୋ ଅନାଦି ଠାକୁର,
ମାତା ଅଟନ୍ତି ଆଦିଶକ୍ତି ନାରୀ ।

ବୋଲି ବର୍ଣ୍ଣନା କରି ସେହି ଯୁଗଳ ପାଦପଦ୍ମରେ ନିଜର ଲୟ ଓ ଧ୍ୟାନ ରଖନ୍ତି ବୋଲି କହିଛନ୍ତି। ବସ୍ତୁତଃ ସେହି ସମଦୃଷ୍ଟି ସମଭକ୍ତି ଭାବ ଏହି ଧର୍ମ ଆଚରଣ ଓ ଭକ୍ତି ଭାବନାରେ ସତ୍ୟ ହିଁ ପ୍ରାଧାନ୍ୟ ଲାଭ କରଛି। ଭୀମ ଭୋଇ ଯେତେବେଳେ କ୍ଷୋଭ ପ୍ରକାଶ କରୁଛନ୍ତି,

ସତ୍ୟକୁ ଛାଡିଲେ ଅମଡ଼ା ମାଡ଼ିଲେ ଲାଗିଅଛି ନଟ କୂଟ।
ମିଛ ପସରାକୁ ଆବୋରି ଅଛନ୍ତି ବସାଇ ବଜାର ହାଟ। (ସ୍ତୁତି ଚିନ୍ତାମଣି)

ସେତେବେଳେ ସ୍ୱରାଜ୍ୟ ସାଧାନରେ-ବ୍ରତୀ କାରାବନ୍ଦୀ ଗୋପବନ୍ଧୁ ତାଙ୍କ 'କାରା କବିତା'ରେ କହୁଛନ୍ତି,

"ଅନ୍ୟାୟ ଅଧର୍ମ ପାପ ଅତ୍ୟାଚର
ମାନେ ଅବଶେଷେ ସତ୍ୟ ପାଖେ ହାର।
ଅବିଶ୍ୱାସ ସର୍ବେ ଦୃଢ କରି ମନ
ସ୍ୱରାଜ ଧରମ କର ଆଚରଣ।"

ସେହି ବକ୍ତବ୍ୟ ଭୀମଭୋଇଙ୍କ ବାଣୀରେ ଦେଖିବାକୁ ମିଳେ,

"ସତ୍ୟରେ ମରିବି, ସତ୍ୟରେ ତରିବି ଏହି ଆଜ୍ଞା ମୋତେ ହେଉ
କହେ ଭୀମ ଭୋଇ ଏ ମୃତ୍ୟୁ ମଣ୍ଡଳେ ନାଶ ଅପଯଶ ଥାଉ।"

ଭୀମ ଭୋଇଙ୍କରଏହି ଉଦ୍‌ଘୋଷଣା ପରି ଗୋପବନ୍ଧୁଙ୍କର କବିବାଣୀ ହେଲା-

"ଏ ଜୀବନ ସତ୍ୟ ଶୁଦ୍ଧ ସାରତତ୍ତ୍ୱ
ତତ୍ତ୍ୱ ଅନୁବନ୍ଧ ମାନବର ସତ୍ତ୍ୱ
× × ×
ତତ୍ତ୍ୱର ସାଧନେ କୃତ କୃତ୍ୟ ଜନ
ଲଭଇ ମରଣେ ଅମୃତ ଜୀବନ।
ସତ୍ୟ ସନାତନ ପ୍ରଭୁ ଭଗବାନ
ଏ ଭାବେ କର ମୋ ହୃଦ ବଳୀୟାନ।"

ଜାତିଭେଦ ବିରୁଦ୍ଧରେ ନିଜର ସ୍ୱର ତୀବ୍ର କରିଥିବା ଭୀମଭୋଇଙ୍କ ପରି ଗୋପବନ୍ଧୁ ମଧ୍ୟ ନିଜର ପ୍ରିୟ ଧାମ ନୀଳାଚଳରେ ଜାତିଭେଦକୁ ଗ୍ରହଣ କରି ପାରିନାହାନ୍ତି। ତେଣୁ ସେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ତାଙ୍କ କବିତାରେ,

ଯହିଁ ଜାତି ଭେଦ, ନାହିଁ ଧର୍ମ ଭେଦ
ସୌମ୍ୟ ମୈତ୍ରୀ ମନ୍ତ୍ର ଗାଏ ଯାର ବେଦ
କେ କରିବ ଭବେ ଦେବତା ମାନବେ
ନୀଳଚଳେ ତାର ପ୍ରବେଶ ନିଷେଧ ।

( ନିତ୍ୟଧାମ ନୀଳାଚଳ )

ରାଜନୀତି କରୁଥିବା ରାଜାମାନଙ୍କ ଆଜ୍ଞାକୁ ଅମାନ୍ୟ କରି ରାଜତନ୍ତ୍ରର ଅନ୍ୟାୟ ବିରୁଦ୍ଧରେ ବିଦ୍ରୋହ କରିଥିବା ଭୀମ ଭୋଇଙ୍କ ପରି ବ୍ରିଟିଶଶାସନାଧୀନ ଭାରତରେ ରାଜତନ୍ତ୍ରଙ୍କୁ ଚେ଼ତାଇ ଦେଇଛନ୍ତି ଗୋପବନ୍ଧୁ –

"ଡରାଇ ଶାସିବା ନୀତି ଭାଙ୍ଗିଯିବ
ପ୍ରଜାଙ୍କ ମତରେ ଶାସନ ଚ଼ଳିବ।"

ପ୍ରଜାତନ୍ତ୍ର ସପକ୍ଷରେ ନିଜର ଶାଣିତ ସ୍ୱର ପ୍ରକାଶ କରି ଗୋପବନ୍ଧୁ ଲେଖିଛନ୍ତି;

"ପ୍ରଜା ପାଇଁ ସିନା ପ୍ରଜାପତି ସୃଷ୍ଟି
ପ୍ରଜା ପାଇଁ ଇନ୍ଦ୍ର କରେ ଜଳ ବୃଷ୍ଟି
ପ୍ରଜା ପାଇଁ ନଦୀ ବହେ ଶତ ଧାର
ଚନ୍ଦ୍ର ସୂର୍ଯ୍ୟ ଢାଳେ ଧାରା କିରଣର
ପ୍ରଜା ହିତେ ସିନା ହିତ ଜଗତର
ଏହି ମହାବାଣୀ ମନେ ହେତୁକର ।"

× × ×

ନ ସହିବ କଷ୍ଟ କେହି ଅନାହାରେ
ନ ମରିବ ଦୁଃଖୀ ଧନୀଙ୍କ ପ୍ରହାରେ

(ବନ୍ଦୀର ଆତ୍ମକଥା)

ନିଜର ଜୀବନ ଯାତନାକୁ ଅଣଦେଖାକରି ଜଗତ ଉଦ୍ଧାରର ସ୍ୱପ୍ନ ଦେଖୁଥିବା ଓଡ଼ିଶାର କନ୍ଧକବି ଭୀମ ଭୋଇଙ୍କ ପରି ବିଶ୍ୱପ୍ରେମରେ ଉଦ୍‌ବୁଦ୍ଧ ଉତ୍କଳମଣି ଗୋପବନ୍ଧୁ ମଧ୍ୟ ଚାହୁଁଥିଲେ, ବିଶ୍ୱଜନ ପ୍ରୀତି ହେଉ ଉତ୍କଳବାସୀଙ୍କର ନୀତି। ବିଶ୍ୱପ୍ରୀତିରେ ପରାକାଷ୍ଠା ଦେଖାଇ ଏକ କବିତାରେ ଗୋପବନ୍ଧୁ ଗାଇଛନ୍ତି,

ନିଜ ସୁଖ ଲାଗି ଜାତ ନୁହଁ ହିନ୍ଦୁ
ବିଶ୍ୱହିତେ ତାର ପ୍ରତି ରକ୍ତବିନ୍ଦୁ
ଦେଖାଅ ଏ ସତ୍ୟ ଆପଣା ପରାଣେ
ଦିଅ ଏହି ମନ୍ତ୍ର ସର୍ବବର୍ଣ୍ଣ କାନେ
ସର୍ବେ ଆମ୍ଭେ ଏକ ଈଶ୍ୱର ସନ୍ତାନ
ସାଧ ବିଶ୍ୱହିତେ ତେଜି ଅଭିମାନ।

( ଅବକାଶ ଚିନ୍ତା )

"ପ୍ରେମଭାବେ ଯାର ଅନ୍ତର ପୂରିତ
ସର୍ବ ପ୍ରାଣୀହୃଦ ତା ହୃଦେ ଅଙ୍କିତ
ସର୍ବ ଅନୁଭୂତି ସର୍ବଭୂତେ ତାର
ତା' ଆଖିରେ ବିଶ୍ୱ ଏକ ପରିବାର

ସେହି ନିଜେ ବିଶ୍ୱ, ବିଶ୍ୱ ମଧ୍ୟେ ସେହି
ଅନ୍ୟ ହୋଇ ତାର ଆଉ କେହି ନାହିଁ ।"

ଗୋପବନ୍ଧୁଙ୍କର ଏହି କାବ୍ୟୋକ୍ତିରେ ଆମେ ଦେଖିପାରିବା, ଉଭୟ ବିଶ୍ୱପ୍ରାଣ ଓ ବିଶ୍ୱପ୍ରେମୀ କବି ଭୀମ ଭୋଇ ଓ ଗୋପବନ୍ଧୁ ଦାସଙ୍କୁ । ସତ୍ୟ, ନିଷ୍ଠା, ଧର୍ମୀୟ ଭାବନା ଓ ଭକ୍ତିଭାବ, ଜାତିବିହୀନ ସମାଜର ସ୍ୱପ୍ନ ତଥା ବିଶ୍ୱକଲ୍ୟାଣର ଜୀବନ ଦର୍ଶନରେ ଉଭୟ ଥିଲେ ପରସ୍ପର ପରିପୂରକ। ଅଲୁଳାୟିତକେଶ, ଶ୍ମଶ୍ରୁଯୁକ୍ତ ମୁଖମଣ୍ଡଳ, ପରିଧାନରେ କଷାୟବସ୍ତ୍ର, ହାତରେ ତାଳପତ୍ରର ଛତା, ଝୁଲାମୁଣୀରେ ଖେଦାଏ ତାଳପତ୍ର ଓ ଲେଖନୀଟିଏ, ପାଦରେ ଦୃତଗତିଏହା ଥିଲା ବାହ୍ୟଦୃଷ୍ଟିରେ ଭୀମଭୋଇଙ୍କ ଚେହେରାର ଚିତ୍ର । ସେହିଭଳି ଗୋପବନ୍ଧୁଙ୍କର ଶ୍ମଶ୍ରୁଯୁକ୍ତ ମୁଖମଣ୍ଡଳର ଲାବଣ୍ୟ, କଥାର ମାଧୁରୀ, ହସର ସରଳତା, ଆଖିର ଜ୍ୟୋତି ଓ କପାଳର ତେଜ, ଚେହେରା ଓ ଚହାଣୀରେ ଚେତନାର ଚମକରେ ଆମର ଜନଜୀବନକୁ ଚମତ୍କୃତ କରିଥଲେ ଏଇ ଦୁଇ ମହାତ୍ମା। ଏହି ଧୂଳିମାଟିର ଫୁଲ ହୋଇ ଫୁଟିଥିଲେ ସତ, ହେଲେ ମହକରେ ମହକିତ କରିଦେଇଥିଲେ ସମଗ୍ର ବିଶ୍ୱକୁ ।

–୦–

# ସନ୍ଥକବି ଭୀମ ଭୋଇଙ୍କର ଭକ୍ତିମାର୍ଗ

ହରିଶ୍ଚନ୍ଦ୍ର ସାହୁ

ଭାରତୀୟ ଦର୍ଶନରେ ଭକ୍ତି-ସାଧନକୁ ଗୁରୁତ୍ୱ ଦିଆଯାଇଛି । ଋଗ୍ ବେଦରେ ପରମେଶ୍ୱରଙ୍କୁ ନିଜ ଅପରାଧ କ୍ଷମା କରି ଅନିଷ୍ଟ ନିବାରଣ କରି ବସ୍ତୁ ପ୍ରଦାନ କରିବା ପାଇଁ ଭକ୍ତ ଅତି ଆବେଗପୂର୍ଣ୍ଣ ଭାଷାରେ ନିବେଦନ କରିବା ଉଲ୍ଲେଖ ଅଛି । ଉପନିଷଦରେ ଅହେତୁକୀ ତଥା ଅନନ୍ୟ ଭାବମୟ ଭକ୍ତିର ପ୍ରତିପାଦନ କରାଯାଇଛି । ଶ୍ୱେତଶ୍ୱତରରେ ପରମେଶ୍ୱରଙ୍କୁ ଉପାସନା କରି ତାଙ୍କ ପ୍ରାପ୍ତି ନିମିତ୍ତ ସର୍ବଦା ଯତ୍ନବାନ ହେବା ବିଧେୟ ବୋଲି କୁହାଯାଇଛି । ଭଗବତ୍ ଗୀତାରେ ଭକ୍ତିର ବିଶଦ ବର୍ଣ୍ଣନା କରିବାକୁ ଯାଇ ଶ୍ରୀକୃଷ୍ଣ କହୁଛନ୍ତି-ଯେ ଏକାଗ୍ର ଚିତ୍ତରେ ମୋର ଧ୍ୟାନ କରି ମୋର ଭଜନ କରେ, ସେ ମୋର ପ୍ରକୃତ ଭକ୍ତ ଅଟେ । ନାରଦଭକ୍ତି ସୂତ୍ର ଏବଂ ଶାଣ୍ଡିଲ୍ୟଭକ୍ତି ସୂତ୍ରରେ ଭକ୍ତିକୁ କର୍ମ, ଜ୍ଞାନ ତଥା ଯୋଗଠାରୁ ଶ୍ରେଷ୍ଠତର ବୋଲି କୁହାଯାଇଛି ।

ଭୀମ ଭୋଇ ମଧ୍ୟ ଭକ୍ତି-ଯୋଗକୁ ସମସ୍ତ ସାଧନା ପଥର ଶ୍ରେଷ୍ଠତର କହିଲେ ମଧ୍ୟ ଜ୍ଞାନଯୋଗ ଓ କର୍ମଯୋଗକୁ ଅବହେଳା କରିନାହାନ୍ତି । ଭକ୍ତି ହେଉଛି ଏକ ସରଳ ଓ ସହଜପନ୍ଥା ବୋଲି ଭକ୍ତ ମନେ କରେ କିନ୍ତୁ ଭକ୍ତି ଏକ କଠିନ ସାଧନା ଯେଉଁଥିପାଇଁ ଭକ୍ତକୁ ନିଜ କୁକ୍ରିୟା କର୍ମକୁ ନିୟନ୍ତିତ କରିବାକୁ ପଡ଼ିବ । ବ୍ରହ୍ମଜ୍ଞାନ ବା ବ୍ରହ୍ମାନୁଭୂତି ଯଦି ବୁଦ୍ଧି ଦ୍ୱାରା ପ୍ରାପ୍ତ ହୋଇ ପାରିବ ନାହିଁ ତାହାହେଲେ ଏହା ପ୍ରାପ୍ତ ହେବ କିପରି ? ଭୀମ ଭୋଇ କହନ୍ତି, ଭକ୍ତିବିନା ସଦ୍‌ଜ୍ଞାନ ସମ୍ଭବପର ନୁହେଁ ।

ବିନା ଭକ୍ତିରେ ପ୍ରାପତ ନୁହଁଇ ସଦ୍‌ଜ୍ଞାନ
ଦୁର୍ଲ୍ଲଭ ତନୁ ଗୁରୁ ସେବା ବିନୁ ବର୍ତ୍ତିବ ସଂସାରେ କେଉଁ ଜନ । (୧)

ତେଣୁ ଭକ୍ତି ସାଧନାରେ ଗୁରୁଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ଭୀମଭୋଇ ବାରମ୍ବାର କହିଛନ୍ତି ଯେ ଗୁରୁ ଏକ ସାଧାରଣ ଶିକ୍ଷକ ନୁହଁନ୍ତି । ଅଜ୍ଞାନ ରୂପକ ଅନ୍ଧକାରରୁ ଯିଏ ଜ୍ଞାନ ରୂପକ ଆଲୋକ ବର୍ତ୍ତିକା ଆଡ଼କୁ ନେଇ ଯାଇ ପାରନ୍ତି, ସେ ହେଉଛନ୍ତି ଗୁରୁ । ସେ ହେଉଛନ୍ତି ତତ୍ତ୍ୱଦ୍ରଷ୍ଟା, ବ୍ରହ୍ମଜ୍ଞାନୀ ଯେ କି ଆତ୍ମଜ୍ଞାନ ନିମିତ୍ତ ଦିଗ୍‌ଦର୍ଶନ ଦେଇ ଜିଜ୍ଞାସୁର ଭ୍ରମ ଦୂରୀକରଣ କରନ୍ତି । ଏହିପରି ଗୁରୁ ପାଇବା ସହଜ ସାଧ ନୁହେଁ, ତେଣୁ ଭୀମ ଭୋଇ କହୁଛନ୍ତି –

ସଦଗୁରୁଙ୍କୁ ଖୋଜ, ବେଦରେ କିସ କାର୍ଯ୍ୟ (୨)

ତେଣୁ ଏପରି ଗୁରୁଙ୍କୁ ସନ୍ଧାନ କର ଯେ ଲୋଭ, ମୋହରୁ ମୁକ୍ତ, ନିଷ୍ପାପ ଏବଂ ସଂସାରରେ ଥାଇ ମଧ ସଂସାର ପ୍ରତି ଆସକ୍ତ ରୁହନ୍ତି ନାହିଁ ।

ଯଦି ଏପରି ଗୁରୁ ମିଳନ୍ତି ତାହେଲେ ଶିଷ୍ୟ ଏ ସଂସାର ମାୟାରୁ ମୁକ୍ତ ହୋଇ ପରମାନନ୍ଦ ଲାଭ କରେ । ଗୁରୁଙ୍କ ଜ୍ଞାନ ଦ୍ୱାରା ଶିଷ୍ୟ ଅତି କମ୍ ସମୟରେ ବ୍ରହ୍ମଜ୍ଞାନ ପାଇପାରେ ଯାହା ପୂର୍ବରୁ ବିଭିନ୍ନ ଜନ୍ମରେ ପ୍ରାପ୍ତ ହୋଇନଥିଲା । ଗୀତାରେ ଉଲ୍ଲେଖ ଅଛି ଯେ ଯାହାର ବ୍ରହ୍ମାନୁଭୂତି ଅଛି, ତାଙ୍କଠାରୁ ହିଁ ଆମେ ସଦ୍‌ଜ୍ଞାନ ପ୍ରାପ୍ତ କରିପାରିବା ପୁନଶ୍ଚ କୁହାଯାଇଛି –

ସଷ୍ଟାଙ୍ଗ ପ୍ରଣିପାତ ଦ୍ୱାରା, ପ୍ରଶ୍ନ ଏବଂ ସେବା ଦ୍ୱାରା ତୁମେ ତାହାଜାଣ । ତତ୍ତ୍ୱଦର୍ଶୀ ଜ୍ଞାନୀ ପୁରୁଷ ତୁମକୁ ଜ୍ଞାନର ଉପଦେଶ ଦେବେ । (୩)

ଭୀମ ଭୋଇଙ୍କ ରଚନାବଳୀରୁ ଜଣାପଡ଼େ ଯେ ଗୁରୁ-ପରମ୍ପରା ଦ୍ୱାରା ପ୍ରଭାବିତ ହୋଇ ସେ ଗୁରୁଙ୍କୁ ସର୍ବୋଚ୍ଚ ସ୍ଥାନ ଦେଇଥିଲେ । ସେ ଶୂନ୍ୟ ପୁରୁଷ ମହିମା ସ୍ୱାମୀଙ୍କୁ ଗୁରୁ ଭାବରେ ସ୍ୱୀକାର କରିଥିଲେ । ତାଙ୍କର ପ୍ରଥମ ଭଜନଟି ଗୁରୁଙ୍କୁ ସମର୍ପିତ କରିଥିଲେ ।

ବନ୍ଦନା ପାଦପଦ୍ମକୁ<br>
ଧ୍ୟାୟୀ ଅରୂପାନନ୍ଦଙ୍କୁ<br>
ଧ୍ୟାୟୀ ସ୍ୱାମୀ ପୟରକୁ । (୪)

ଗୁରୁ ଯେ କି ଅରୂପାନନ୍ଦ ଅର୍ଥାତ୍ ନିରାକାର ଏବଂ ପୂର୍ଣ୍ଣାନନ୍ଦ ତାଙ୍କୁ ସ୍ୱାମୀ ଭାବରେ ଭକ୍ତି କରୁଥିଲେ । ତାଙ୍କ ପାଦପଦ୍ମରେ ସମର୍ପି ଦେଇଥିଲେ । ତାଙ୍କୁ ସେ ଆଧ୍ୟାତ୍ମିକ ଗୁରୁ ଭାବେ ନ ଭାବି ଜଗତର ପରମସଖା ବୋଲି ଗ୍ରହଣ କରିଥିଲେ ।

ସ୍ତୁତିଚିନ୍ତାମଣିରେ ସେ ଉଲ୍ଲେଖ କରିଛନ୍ତି ଯେ ସେ ପ୍ରଭୁଙ୍କ କୃପା ପାଇଁ ପ୍ରାର୍ଥନା କରିଥିଲେ ଏବଂ ତାଙ୍କର ସମସ୍ତ କବିପଣ ଗୁରୁକୃପାର ଦାନ। ଗୁରୁଙ୍କ ସ୍ୱରୂପ ଅବର୍ଣ୍ଣନୀୟ, ତେଣୁ ସେ କହନ୍ତି, "ଶୂନ୍ୟ ମନ୍ଦିରେ ବିହାର, ରୂପରେଖ ନାହିଁ ତାର।"(୫)

ଭୀମଭୋଇଙ୍କ ଦ୍ୱାରା ପ୍ରଦର୍ଶିତ ଭକ୍ତି-ସାଧନାକୁ ନିଷ୍କାମଭକ୍ତି ବା ଅଲେଖଭକ୍ତି ବୋଲି କହନ୍ତି। ଏହି ଅଲେଖଭକ୍ତି ସହଜ ସାଧ ନୁହେଁ, ସମସ୍ତେ ଅଲେଖ ସାଧନା କରିନପାରନ୍ତି ଯେ ପର୍ଯ୍ୟନ୍ତ ସେମାନେ ନିଜକୁ ତାଙ୍କଠାରେ ସଂପୂର୍ଣ୍ଣ ସମର୍ପଣ କରି ନିଷ୍ଠାର ସହ ତାଙ୍କୁ ଶ୍ରଦ୍ଧା ଓ ଭକ୍ତି ନ କରିପାରିଛନ୍ତି।

ଅଲେଖ ଭଗତି କେହି ନ ପାରନ୍ତି କୋଟିକେ ଗୋଟିଏ ସାର
ସେହୁ ସମରଥ ନୁହନ୍ତି ଶୁଦ୍ଧ ମନରେ ବିଗ୍ଭର।
ଅଶ୍ରୁତି ଶୂନ୍ୟ ଅଗୋଚର ଭରସା ଯେ କରିପାରେ
ଅନ୍ତରେ ବାହାରେ ସେ ଅଲେଖ ବ୍ରହ୍ମ ପୁରିଥାଏ ସବୁଠାରେ। (୬)

ଭୀମଭୋଇଙ୍କ ମତରେ ଭକ୍ତି-ସାଧନାରେ ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଏକ ଅନୁପ ସମ୍ପର୍କ ରହିଛି। ପରମସତ୍ତା ଏକ ସୈଦ୍ଧାନ୍ତିକ ତତ୍ତ୍ୱ ନୁହେଁ ବରଂ ସେ ସଜୀବ ପରିପୂର୍ଣ୍ଣ ସତ୍ତା। ଭକ୍ତିରେ ଭଗବାନ ଅରୂପ ହେଲେ ମଧ୍ୟ ଭକ୍ତ ପାଇଁ ରୂପ ଧାରଣ କରିଥାନ୍ତି। ଭୀମଭୋଇ ଯଦିଓ ଭଗବାନଙ୍କ ଅବ୍ୟକ୍ତ ରୂପକୁ ଗ୍ରହଣ କରିଛନ୍ତି ତଥାପି ସେ ଜାଣନ୍ତି ଯେ ସମସ୍ତ ସଦ୍‌ଗୁଣରେ ସେ ଆଧାର ହୋଇଛନ୍ତି।

ସେ ଯେ ଅନାଦି ଅଲେଖ, ହୋନ୍ତି କଳେବର ରୂପ
ଭକ୍ତ ହିତରେ ହେ। (୭)

ତେଣୁ ଭଗବାନ ଏତେ କରୁଣାମୟ ଯେ ସେ ଅସୀମ ହେଲେ ମଧ୍ୟ ଭକ୍ତନିମିତ୍ତ ମାନବରୂପ ଧାରଣ କରନ୍ତି। ଏହା ଦର୍ଶାଏ ଯେ ଭଗବାନ ବ୍ୟକ୍ତିସ୍ୱରୂପ ଧାରଣ କରୁଥିଲେ ମଧ୍ୟ ସେ ପୁରୁଷାବତାର ନୁହନ୍ତି। ଜ୍ଞାନ-ମାର୍ଗର ନିର୍ଗୁଣ ବ୍ରହ୍ମ ତତ୍ତ୍ୱ ହିଁ ଭକ୍ତର ଭାବନା ଏବଂ ଶ୍ରଦ୍ଧା ଦ୍ୱାରା ପରିକଳ୍ପିତ ହୋଇ ଏକ ସର୍ବଶକ୍ତିମାନ୍ ରୂପ ଧାରଣ କରନ୍ତି ଓ ଭବବନ୍ଧନରୁ ମୁକ୍ତ କରନ୍ତି।

କେତେକଙ୍କ ମତରେ ଭକ୍ତି-ମାର୍ଗ ଓ ଜ୍ଞାନମାର୍ଗ ପରସ୍ପର ବିରୋଧୀ। ଭୀମ ଭୋଇ କହନ୍ତି ଯେ ଜ୍ଞାନମାର୍ଗ ହେଉଛି ଭକ୍ତି ମାର୍ଗର ଏକ ପ୍ରାରମ୍ଭିକ ଏବଂ ଆବଶ୍ୟକୀୟ ପୂର୍ବାବସ୍ଥା। ଭକ୍ତିରେ ଭଗବାନଙ୍କ ସ୍ୱରୂପ ସମ୍ବନ୍ଧରେ ସଂପୂର୍ଣ୍ଣ ଜ୍ଞାନ ଥିବା ଆବଶ୍ୟକ।

ଭକ୍ତ ଏହା ଜାଣିବା ଦରକାର ଯେ ଶୂନ୍ୟପୁରୁଷଠାରୁ ଏହି ଜଗତ ସୃଷ୍ଟ ଏବଂ ସ୍ଥିତ। ପ୍ରକୃତି ଦ୍ୱାରା ଭ୍ରମିତ ହୋଇ ନିଜ ପୂର୍ବ କର୍ମ ଦ୍ୱାରା ମଣିଷ ଜନ୍ମ ହୋଇଛି। ଭଗବାନଙ୍କ ମାୟା ହେଉଛି ଏକ ଦିବ୍ୟ ଲୀଳା। ତେଣୁ ସେ ପରମପୁରୁଷର କୃପାରୁ ଏ ଜନ୍ମ-ମରଣ ଚକ୍ରରୁ ଉଦ୍ଧାର ହୋଇପାରେ। ଭକ୍ତ ନିମିତ୍ତ ତାର ସମସ୍ତ କର୍ମ ସେହି ପରମସତ୍ତାଙ୍କ ସ୍ୱରୂପର ଜ୍ଞାନ ଦ୍ୱାରା ହୋଇଥାଏ ଏବଂ ସେ ସମସ୍ତଙ୍କ ମଧ୍ୟରେ ସ୍ଥିତ। ତେଣୁ ସେ ଅଖଣ୍ଡ ନିରନ୍ତର ପ୍ରଭୁଙ୍କ ଭକ୍ତିରେ ତଲ୍ଲୀନ ରହିଥାଏ।

କେଉଁ ଠାରେ ନାହିଁ ସବୁଠାରେ ଥାନ୍ତି
ଆତ୍ମଜ୍ଞାନୀ ଭକ୍ତକୁ ସେ ଦୃଶ୍ୟ ହୋଇଥାନ୍ତି
× × ×
ଏକାକ୍ଷର ପଦ ଚିହ୍ନ ଭଜୁଛନ୍ତି ବ୍ରହ୍ମଜ୍ଞାନୀ (୮)

ବର୍ତ୍ତମାନ ସ୍ୱତଃ ପ୍ରଶ୍ନ ଉଠେ ଭକ୍ତି ନିଷ୍କାମ ହେବା ଶ୍ରେଷ୍ଠ। ଯଦି ଭକ୍ତିରେ କିଛି ପ୍ରାପ୍ତ କରିବା ପାଇଁ କାମନା କରେ, ସେ ପରମ ସତ୍ତା ହୁଅନ୍ତି ପଛେ ତାହାକୁ ସକାମ ଭକ୍ତି କୁହାଯାଏ। ଯଦି ଭକ୍ତ କୌଣସି କାମନା ନ କରି କେବଳ ଭକ୍ତିକୁ ନିଜର ସର୍ବୋତ୍ତମ ଭାବନା ବୋଲି ଭାବେ, ତାହାହେଲେ ସେହି ଭକ୍ତି ହେଉଛି ନିଷ୍କାମ ଭକ୍ତି। ସ୍ତୁତିଚିନ୍ତାମଣିରେ ଭୀମ ଭୋଇ ନିଷ୍କାମ ଭକ୍ତିକୁ ସର୍ବୋତ୍ତମ ଭକ୍ତି ଭାବରେ ଗ୍ରହଣ କରିଛନ୍ତି ଯଦ୍ୱାରା ଭକ୍ତ ସମସ୍ତ ସୁଖ-ଦୁଃଖରୁ ମୁକ୍ତ ହୁଏ। ଭକ୍ତ ପରମସତ୍ତାକୁ କେବେହେଲେ ପ୍ରାପ୍ତ କରିପାରିବ ନାହିଁ ଯଦି ସେ ନିରନ୍ତର ପ୍ରଭୁଙ୍କ ନାମକୁ ସ୍ମରଣ ନ କରେ।

ନିଷ୍କାମ ହୋଇଲେ ମନ ଦୃଶ୍ୟ ହେବ ପରଂବ୍ରହ୍ମ। (୯)

ଏହି ସ୍ଥଳେ ନାମ-ସ୍ମରଣ ଭକ୍ତି ମାର୍ଗରେ ଏକ ପ୍ରମୁଖ ପଥ ଭାବରେ ଗ୍ରହଣ କରାଯାଇଛି। ଯଦି ପ୍ରଭୁ ଅନାମ, ତାହେଲେ ନାମ-ସ୍ମରଣର ଆବଶ୍ୟକତା କଣ ? ସଗୁଣ ବା ନାମ ହେଉଛି ଭକ୍ତି-ମାର୍ଗର ପ୍ରଥମ ପାବଛ। ଅରୂପରୁ ରୂପ, ଅନାମରୁ ନାମ ଦୃଶ୍ୟ ହୋଇଥାଏ ଯାହା ନାମ ଓ ଅନାମର ଏକ ଅପୂର୍ବ ସମନ୍ୱୟର ପରିପ୍ରକାଶ। ପରମସତ୍ତାର ଏହା ଅବିଛିନ୍ନ ଏବଂ ସାମ୍ୟ ପରିପ୍ରକାଶ। ଭୀମ ଭୋଇ ନାମରେ ଶରଣ ଯିବା ପାଇଁ କହୁଛନ୍ତି ଏବଂ ଏହା ଆଧ୍ୟାତ୍ମିକ ଧର୍ମର ସର୍ବଶ୍ରେଷ୍ଠ ଧର୍ମ।

ସେ କହୁଛନ୍ତି,

ନାମରେ ଶରଣ ଯାଅ, ଜୀବପରେ ଦୟାବହ।
ଏ ଧର୍ମରୁ ସାର ଆଉ ନାହିଁ ନା ସଂସାରେ।। (୧୦)

ତେଣୁ ମହିମା ନାମଟିକୁ ସେ ଧର୍ମ ଭାବରେ ଅଭିହିତ କରୁଛନ୍ତି ଏବଂ ନାମ ମାଧ୍ୟମରେ ହିଁ ଅନାମର ସ୍ୱରୂପ ବୁଝି ହେବ। ନାମର ମହିମା ବର୍ଣ୍ଣନା କରିବାକୁ ଯାଇ ସେ କହୁଛନ୍ତି ନାମ ହେଉଛି ଅନାମ ଠାରୁ ଅଭିନ୍ନ ଏବଂ ଅନାମକୁ ନାମ ଘୋଡାଇ କରି ରଖିଛନ୍ତି, ତେଣୁ ଚର୍ମ ନୟନରେ ସେ ଦୃଶ୍ୟ ହୁଅନ୍ତି ନାହିଁ, କେବଳ ଜ୍ଞାନ ନୟନରେ ସେ ଦୃଶ୍ୟବାନ୍।

"ବ୍ରହ୍ମ ପାଶେ ନାମ ଅଛି ଘୋଡ଼ାଇ କରି ରଖିଛି,
ଚର୍ମ ନୟନରେ ନ ଦିଶେ କାହାକୁ
ଜ୍ଞାନ ନୟନରେ ଦିଶେ ଦୂରେ ନାହିଁ ପାଶେ ଥାଇ।" (୧୧ )

ତେଣୁ ସେ କହୁଛନ୍ତି ଯିଏ ଯେଉଁ ବୃତ୍ତି କରିଥିଲେ ମଧ୍ୟ ମହିମା ନାମକୁ ଜପ କଲେ ବ୍ରହ୍ମାନୁଭୂତି ସମ୍ଭବ।

ବର୍ତ୍ତମାନ ପ୍ରଶ୍ନ ଉଠେ ଯଦି ଭୀମ ଭୋଇ ସ୍ପଷ୍ଟଭାବରେ ନିଷ୍କାମଭକ୍ତିକୁ ପ୍ରାଧାନ୍ୟ ଦେଉଛନ୍ତି, ତାହାହେଲେ ପରଂବ୍ରହ୍ମ ଭକ୍ତକୁ ପରମାନନ୍ଦ ଦେଇ କିପରି ବନ୍ଧନରୁ ମୁକ୍ତ କରିପାରିବେ ? ଏହି ପ୍ରସଙ୍ଗରେ ଭକ୍ତିର ପ୍ରକୃତ ଅର୍ଥ ବୁଝିବାକୁ ହେବ। ବ୍ରହ୍ମଙ୍କୁ ଅନୁଭବ କରିବା ହେଉଛି ସବୁ ଧର୍ମର ଲକ୍ଷ୍ୟ। ଏହି ଅନୁଭୂତି ଦୁଇ ପ୍ରକାର ହୋଇପାରେ। ଗୋଟିଏ ହେଉଛି ବ୍ରହ୍ମ ଚେତନା ଉପରେ ପ୍ରାଧାନ୍ୟ ଦେବା ଏବଂ ଅନ୍ୟଟି ହେଉଛି ନିଜ ଚେତନା ଉପରେ ପ୍ରାଧାନ୍ୟ ଦେବା। ଭକ୍ତି ମାର୍ଗ ପ୍ରଥମଟିକୁ ପ୍ରୟୋଗକରେ କିନ୍ତୁ ଜ୍ଞାନ ମାର୍ଗ ଦ୍ୱିତୀୟ ପଥକୁ ଅନୁସରଣ କରିଥାଏ। ଭକ୍ତିମାର୍ଗରେ ଅସୀମ, ଅବର୍ଣ୍ଣନୀୟବ୍ରହ୍ମକୁ ଚେତନାର ଏକ ବସ୍ତୁକୁ ଅନୁଭବ କରିବାକୁ ଉଦ୍ୟମ କରେ। ତେଣୁ ଆନନ୍ଦ ହେଉଛି ବସ୍ତୁ ଏବଂ ପରମାନନ୍ଦ ଅନୁଭୂତି ହେଉଛି ଅନ୍ତିମ ସୋପାନ। ଭକ୍ତ ସଂସାରରେ ପ୍ରତ୍ୟେକ ବସ୍ତୁ ମଧ୍ୟରେ ପରମାତ୍ମା ପ୍ରକଟିତ ହେଉଥିବା ଦେଖିପାରେ। ତେଣୁ ତାକୁ ସମଦର୍ଶୀ କୁହାଯାଏ।

ସକଳ ଭୂତରେ ଏକ ଆତ୍ମା ପ୍ରାୟ ଦେଖେ
ସମସ୍ତଙ୍କୁ ବୋଲେ ମୋର ମୁଁ ଅଟଇ ତୁମ୍ଭର। (୧୨)

ସମଦର୍ଶୀ ସୁଖ-ଦୁଃଖରେ ସମ ଅନୁଭବ କରିଥାଏ, କେବେହେଲେ ହର୍ଷିତ ଓ ଦୁଃଖିତ ହୁଏ ନାହିଁ ବା ବିମୁଖ ହୁଏ ନାହିଁ। ଭଗବତ ଗୀତାରେ (ଅଧ୍ୟାୟ- ୨, ଶ୍ଳୋକ- ୫୬) ଏକଥା ଅବତରଣା କରି କୁହାଯାଇଛି,

"ଦୁଃଖେଷ୍ଣୁ ଅନୁଦ୍‌ବିଗ୍ନ ମନାଃ ସୁଖେଷ୍ଣୁ ବିଗତ ସ୍ପୃହଃ
ବୀତରାଗ ଭୟ କ୍ରୋଧଃ, ସ୍ଥିତଧୀର୍ମୁନି ରୁଚ୍ୟତେ।"

ଅର୍ଥାତ୍ ଦୁଃଖ ଦ୍ୱାରା ଯାହା ମନରେ ଉଦ୍‌ବେଗ ଜାତ ହୁଏ ନାହିଁ, ସୁଖ ମିଳିଗଲେ ବି ଯେ ନିସ୍ପୃହ ରୁହନ୍ତି, ଯାହାଙ୍କର ରାଗ, ଭୟ, କ୍ରୋଧ ନଷ୍ଟ ହୋଇଯାଇଛି, ସେହିପରି ମୁନିଙ୍କୁ ସ୍ଥିରବୁଦ୍ଧି କୁହାଯାଏ। ପରଂବ୍ରହ୍ମଙ୍କ ନାମରେ ଆଶ୍ରୟ କରି କୌଣସି କାମନା ନ କରି ଅନ୍ୟର କଲ୍ୟାଣ କାମନା କରି ତାହାକୁ ନିଜର ପରମସୁଖ ବୋଲି ଭାବେ।

ଦୁଃଖ ସୁଖକୁ ସମାନ ମଣୁଥାଇ, କେବେ ନୁହଇ ବିମୁଖ,
ନାମେ ଆଶ୍ରା କରି ଦିନ ବଞ୍ଚୁଥାଇ, ବୋଲେ ଏ ମୋର ବଡ଼ ସୁଖ। (୧୩)

ତେଣୁ ଭଗବାନ ଅତି ଆନନ୍ଦର ସହ କହୁଛନ୍ତି ଯେ ସେ ଭକ୍ତିମାନ ପୁରୁଷଟିଏ ମୋର ପ୍ରିୟ ଯେଉଁ ଭକ୍ତ କେବେହେଲେ ହର୍ଷିତ ହୁଏ ନାହିଁ, ଦ୍ୱେଷ, ଶୋକ କରେ ନାହିଁ ତଥା ସମସ୍ତ ଶୁଭ-ଅଶୁଭର ପରିତ୍ୟାଗ କରିଥାଏ।

ଅଲେଖ ଭକ୍ତିର ପ୍ରମୁଖ ଆବଶ୍ୟକତା ହେଉଛି ଯେ ପ୍ରଭୁଙ୍କ ସର୍ବଶକ୍ତିମାନ୍ ସ୍ୱରୂପରେ ଅନନ୍ୟ ଭାବରେ ନିଜକୁ ଏବଂ ନିଜର ସର୍ବସ୍ୱକୁ ନିଷ୍କାମ ଭାବେ ସମର୍ପଣ କରିବା। ଭଗବାନଙ୍କ ପ୍ରତି ପ୍ରଗାଢ ନିଷ୍ଠା ତଥା ଅନନ୍ୟ ଭାବର ପୂର୍ଣ୍ଣତା ନିମିତ୍ତ ସେ ଭଗବାନଙ୍କ ଶରଣାଗତ ହୋଇଥାଏ।

ସମର୍ପି ପିଣ୍ଡ ପରାଣ ଦାରା ସୁତ୍ତ ବିତ୍ତ ଧନ
ଧରି ମୋତେ ଉଦାସୀନ ନିଷ୍କାମ ମନରେ ହେ। (୧୪)

ଏହି ସମର୍ପଣ ପରେ ସେ ଅନୁଭବ କରେ ଯେ ଗୁରୁ ଦେବ ବୁଝନ୍ତୁ ବା ନ ବୁଝନ୍ତୁ ମୁଁ ମୋର ସସୀମ ଅହଂକାର, ବସ୍ତୁ, ପ୍ରିୟଜନକୁ ସମର୍ପଣ କରି ସଂସାର ଅମୂଲ୍ୟଧନ ପ୍ରାପ୍ତ କରିପାରିଛି।

ସମର୍ପି ଦେଲି ପାଇଲି ସର୍ବ, ବୁଝ ନ ବୁଝ ସ୍ୱାମୀ ଗୁରୁଦେବ। (୧୫)

ଅଲେଖ ଭକ୍ତିରେ ତନ୍ମୟ ଭାବ ସିଦ୍ଧିରେ ସଗୁଣ ନିର୍ଗୁଣ, ନାମ ଅନାମ, ସେବ୍ୟ-ସେବକର ଦ୍ୱୈତଭାବ ଏକ ହୋଇଯାଆନ୍ତି। ଏଥିରେ ଭକ୍ତ ଭାବ ଏବଂ ଭଗବତ୍ ସ୍ୱରୂପ ଏକ ହୋଇଯାଆନ୍ତି। ଭୀମ ଭୋଇଙ୍କ ଏକ ଅବଦାନ ହେଉଛି ଭଗବାନଙ୍କ ଭକ୍ତ ପ୍ରତି ସ୍ନେହଭାବ। ସେ ସର୍ବଶକ୍ତିମାନ୍ ହେଲେ ମଧ୍ୟ ଅଲେଖ ଭକ୍ତ ସୃଷ୍ଟି କରିବାରେ ଅସମର୍ଥ। ତେଣୁ ତାଙ୍କର କୌଣସି ଇଛା ନଥିଲେ ମଧ୍ୟ ଅଲେଖ ଭକ୍ତଙ୍କୁ ଦେଖି ସେ ଆନନ୍ଦିତ ହୋଇ ତାଙ୍କୁ ପ୍ରାଣହିତ ବୋଲି କହନ୍ତି।

ଦେଖି ତା ନିଷ୍କାମ ଭକତି
ଆମ୍ଭେ ନ ଛାଡୁ ତାର କତି ।
ଏମନ୍ତ ଭାବେହେ ଗୋବିନ୍ଦ, ଆମ୍ଭେ ଭକତ ଜଡ଼ ବନ୍ଧ।
ଯାହା ବାଞ୍ଛିଲେ ତାହା ପାଇ, ଖୋଜିଲେ ଭକତ ନ ମିଳଇ।
ରକତ ଆମର ପ୍ରାଣହିତ, ତେଣୁ ତା ଭାବରେ ମୋହିତ। (୧୬)

ଉପରୋକ୍ତ ଆଲୋଚନାରୁ ଆମେ ଦେଖିଲେ ଯେ ଭୀମ ଭୋଇଙ୍କ ମହିମା ସାଧନା ପଦ୍ଧତିରେ କର୍ମ, ଜ୍ଞାନ ଓ ଭକ୍ତିମାର୍ଗ ମଧ୍ୟରେ କୌଣସି ପ୍ରଭେଦ ନାହିଁ। ସେ ଭକ୍ତିକୁ ଜ୍ଞାନମିଶ୍ରା ଭକ୍ତି ବୋଲି କହନ୍ତି, ଯାହାକି ଶୁଦ୍ଧ ଭକ୍ତିଠାରୁ ଭିନ୍ନ। ନିମ୍ନୋକ୍ତ ଭଜନରେ ସେ କର୍ମ, ଜ୍ଞାନ ଓ ଭକ୍ତିର ଅପୂର୍ବ ସମନ୍ୱୟ କରିଛନ୍ତି, ଯାହାକି ସାଧକଙ୍କୁ ସଠିକ୍ ପଥ ପ୍ରଦର୍ଶନ କରିଥାଏ।

କଲେ ନିଷ୍କାମ ଚିତ୍ତ ଗମିବ ସେହି ପଥ।
ହେଲେ ଭୃତ୍ୟର ଭୃତ୍ୟ ଲଭିବ ଜ୍ଞାନ ପଥ। (୧୭)

**ପ୍ରାନ୍ତ ଟୀକା :**

୧.ଭଜନମାଳା, ୧୬
୨. ଭଜନମାଳା, ୩୦୨
୩.ଗୀତା, -୩୪
୪.ଭଜନମାଳା
୫.ଭଜନମାଳା
୬.ସ୍ତୁତି ଚିନ୍ତାମଣି, ୧୨୦
୭. ଭଜନମାଳା
୮.ଭଜନମାଳା-୧୮
୯. ଭଜନମାଳା,୧୭୩
୧୦. ଭଜନମାଳା,୩୮
୧୧.ବ୍ରହ୍ମ ନିରୂପଣଗୀତା ,୧୦୫-୧୦୬
୧୨.ଭଜନମାଳା, ୧୨୧
୧୩.ସ୍ତୁତି ଚିନ୍ତାମଣି,୮୨
୧୪.ଭଜନମାଳା,୩୨
୧୫.ତତ୍ରୈବ
୧୬.ଭଜନମାଳା, ୭୩
୧୭.ଭଜନମାଳା, ୭୮

# କବୀର ଓ ଭୀମଭୋଇ : ଏକ ଦାର୍ଶନିକ ଅନୁଶୀଳନ

ଶରତ ଚନ୍ଦ୍ର ପାଣିଗ୍ରାହୀ

କବୀର ଓ ଭୀମଭୋଇଙ୍କ ଦର୍ଶନର ଅନୁଶୀଳନ ଏଥିପାଇଁ ଉଦ୍ୟମ କରାଯାଇଛି ଯେ ଦୁହେଁ ସନ୍ଥ କବି ଥିଲେ। ତାଙ୍କୁ କେବଳ 'କବି' ଆଖ୍ୟା ଦେବା ତାଙ୍କ ପ୍ରତି ଅନ୍ୟାୟ ହେବ। କାରଣ କାବ୍ୟ ଚାତୁରୀ ପ୍ରଦର୍ଶନ କରିବା ପାଇଁ ସେମାନେ କବିତା ବା ଭଜନ ଲେଖିନଥିଲେ। କବୀର ଓ ଭୀମଭୋଇ ଲୌକିକ କବି ନୁହନ୍ତି ଯେଉଁମାନେ ଛନ୍ଦ, ଅଳଙ୍କାର ଆଦି ପ୍ରୟୋଗ କରିଥାନ୍ତି। ଏମାନେ ହେଉଛନ୍ତି ଆଧାତ୍ମିକ କବି। ସେମାନଙ୍କ ରଚନାର ଲକ୍ଷ୍ୟ ଥିଲା ଆଧାତ୍ମିକ ଚିନ୍ତା ଓ ଚେତନାକୁ ସରଳ ଓ ସହଜ ଭାବରେ ଜନସାଧାରଣଙ୍କ ପାଖରେ ପହଞ୍ଚାଇବା। ସେମାନଙ୍କ ସାହିତ୍ୟ ଅନ୍ୟ ଦାର୍ଶନିକଙ୍କ ଭଳି ନିରସ ଓ ଶୁଷ୍କ ନୁହେଁ। ନିଜ ଅଧ୍ୟାତ୍ମ-ଭାବଧାରା ଓ ଅନୁଭୂତିର ଅଭିବ୍ୟକ୍ତି କଲାବେଳେ ସେମାନେ ଏତେ ଦୂର ଭାବବିହ୍ୱଳ ହୋଇପଡ଼ନ୍ତି ଯେ ବିବିଧ ଛନ୍ଦ, ଅଳଙ୍କାର, ଉପମା ସ୍ୱତଃ ତାଙ୍କ ପଦାଙ୍କ ଅନୁସରଣ କରନ୍ତି। ତାଙ୍କ ପ୍ରତିଭା କ୍ରାନ୍ତିକାରୀ ଭାବରେ ଯେଉଁ ଭଳି ଅନସ୍ୱୀକାର୍ଯ୍ୟ, ସାହିତ୍ୟ-ସ୍ରଷ୍ଟା ଭାବରେ ମଧ ତାଙ୍କ ବ୍ୟକ୍ତିତ୍ୱ ସେହିଭଳି ଭାବରେ ଅବିସ୍ମରଣୀୟ। କେବଳ ସାହିତ୍ୟ ପ୍ରେମୀ ନୁହନ୍ତି ସମସ୍ତ ସାଧାରଣ ମଣିଷ ଘରେ ଘରେ ସେହି ଭଜନଗୁଡ଼ିକ ଗାଉଥିଲେ ଯାହାକି ଅତି ସରଳ ତଥାପି ମାର୍ମିକ ଥିଲା ଯାହାକି ସଚ୍ଚିଦାନନ୍ଦଙ୍କ ସ୍ୱରୂପକୁ ଅଭିବ୍ୟକ୍ତ କରୁଥିଲା, ଯଦ୍ୱାରା ସେମାନଙ୍କ କାମନା, ଭାବନା ଓ ବାସନା ତୃପ୍ତିଲାଭ କରୁଥିଲା ଏବଂ ତାଙ୍କ ଚେତନାରେ ତନ୍ମୟଭାବର ପରିପ୍ରକାଶ ଘଟୁଥିଲା। ସମାଜର କୁସଂସ୍କାର, ଜାତି-ପ୍ରଥା, ମୂର୍ତ୍ତିପୂଜା,

ବିରୁଦ୍ଧରେ ସଂଗ୍ରାମ କରି ମାନବ ସମାଜକୁ ଏକ ଆଦର୍ଶ ମାନବ ସମାଜ ଭାବେ ଗଠନ କରିବା ତାଙ୍କ ଉଦ୍ଦେଶ୍ୟ ଥିଲା । ସେମାନେ କୌଣସି ଦାର୍ଶନିକ-ସିଦ୍ଧାନ୍ତ ବାଖ୍ୟା କରିବାପାଇଁ ଚେଷ୍ଟିତ ନ ଥିଲେ । ମାନବ ସମାଜ କୁପଥରେ ଗତି କରି ଦୁଃଖ ପାଇବା ତାଙ୍କ ହୃଦୟକୁ ବ୍ୟଥିତ କରିଥିଲା । ତେଣୁ ତାଙ୍କ ରଚନା ହୃଦୟ ସ୍ପନ୍ଦନର ଏକ ପରିପ୍ରକାଶ ମାତ୍ର । ସେମାନଙ୍କର କ୍ରାନ୍ତିକାରୀ ବ୍ୟକ୍ତିତ୍ୱ ଯେ ପ୍ରକୃତରେ ଦୃଢ଼ ଆସ୍ଥା ଓ ବିଶ୍ୱାସର ପ୍ରତୀକ ତଥା ଯୁଗ ପ୍ରବର୍ତ୍ତକ ଭାବରେ ଗୌରବମଣ୍ଡିତ, ଏଥିରେ ସନ୍ଦେହ ନାହିଁ । ନିଃସ୍ୱାର୍ଥ ଭାବରେ ନିଜ ଅନ୍ତଃପ୍ରେରଣା ଦ୍ୱାରା ପ୍ରଭାବିତ କବୀର ଓ ଭୀମଭୋଇ ଯେଉଁଭଳି ଭାବରେ ଜନ-ଜୀବନର କଲ୍ୟାଣ ନିମନ୍ତେ ନିଜକୁ ଉତ୍ସର୍ଗ କରିଦେଲେ, ଜଣାପଡୁଥିଲା ଯେ ସେମାନେ ଏଥିନିମିତ୍ତ ପରମାତ୍ମାଙ୍କ ଦ୍ୱାରା ପ୍ରେରିତ । ଏହି ସାଧନା ନିମିତ୍ତ ଉଭୟେ ବହୁ ବାଧାବିଘ୍ନର ସମ୍ମୁଖୀନ ହେଲେ ମଧ୍ୟ ନିଜ ଉଦ୍ଦେଶ୍ୟ ସାଧନ ପଥରୁ କେବେହେଁ ବିଚ୍ୟୁତ ହୋଇ ନାହାନ୍ତି । ସ୍ୱଭାବତଃ ସରଳ ଓ ନିରାଡ଼ମ୍ବର ହେଲେ ମଧ୍ୟ ଦୀନ-ହୀନ ମାନବର ଆଧାତ୍ମିକ ପ୍ରଗତି ନିମିତ୍ତ କବୀର ଓ ଭୀମଭୋଇ ଅତ୍ୟନ୍ତ ସ୍ୱାଭିମାନୀ ଓ ସ୍ୱତନ୍ତ୍ରଚେତ୍ତା ବ୍ୟକ୍ତିତ୍ୱ ଥିଲେ । ଉଭୟେ ଉଚ୍ଚକୋଟୀର ସନ୍ଥ, ଗୂଢ଼, ଗମ୍ଭୀର ରହସ୍ୟର ଜ୍ଞାତା ଅନାସକ୍ତ ଯୋଗୀ ଭାବରେ ସେମାନେ ଯେତିକି ଅନନ୍ୟ, ସେଭଳି ତତ୍କାଳୀନ ସମାଜର ଜଣେ ଜଣେ ମହାନ୍ କ୍ରାନ୍ତିକାରୀ ହୋଇ ସମନ୍ୱୟବାଦୀ ସଂସ୍କୃତିର ଉଦ୍‌ଗାତା ତଥା ଜନ-ଜାଗରଣର ଅଗ୍ରଦୂତ ଭାବରେ ଅଦ୍ୱିତୀୟ ବ୍ୟକ୍ତିତ୍ୱର ଅଧିକାରୀ ହେଲେ ।

କବୀର ଓ ଭୀମଭୋଇଙ୍କୁ ମହାନ୍ କ୍ରାନ୍ତିକାରୀ ଭାବରେ ଗଢ଼ି ତୋଳିବାପାଇଁ ତତ୍କାଳୀନ ସାମାଜିକ ପରିସ୍ଥିତି ଉଦ୍‌ବୁଦ୍ଧ କରିଥିଲା । ସେହି ସମୟର ବ୍ରାହ୍ମଣ୍ୟବାଦର ଦୌରାତ୍ମ୍ୟ, ବିଭିନ୍ନ ସାମ୍ପ୍ରଦାୟିକ ମତବାଦ ମଧ୍ୟରେ ବାହ୍ୟାଡ଼ମ୍ବର, ମିଥ୍ୟା, ପ୍ରବଞ୍ଚନା, ଛଳନା ଏତେ ମାତ୍ରାରେ ଭରି ରହିଥିଲା ଯେ ସେଥିରେ ଆଦର୍ଶ ଓ ନୈତିକତାର କୌଣସି ସ୍ଥାନ ନ ଥିଲା । ଫଳରେ ସାଧାରଣ ମଣିଷ ବହୁବିଧ ଧାର୍ମିକ ମିଥ୍ୟାଡ଼ମ୍ବର ଓ ସାମାଜିକ ବ୍ୟଭିଚାରର ଶିକାର ହେଉଥିଲେ । କିନ୍ତୁ ରୂଢ଼ିଗ୍ରସ୍ତ ମନୁଷ୍ୟ ନିଜର ଅଜ୍ଞତା ଯୋଗୁଁ ସେଥିପ୍ରତି କୌଣସି ପ୍ରତିକ୍ରିୟା ପ୍ରକାଶ ନ କରି ନିର୍ଯ୍ୟାତନାକୁ ସ୍ୱୀକାର କରିଚାଲିଥିଲେ । ବ୍ରାହ୍ମଣମାନେ ସଂସ୍କୃତ ଭାଷାରେ ଧର୍ମର ସାରତତ୍ତ୍ୱ ବୁଝାଉଥିଲେ ଯାହାକି ସାଧାରଣ ମଣିଷର ବୋଧଗମ୍ୟ ହେଉନଥିଲା । ଧର୍ମର ପ୍ରକୃତ ସ୍ୱରୂପ ଓ

ଆଧ୍ୟାତ୍ମିକ ସାଧନାର ପଥ ପ୍ରଦର୍ଶନ ନିମିତ୍ତ କବୀର ଓ ଭୀମଭୋଇ ଲୌକିକ ଭାଷାର ପ୍ରୟୋଗ କରିଥିଲେ ଯାହାକି ସମସ୍ତେ ଅତି ସରଳ ଓ ସହଜ ଭାବରେ ବୁଝିପାରୁଥିଲେ। ଏହାକୁ ସ୍ପଷ୍ଟ କରିବାକୁ ଯାଇ କବୀର କହନ୍ତି ଯେ ସଂସ୍କୃତ ଭାଷା କୂପଜଳ ଭଳି କିନ୍ତୁ ଲୌକିକ ଭାଷା ଏକ ପ୍ରବାହିତ ଜଳ ସଦୃଶ ଯେଉଁଥିରେ ସ୍ନାନ କଲେ ଶରୀର ଶୁଦ୍ଧ ଓ ମନ ଶାନ୍ତ ହୋଇଯାଏ।

"ସଂସ୍କୃତ କୂପ ଜଳ କବୀରା
ଭାଷା ବହତି ନୀର,
ଜବ ଚାହୁଁ ତବ ହିଁ ଡୁବଇ
ଶାନ୍ତ ହୋଗା ଶରୀର।

ସେ ସମୟର ଅନିତ୍ୟତା, ଅସତ୍ୟ ଓ ଅତ୍ୟାଚାର ଓ ସାମାଜିକ ଜୀବନର କଳୁଷିତ ହେବା ଦେଖି ସେମାନେ ନିଜ କଟୁ ମନ୍ତବ୍ୟ ଦ୍ୱାରା ଏହାର ବିରୋଧ କରୁଥିଲେ। ସେମାନଙ୍କର ଏ ଭଳି ବ୍ୟକ୍ତିତ୍ୱ ଫଳରେ ଧର୍ମ, ସମାଜ, ସାଧନା, ଦର୍ଶନ ପ୍ରଭୃତି କ୍ଷେତ୍ରରେ ଏକ ପରିବର୍ତ୍ତନ ସଂଘଟିତ ହେଲା, ଏଥିରେ ସନ୍ଦେହ ନାହିଁ। ସମ୍ଭବତଃ ଏଥିଯୋଗୁଁ ସେମାନଙ୍କୁ ସମାଜ-ସୁଧାରକ ବୋଲି ବର୍ଣ୍ଣନା କଲେ କିନ୍ତୁ ସେମାନେ ସୁଧାରକ ନୁହନ୍ତି। ବିପ୍ଳବୀ ଭାବରେ ସେମାନେ ଦୁରାଚାରୀମାନଙ୍କୁ ତୀବ୍ର ବିରୋଧ କରୁଥିଲେ। ସେମାନଙ୍କର କୌଣସି ବ୍ୟକ୍ତିଗତ ସ୍ୱାର୍ଥ ନ ଥିଲା, ଜନ-କଲ୍ୟାଣ ହିଁ ତାଙ୍କ ଉଦ୍ଦେଶ୍ୟ ଥିଲା।

କବୀର ଓ ଭୀମଭୋଇଙ୍କ ଜୀବନ-ଚର୍ଯ୍ୟା ସମ୍ବନ୍ଧରେ ବିଭିନ୍ନ ଆଲୋଚକ ଭିନ୍ନ ଭିନ୍ନ ମତ ଦେଇଥାନ୍ତି। ମହାପୁରୁଷମାନେ ନିଜ ଜୀବନଚର୍ଯ୍ୟା ସମ୍ପର୍କରେ ଉଦାସୀନ ମନୋଭାବ ପୋଷଣ କରିଥାନ୍ତି। ନିଜକୁ ପରମେଶ୍ୱରଙ୍କ ଏକ ଅକିଞ୍ଚନ ସେବକ ଭାବରେ ମାନବ-ସେବା କରିବାରେ ହିଁ ନିଜ ଜୀବନକୁ ସାର୍ଥକ ମଣିଛନ୍ତି। ଏଣୁ ପ୍ରସଙ୍ଗ କ୍ରମେ କାଁ-ଭାଁ କେତେବେଳେ କେମିତି ପଦେ ଅଧେ ସଙ୍କେତ ମିଳୁଥିଲେ ହେଁ ସେଥିରୁ ଉକ୍ତ ମହାପୁରୁଷଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ସଂଗ୍ରହ କରିବା ସମ୍ଭବପର ହୁଏ ନାହିଁ। କବୀରଙ୍କ ଜନ୍ମ ସମ୍ପର୍କରେ ପ୍ରଚଳିତ ସମସ୍ତ କିମ୍ବଦନ୍ତୀ ଓ ଜନଶ୍ରୁତିରୁ ଗୋଟିଏ କଥା ସ୍ପଷ୍ଟ ଯେ ହିନ୍ଦୁ ଘରେ ଜନ୍ମ ଲାଭକରି ସେ ମୁସଲମାନ ପରିବାରରେ ପ୍ରତିପାଳିତ ହୋଇଥିଲେ। ଭୀମଭୋଇ ପଶ୍ଚିମ ଓଡ଼ିଶାର ରେଢ଼ାଖାଲ ନିକଟସ୍ଥ ମଧୁପୁର ଗ୍ରାମରେ ଏକ କନ୍ଧ ପରିବାରରେ ଜନ୍ମଗ୍ରହଣ କରିଥିଲେ।

## ତତ୍ତ୍ୱ-ମୀମାଂସା

ମହିମା ଧର୍ମରେ ତତ୍ତ୍ୱକୁ ଶୂନ୍ୟ, ମହିମା, ଅଲେଖ କୁହାଯାଇଛି । ଭୀମଭୋଇଙ୍କ ଅନୁସାରେ ଅଲେଖ ହେଉଛନ୍ତି ଅନନ୍ତ, ସର୍ବବ୍ୟାପୀ, ଅସୀମ, ଅବ୍ୟକ୍ତ ଓ ଅବର୍ଣ୍ଣନୀୟ । ତେଣୁ ଭାଷାରେ ତାଙ୍କୁ ବର୍ଣ୍ଣନା କରାଯାଇ ପାରିବ ନାହିଁ । ତେଣୁ ସେ କହନ୍ତି–

ସେ ରୂପକୁ ବର୍ଣ୍ଣିବାକୁ ବହୁତ କଠିନ,
ଅକ୍ଷର ନ ବସେ ଯେହ୍ନୁ ନ ବସେ ବଚନ ।[୧]

ବିଭିନ୍ନ କବି ଓ ଦାର୍ଶନିକ ତାଙ୍କୁ ବର୍ଣ୍ଣନା କରିବାକୁ ଯାଇ ବିଫଳ ହେଲେ, ତେଣୁ ସେମାନେ ଅନ୍ୟୋନ୍ୟପାୟ ହୋଇ ତାଙ୍କୁ ଅଲେଖ ନାମ ଦେଲେ ।

ଚାରିଯୁଗେ କବି ଲେଖି ନ ପାରିଲେ,
ଅଲେଖ ବୋଲିଣ ତେଣୁ ତାଙ୍କ ନାମ ଦେଲେ ।[୨]

ଯେହେତୁ ତାଙ୍କର କୌଣସି ଲୌକିକ ଶରୀର ନାହିଁ, ଭାଷାରେ ତାଙ୍କୁ ବର୍ଣ୍ଣନା କରିବା ଅସମ୍ଭବ । ତାଙ୍କ କୃପା ଦ୍ୱାରା ହିଁ ତାଙ୍କୁ ଦର୍ଶନ କରାଯାଇପାରିବ ତାଙ୍କ ସ୍ୱରୂପକୁ । ଏହାକୁ ସ୍ପଷ୍ଟ କରିବାକୁ ଯାଇ ଭୀମଭୋଇ କହନ୍ତି–

"ଅରୂପ ଶରୀର ରୂପ ନାହିଁ ଯାର କେମନ୍ତେ ଚିହ୍ନିବି ମୁହିଁ,
ଦୟାକରି ମତେ ଦରଶନ ଦିଅ ଅର୍ନ୍ତଯ୍ୟାମୀ ଶୂନ୍ୟ ଦେହୀ ।"[୩]

ଭୀମଭୋଇ ନିର୍ଗୁଣ ବ୍ରହ୍ମକୁ 'ଅଲେଖ' କହିଲା ବେଳେ ସେହି ମର୍ମରେ କବୀର ତାହାଙ୍କୁ ଅନିର୍ବଚନୀୟ ବୋଲି କହିଛନ୍ତି । ଏହାର ସ୍ୱରୂପ ବର୍ଣ୍ଣନା କରିବାକୁ ଯାଇ ସେ କହନ୍ତି– ବ୍ରହ୍ମ ଏପରି ଏକ ଅନୁପମ ତତ୍ତ୍ୱ ଯାହାର କୌଣସି ଆକାର ନାହିଁ ଏବଂ ଯେ ପୁଷ୍ପର ସୁଗନ୍ଧିଠାରୁ ମଧ୍ୟ ସୂକ୍ଷ୍ମତର, ତେଣୁ ଅବର୍ଣ୍ଣନୀୟ ।

ବୋଲନାଂ କା କହିୟେରେ ଭାଇ
ବୋଲତ ବୋଲତ ତତ୍ତ ନ ପାଇ ।

ଅର୍ଥାତ୍ ବାଣୀ ଦ୍ୱାରା ତାହାର ବର୍ଣ୍ଣନା କରାଯାଇପାରିବ ନାହିଁ, ଶବ୍ଦ ଦ୍ୱାରା ତାହାର ବର୍ଣ୍ଣନା ସେହି ତତ୍ତ୍ୱର ଅନଭିଜ୍ଞତାକୁ ହିଁ ସୂଚିତ କରିବ । ମୂକ ଯେପରି ସ୍ୱାଦିଷ୍ଟ ବସ୍ତୁର ରସାସ୍ୱାଦନ କରିପାରେ, ଅଥଚ ତାହାକୁ ଭାଷାରେ ବ୍ୟକ୍ତ କରିପାରେ

ନାହିଁ, ସେହିପରି କବୀରଙ୍କ ବ୍ରହ୍ମ ହେଉଛନ୍ତି ମୂକ ବ୍ୟକ୍ତିର ଗୁଡ଼ ସଦୃଶ । କବୀରଙ୍କ ଭାଷାରେ–

କହେ କବୀର ଘରହୀ ମନ ମାନା,
ଗୂଙ୍ଗେ କା ଗୁଡ଼ ଗୂଙ୍ଗେ ଜାନା ।

ବ୍ରହ୍ମାନୁଭୂତି ଆନନ୍ଦ ଏପରି ଏକ ବିଲକ୍ଷଣ ତତ୍ତ୍ୱ ତଥା ଅଦ୍ଭୁତ ଯେ ତାକୁ ବ୍ୟକ୍ତ କରି ହେବ ନାହିଁ, କେବଳ ଅନୁଭବ କରିହେବ । ଏହି ଅନୁଭୂତି ଦ୍ୱାରା ଚଞ୍ଚଳ ମନ ନିଶ୍ଚଳ ହୁଏ, ଅଶାନ୍ତ ମନରେ ଅପୂର୍ବ ଶାନ୍ତି ଏବଂ ପ୍ରଫୁଲ୍ଲତାର ସଞ୍ଚାର ହୁଏ ତଥା ପରମାନନ୍ଦଙ୍କର ଅପୂର୍ବ ସ୍ଥିତି ସମ୍ବନ୍ଧରେ ସାଧକ ଅବହିତ ହୁଏ ।

ପରମତତ୍ତ୍ୱ ଯେ ଅଲେଖ ତାକୁ ବର୍ଣ୍ଣନା କରିବାକୁ ଯାଇ କବୀର କହନ୍ତି ଯେ ଯଦି ସମସ୍ତ ଧରିତ୍ରୀ କାଗଜ ହୁଏ, ସମୁଦ୍ରର ପାଣି କାଳି ହୁଏ ଏବଂ ଜଙ୍ଗଲର ଗଛଗୁଡ଼ିକ କଲମ ହୁଅନ୍ତି, ତଥାପି ତାଙ୍କୁ ବର୍ଣ୍ଣନା କରିହେବ ନାହିଁ ।

ସାତ ସମଂଦ ମସୀ କରୌଂ, ଲେଖନୀ ସବ ବନରାଇ ।
ଧରତୀ ସବ କାଗଜ କରୌଂ, ତହୁଁ ହରିଗୁନ ଲିଖନ ନ ଜାଇ ॥

ମହିମା ତତ୍ତ୍ୱ ମୀମାଂସାର ମୂଳ ତତ୍ତ୍ୱ ହେଉଛି 'ଶୂନ୍ୟ' ଯାହାକି ସମସ୍ତଙ୍କଠାରୁ ଊର୍ଦ୍ଧ୍ୱରେ । ବୌଦ୍ଧ ଦର୍ଶନର 'ଶୂନ୍ୟ'ଠାରୁ ମହିମା ଦର୍ଶନରେ ଏକ ଅନ୍ୟ ସ୍ୱରୂପ ଦିଆଯାଇଛି । ସଂସାରରେ ଏପରି କୌଣସି ତତ୍ତ୍ୱ ବା ବସ୍ତୁ ନହିଁ ଯାହାକି ଶୂନ୍ୟଠାରୁ ଭିନ୍ନ । ତେଣୁ ଭୀମଭୋଇ କହନ୍ତି–

ଶୂନ୍ୟ ମହାଶୂନ୍ୟ ବୋଲି ତାହାକୁଟି କହି,
ତାଙ୍କ ଉପରକୁ ଆଉ ବଡ଼ ନାହିଁ କେହି ।[୪]

'ଶୂନ୍ୟ'କୁ ପ୍ରତ୍ୟୟ ବୋଲି ଭାବିବା ଭ୍ରମାତ୍ମକ । ସେ ଏକ ସଜୀବ ତତ୍ତ୍ୱ । ପରମତତ୍ତ୍ୱର ବିଭିନ୍ନ ସ୍ୱରୂପକୁ ବୁଝାଇବାକୁ ଯାଇ ଭୀମଭୋଇ କହନ୍ତି ଯେ ସେ ସଜୀବ ହୋଇଥିବାରୁ ତାଙ୍କୁ ଶୂନ୍ୟଦେହୀ କୁହାଯାଏ । ସେ ଶୂନ୍ୟବାସୀ କାରଣ ସେ ଶୂନ୍ୟରେ ବାସ କରନ୍ତି । ତାଙ୍କ ନିବାସସ୍ଥଳ ହେଉଛି ଶୂନ୍ୟମନ୍ଦିର । ସେ ଶୂନ୍ୟରେ

ଆତଯାତ କରନ୍ତି । ତେଣୁ ତାଙ୍କୁ ଶୂନ୍ୟବିହାର ମଧ୍ୟ କୁହାଯାଏ । ଭୀମଭୋଇଙ୍କ ଶୂନ୍ୟ ହେଉଛି ଉପନିଷଦ୍‌ର ନିର୍ଗୁଣ ବ୍ରହ୍ମଠାରୁ ଅଭିନ୍ନ ।

ମହାଶୂନ୍ୟ ସେ ଶୂନ୍ୟ ଯେ ନିର୍ଗୁଣ ଶରୀର,
ଏକାକ୍ଷର ନ ହୋଇ ବସେ ଅଣକ୍ଷର ।[୫]

ସେ ଅନନ୍ତ, ଅସୀମ ହେଲେ ମଧ୍ୟ ଅସଂଖ୍ୟ ରୂପରେ ପ୍ରକାଶିତ ହୁଅନ୍ତି, ତେଣୁ ସେ ହେଉଛନ୍ତି ପୂର୍ଣ୍ଣ ପୁରୁଷ । ଭୀମଭୋଇ ତାଙ୍କୁ ପୂର୍ଣ୍ଣାନନ୍ଦ ବୋଲି କହନ୍ତି,

'ପୂର୍ଣ୍ଣାନନ୍ଦ ପୂର୍ଣ୍ଣ ବ୍ରହ୍ମ ଅଟନ୍ତି ସେହି' ।[୬]

ଅଲେଖ, ଅନାମର ଶକ୍ତିରୁ ଶୂନ୍ୟର ସୃଷ୍ଟି,

'ନିଶବଦ ଘରୁ ଅନାମ ଶକ୍ତିରୁ ଜନମ ହୋଇଲା ଶୂନ୍ୟ,
ଶୂନ୍ୟ ସଂସାରରୁ ଆକାର ଧଇଲା ବାହାର ହୋଇଲା ବର୍ଣ୍ଣ ।[୭]

ବ୍ରହ୍ମକୁ ଶୂନ୍ୟରୂପ ଭାବରେ ବର୍ଣ୍ଣନା କରିବାକୁ ଯାଇ କବୀର କହନ୍ତି; ଏହା ପ୍ରକାଶ ନୁହେଁ କିମ୍ୱା ଛାୟା ମଧ୍ୟ ନୁହେଁ । ଏହା ଅଜର ଏବଂ ଅମର । ଯେଉଁ ସାଧକ ଏହି ଶୂନ୍ୟରୂପକୁ ଜାଣିପାରେ, ସେ ଏଥିରେ ଲୀନ ହୋଇ ସ୍ୱୟଂ ବ୍ରହ୍ମ ହୋଇଯାଏ । ଏହି ଭାବକୁ ବ୍ୟକ୍ତ କରିବାକୁ ଯାଇ କବୀର କହିଛନ୍ତି :

ଐସେ ହମ ଲୋକ ବେଦକୋ ବିଛୁରେ,
ସୁନ୍ନିହିଂ ମାଂହି ସମାବହିଁରେ ।

ଅର୍ଥାତ୍ ନାମରୂପାତ୍ମକ ସଂସାରକୁ ପରିତ୍ୟାଗ କରି ଆମେ ସେହି ଶୂନ୍ୟବ୍ରହ୍ମରେ ଲୀନ ହୋଇଯିବା । ପୁଣି ସେ କହନ୍ତି,

'ସୁନ୍ନ ହି ସୁନ୍ନ ମିଲା ସମଦରସୀ ପବନରୂପୀ ହୋଇ ଜାବେହୀ ରେ ।'

କବୀରଙ୍କ ମତରେ ଯେ ଶୂନ୍ୟକୁ ବୁଝନ୍ତି, ସେ ସବୁ କିଛି ବୁଝିପାରନ୍ତି । ଯେଉଁମାନଙ୍କର ଶୂନ୍ୟ ବିଷୟରେ ଜ୍ଞାନ ନ ଥାଏ, ସେମାନଙ୍କର କୌଣସି ବିଷୟରେ ଜ୍ଞାନ ରହେ ନାହିଁ । ଯେଉଁ ସାଧକ ଶୂନ୍ୟରୂପକୁ ଅନୁଭବ କରିପାରେ ସେ ସଂସାରରେ ବିଭିନ୍ନତାରୁ ମୁକ୍ତ ହୋଇ ବ୍ରହ୍ମରେ ଲୀନ ହୋଇଯାଏ ।

## ମହିମା

ଅଲେଖ ଓ ଶୂନ୍ୟର ସ୍ୱରୂପ ବୁଝିବା ପାଇଁ ଭୀମଭୋଇ 'ମହିମା' ପ୍ରତ୍ୟୟର ପ୍ରୟୋଗ କରିଛନ୍ତି । ଏହି ସଂସାରରେ ଭୂତ, ବର୍ତ୍ତମାନ ଓ ଭବିଷ୍ୟତରେ ସମ୍ପର୍କ ହେଉଛି ମହିମା ଯାହାକି ଏହି ତିନି ଜଗତରେ ଆତଯାତ ହେଉଥାଏ ଏବଂ ସବୁଠାରୁ ଊର୍ଦ୍ଧ୍ୱରେ ।

ମହିମାଙ୍କଠାରୁ ବଡ଼ ନାହିଁ ନା ସଂସାରେ,
ମହିମାହିଁ ଆତଯାତ ତିନି ଜଗତରେ ।[୮]

ମହିମା ନାମଟି ଯେହୁ ସାକ୍ଷାତେ ସେ ଧର୍ମ,
ଅଗାଧ ଗଭୀର ସେ ଅଟଇ ପୂର୍ଣ୍ଣବ୍ରହ୍ମ ।[୯]

ମହିମା ସ୍ୱୟଂସମ୍ପୂର୍ଣ୍ଣ ହୋଇଥିବାରୁ ତା'ର କ୍ଷୟ ବା ବୃଦ୍ଧି ନାହିଁ । ସେ ହେଉଛି ଅକ୍ଷୟ ଏବଂ ଅନାଦି ।

ଅକ୍ଷୟ ମହିମା ସେ ନାହିଁ କ୍ଷୟ ବୃଦ୍ଧି,
ଅନାଦିଠାରୁ ମହିମା ଅଟନ୍ତି ସେ ଆଦି ।[୧୦]

ମହିମା ଏତେ ମାତ୍ରାରେ କୃପାଳୁ ଯେ ତାଙ୍କ ପ୍ରତି ଯାହାର ଅଗାଧ ଭକ୍ତି ଥାଏ ସେ ସମସ୍ତ ଶୋକ ଦୁଃଖରୁ ମୁକ୍ତି ପାଏ ।

ମହିମା ପ୍ରସନ୍ନ ହେଲେ କି କରିବ ରୋଗ,
ଏ ତିନି ବ୍ରହ୍ମାଣ୍ଡରେ ନିଶ୍ଚେ କରିବ ସେ ଭୋଗ ।[୧୧]

ପରମସତ୍ତାର ବ୍ୟକ୍ତ ଓ ଅବ୍ୟକ୍ତ ସ୍ୱରୂପର ଆବଶ୍ୟକତା ରହିଛି । ଏଥିରେ କୌଣସି ବିରୋଧାଭାସ ନାହିଁ । କାରଣ ଉଭୟେ ପରମସତ୍ତାର ଦୁଇଟି ପାର୍ଶ୍ୱ । ତେଣୁ ମହିମାଙ୍କୁ ସଗୁଣ ଓ ନିର୍ଗୁଣ କହିବାରେ କୌଣସି ଅଯୌକ୍ତିକତା ନାହିଁ । ତେଣୁ ଭୀମଭୋଇ କହିଛନ୍ତି –

"ନିର୍ଗୁଣ ବ୍ରହ୍ମଟି ଗୁଣ ଭିତରେ ଥାଇ" ।[୧୨]

କବୀର ମଧ୍ୟ ବ୍ରହ୍ମକୁ ଉଭୟ ସଗୁଣ ଓ ନିର୍ଗୁଣ ବୋଲି କହନ୍ତି । ଅରୂପରୁ ରୂପର ଅଭିବ୍ୟକ୍ତି ହୋଇଥାଏ ଯାହାର ଊର୍ଦ୍ଧ୍ୱରେ ପରମସତ୍ତା ବିଦ୍ୟମାନ । ସଗୁଣ ଓ ନିର୍ଗୁଣ ମଧ୍ୟରେ ଯେଉଁ ତତ୍ତ୍ୱର କଳ୍ପନା ତାହା ପରାତ୍ପର ଯାହାକୁ କବୀର 'ତହୁଁ ଲୋକ ବିବର୍ଜିତ' ବୋଲି କହନ୍ତି । ତେଣୁ ସେ କହନ୍ତି ଯେ ସନ୍ଥମାନେ ଏହାଦ୍ୱାରା ଭ୍ରମିତ ହେବା ଅନୁଚିତ ।

ସନ୍ତୋ ଧୋଖା କୋସୋ କହିୟେ,
ଗୁଣମେଁ ନିର୍ଗୁଣ ନିର୍ଗୁଣମେଁ ଗୁଣ ହୈ
ବାତ୍ ଛାଡ଼ି କ୍ୟା କହିୟେ।

କବୀର ସ୍ପଷ୍ଟ ଭାବରେ ଉଲ୍ଲେଖ କରିଛନ୍ତି 'ସଗୁଣ' ଓ 'ନିର୍ଗୁଣ' ଏକ ଶବ୍ଦ-ପସାରା ବା ଶବ୍ଦର ଖେଳ। ଯଦି ସଗୁଣ ପୁଷ୍ପ ଏବଂ ଫଳ ହୁଏ, ନିର୍ଗୁଣ ହେଉଛି ପରମସତ୍ତା ବା 'ନାମ'।

ସତ୍ତା ନାମ ହୈ ସବ ତେଇଁ ନ୍ୟାରା,
ନିର୍ଗୁଣ ସଗୁଣ ଶବ୍ଦ ପସାରା।
ନିର୍ଗୁଣ ବୀଜ ସଗୁଣ ଫଳ-ଫୁଲ,
ସଖା ଜ୍ଞାନ ନାମ ସବକା ମୂଳ।

ପରମ ତତ୍ତ୍ୱର ବ୍ୟାଖ୍ୟା କରିବାକୁ ଯାଇ କବୀର ଓ ଭୀମଭୋଇ ଉପନିଷଦ୍‌ର 'ନେତି ନେତି' ନକରାତ୍ମକ ଶୈଳୀ ଉପସ୍ଥାପନ କରିଛନ୍ତି। ତେଣୁ କବୀର ବ୍ରହ୍ମଙ୍କୁ, ଦୂରସ୍ଥ ନୁହେଁ, ନିକଟସ୍ଥ ନୁହେଁ, ଶୀତ ନୁହେଁ ବା ଉଷ୍ଣ ନୁହେଁ, ଶବ୍ଦ ନୁହେଁ ବା ସ୍ୱାଦ ନୁହେଁ ଭାବର ବର୍ଣ୍ଣନା କରିଛନ୍ତି –

ନହିଁ ସୋ ଦୂର ନହିଁ ସେ ନିୟାରା,
ନହିଁ ସୋ ତାତ ନହିଁ ସେ ସିୟାରା।
× × ×
ନଦୀ ନା ନାବ ଧରନି ନହିଁ କ୍ଷୀରା,
ନହିଁ ସୋ କାଞ୍ଚ ନହିଁ ସୋ ହୀରା।

ଭୀମଭୋଇ ମଧ୍ୟ ଏହି ଶୈଳୀ ପ୍ରୟୋଗ କରି ବ୍ରହ୍ମଙ୍କର ବ୍ୟାଖ୍ୟା କରିଛନ୍ତି–

ନୁହନ୍ତି ସେ ଗୁରୁ ନୁହନ୍ତି ସେ ଶିଷ୍ୟ, ନାହିଁ ସାଆନ୍ତ ସେବକ।
ନୁହନ୍ତି ବ୍ରାହ୍ମଣ ନୁହନ୍ତି ଚାଣ୍ଡାଳ, ନୁହନ୍ତି ସେ ବଡ଼ଲୋକ।
× × ×
ନାହିଁ ତାଙ୍କ ଜାତି ନାହିଁ ତାଙ୍କ ଗୋତ୍ର, ନ ଥାଇ ବାଛ ବିଚାର।
ବେନି ଜନ ଏକ ଆତ୍ମା ମନ ହୋଇ, କରୁଅଛନ୍ତି ସଂସାର।[୧୩]

ବର୍ତ୍ତମାନ ପ୍ରଶ୍ନଉଠେ, ଯଦି ତାଙ୍କୁ 'ନେତି ନେତି' ପଦ୍ଧତି ଦ୍ୱାରା ବ୍ୟାଖ୍ୟା କରାଯାଇଛି, ତାହାହେଲେ ତାଙ୍କ ପ୍ରକୃତ ସ୍ୱରୂପ କ'ଣ ? ଭୀମଭୋଇ ବ୍ରହ୍ମନିରୂପଣ ଗୀତାରେ ବିସ୍ତୃତ ଭାବରେ ତାଙ୍କ ସ୍ୱରୂପକୁ ବର୍ଣ୍ଣନା କରି କହିଛନ୍ତି ଯେ ଶୂନ୍ୟପୁରୁଷ ହେଉଛନ୍ତି, ନିର୍ଗୁଣ, ନିର୍ମାୟା, ଅନାମ, ଅରୂପ, ନିଷ୍କାମ ଏବଂ ଅକ୍ଷୟ ।

ନିର୍ଗୁଣ ବୋଲନ୍ତେ ତାଙ୍କୁ ଗୁଣ ନ ଲାଗଇ,
ଅରୂପ ବୋଲେନ୍ତେ ରୂପରେଖ ନ ଦିଶଇ
ଅକ୍ଷୟ ବୋଲନ୍ତେ ତାର କ୍ଷୟବୃଦ୍ଧି ନାଇଁ,
ନିଷ୍କାମ ବୋଲନ୍ତେ ତାଙ୍କୁ ନିର୍ମଳ ହୋଇଲା ।[୧୪]

**ସୃଷ୍ଟିତତ୍ତ୍ୱ**

ଜଗତର ଉତ୍ପତ୍ତି, ସ୍ଥିତି ତଥା ବିକାଶ ଆଦି ସମ୍ବନ୍ଧୀୟ ଆଲୋଚନାକୁ ସୃଷ୍ଟିତତ୍ତ୍ୱ କୁହାଯାଏ । ବୈଦିକ ଯୁଗରୁ ମନୁଷ୍ୟ ପ୍ରାକୃତିକ ସୌନ୍ଦର୍ଯ୍ୟରାଶି ଦେଖି ଆଶ୍ଚର୍ଯ୍ୟଚକିତ ହୋଇଛି ଏବଂ ଯୋଜନବ୍ୟାପୀ ନୀଳାକାଶ, ଦୀପ୍ତିମନ୍ତ ସୂର୍ଯ୍ୟ, ସ୍ନିଗ୍ଧ ଚନ୍ଦ୍ରମା, ଅଗଣିତ ଜ୍ୟୋତିସ୍ମାନ ତାରକା, ପ୍ରାଣପଦ ବାୟୁ ଏବଂ ଅତଳ ସମୁଦ୍ର ଆଦି ବିଭିନ୍ନ କୌତୁହଳପୂର୍ଣ୍ଣ ବସ୍ତୁସମୂହର ଉତ୍ପତ୍ତି ଏବଂ ସ୍ଥିତି ସମ୍ବନ୍ଧରେ ଜାଣିବା ପାଇଁ ଉତ୍ସୁକ ହୋଇଉଠିଛି ।

ସେହିଭଳି ସତ୍ୟାନ୍ୱେଷୀ କବୀରଙ୍କ ମନରେ ଏହି ତତ୍ତ୍ୱର ଜିଜ୍ଞାସା ଉଦ୍ରେକ ହେବା ସ୍ୱାଭାବିକ । ପ୍ରକୃତିରେ ସଂଯୋଜିତ ବିଭିନ୍ନ ଦୃଶ୍ୟରାଜିକୁ ଦେଖି ନିଜ ନିଜକୁ ସେ ପ୍ରଶ୍ନ କରିଛନ୍ତି –

କହୌ ହଇୟା ଅମ୍ବର କୈସେ ଲଗା,
କୋଈ ଜାନେଗା ଜାନନ ହାରା ସଭାଗା ।
ଅମ୍ବର ଦୀସୈ କତୋ ତାରା,
କୈନ ଚତୁର ଐସା ଚିତରନ ହାରା ।।

କବୀରଙ୍କ ରଚନାରେ ସୃଷ୍ଟିର ଉତ୍ପତ୍ତି, ସ୍ଥିତି ଏବଂ ବିକାଶ କ୍ରମର ବିବରଣୀ ବିସ୍ତୃତ ରୂପରେ ଉପସ୍ଥାପିତ କରାଯାଇଛି । ସୃଷ୍ଟି ଉତ୍ପତ୍ତିର ପୂର୍ବାବସ୍ଥାକୁ ବର୍ଣ୍ଣନା କରିବାକୁ ଯାଇ କବୀର କହନ୍ତି –

ଜବ ନହୀଁ ହୋତେ ପବନ ନହୀଁ ପାନୀ,
ତବ ନହୀଁ ହୋତେ ସୃଷ୍ଟି ଉପାନୀ ।

× × ×

ଜବ ନହୀଁ ହୋତେ ଗୁରୁ ନ ଚେଲା,
ରାମ ଅଗମେଁ ପନ୍ଥ ଅକେଲା ।

ଅର୍ଥାତ୍ ସୃଷ୍ଟି ପୂର୍ବରୁ ବାୟୁ, ପ୍ରାଣ, ଶରୀର, ଗୁରୁ-ଶିଷ୍ୟ କେହି ନ ଥିଲେ । ସେହି ସମୟରେ ଇନ୍ଦ୍ରିୟାତୀତ ବ୍ରହ୍ମ ସ୍ୱସ୍ୱରୂପରେ ସ୍ଥିତ ଥିଲେ ।

କବୀରଙ୍କ ଅନୁଯାୟୀ ମାୟାଶକ୍ତି ଦ୍ୱାରା ବ୍ରହ୍ମଠାରୁ ଜଗତର କ୍ରମିକ ବିକାଶ ହୋଇଥାଏ ଅର୍ଥାତ୍ ସୂକ୍ଷ୍ମାବସ୍ଥାରୁ ସ୍ଥୂଳାବସ୍ଥାର ସୃଷ୍ଟି ହୋଇଥାଏ । ବିକାଶକ୍ରମର ପ୍ରଥମାବସ୍ଥା ହେଉଛି ବୀଜାବସ୍ଥା ବା ଅବ୍ୟକ୍ତ କାରାଣାବସ୍ଥା । ଏହି ଅବ୍ୟକ୍ତ ସ୍ଥିତିରୁ ଅଙ୍କୁରାବସ୍ଥାର ସୃଷ୍ଟି ହୋଇଥାଏ । ତତ୍ପରେ ବୃକ୍ଷାବସ୍ଥା ବା ସ୍ଥୂଳାବସ୍ଥାର ସୃଷ୍ଟି ହୁଏ । ଏହି ବିକାଶକ୍ରମ ବା ସୃଷ୍ଟିଚକ୍ରଜନିତ ବିକାର ନିର୍ଗୁଣ ବ୍ରହ୍ମ ମଧ୍ୟରେ ପରିଦୃଷ୍ଟ ହୁଏ ନାହିଁ । ଏ ସମସ୍ତ ମାୟା – ତଥା ଭ୍ରମର ଖେଳ ସଦୃଶ । ତେଣୁ ଏ ମାୟାବନ୍ଧନଜନିତ ଭ୍ରମକୁ ଅର୍ନ୍ତଦୃଷ୍ଟି ଦ୍ୱାରା ନିରାକରଣ କରିବା ପରମାବଶ୍ୟକ ।

ଭୀମଭୋଇ ସୃଷ୍ଟିତତ୍ତ୍ୱ ସମ୍ବନ୍ଧରେ ମଧ୍ୟ ଆଲୋଚନା କରିଛନ୍ତି । ଭୀମଭୋଇଙ୍କ ମତରେ ସୃଷ୍ଟିର ବିଭିନ୍ନ ରୂପ ମହିମାଠାରୁ ଜାତ । ତେଣୁ ସେ କହନ୍ତି–

ମହିମାଠାରୁ ହୋଇଛି ଅଲେଖ ବ୍ରହ୍ମାଣ୍ଡ,
ଅଲେଖ ପୁରୁଷ ସେହୁ ପୁରୁଷ ଅଖଣ୍ଡ ।[୧୫]

ମହିମା ଗର୍ଭରୁ ସୃଷ୍ଟିର ସର୍ଜନା ହୋଇଛି । ଜଗତର ପ୍ରତ୍ୟେକ ବସ୍ତୁ ଦିବା ଓ ରାତ୍ରି, ସୂର୍ଯ୍ୟ ଓ ଚନ୍ଦ୍ର, ଜନ୍ମ ଓ ମରଣ ଏବଂ ସମସ୍ତ ଜୀବଜନ୍ତୁଙ୍କୁ ସେ ନିରନ୍ତର ଭାବରେ ସୃଷ୍ଟି କରି ଜଗତର ସ୍ଥିତିକୁ ସମ୍ଭାଳି ରଖିଛନ୍ତି ଯାହାକି କେବେ ନଷ୍ଟ ହୁଏନାହିଁ ଏବଂ ଜଗତ କେବେହେଲେ ଅପୂର୍ଣ୍ଣ ବା ଶୂନ୍ୟ ହୋଇ ରହେ ନାହିଁ ।

ମହିମାଙ୍କ ଶକ୍ତିରୁ ସମସ୍ତ ଜୀବ ଓ ବସ୍ତୁ ସୃଷ୍ଟି ହୋଇଛନ୍ତି ।

ଅଶେଷ ବ୍ରହ୍ମାଣ୍ଡେ ଯେତେ ଦେହ ଧରିଛନ୍ତି
ମହିମା ଶକ୍ତିଠାରୁ ସର୍ବେ ଉତପତ୍ତି ।[୧୬]

ଭୀମଭୋଇଙ୍କ ଅନୁସାରେ ଅଲେଖ ପୁରୁଷ ଏକ ଓ ଅଦ୍ୱୈତ ହେଲେ ମଧ୍ୟ ସେ ଅନେକ ହୋଇ ଅସୀମ ବ୍ରହ୍ମ ସ୍ୱଇଚ୍ଛାରେ ନିଜକୁ ସୀମିତ କରିଛନ୍ତି । ଯେତେବେଳେ ସଂସାରରେ କିଛି ନ ଥିଲା, ସେତେବେଳେ କେବଳ ଶୂନ୍ୟ ହିଁ ଥିଲା ।

ଏ ମାଟି ପଥର ଏ ଜଳ ପବନ ଏମାନେ ନଥିଲେ କେହି
ଶୂନ୍ୟଶୂନ୍ୟ ମହାଶୂନ୍ୟ ଅନ୍ଧକାର ଥିଲା ନିଶବଦ ହୋଇ।[୧୭]

ଏ ସମସ୍ତ ତାଙ୍କଠାରୁ ସୃଷ୍ଟି ହୋଇଛି, ତାଙ୍କୁ କେହି ସୃଷ୍ଟି କରିନାହିଁ। ସେ ହେଉଛନ୍ତି Causa sui ବା ଆଦି କାରଣ।

ଯୋନିରେ ଜନମ ନୁହେଁ ଗର୍ଭରେ ନ ରହେ,
ସମସ୍ତଙ୍କୁ ଗଢ଼ିଅଛି, ତାଙ୍କୁ ଗଢ଼ି ନାହିଁ କିଏ।[୧୮]

**ପିଣ୍ଡବ୍ରହ୍ମାଣ୍ଡ**

ଭାରତୀୟ ଦର୍ଶନରେ ପିଣ୍ଡ-ବ୍ରହ୍ମାଣ୍ଡର ତାଦାତ୍ମ୍ୟ ଦେଖିବାକୁ ମିଳେ। ଭୀମଭୋଇ ଏହାକୁ ସ୍ୱୀକାର କରି କହନ୍ତି ପିଣ୍ଡ ଓ ବ୍ରହ୍ମାଣ୍ଡ ହେଉଛି ଶୂନ୍ୟପୁରୁଷଙ୍କ ପରିପ୍ରକାଶ ଯାହାକି ତାଙ୍କ ଦ୍ୱାରା ନିୟନ୍ତ୍ରିତ ହୁଏ ଏବଂ ତାଙ୍କ ଆଜ୍ଞାରେ ପରିଚାଳିତ ହେଲେ ମଧ ସେ କୃପା ଦୃଷ୍ଟିରେ ସେମାନଙ୍କୁ ଦେଖୁଥାନ୍ତି।

ଅଦେହୀ ଦେହେ ଅଛି, ସେ ଯେ ନ ଦିଶୁଛି।[୧୯]

× × ×

ଏ ପିଣ୍ଡ-ବ୍ରହ୍ମାଣ୍ଡ ତା'ର ଆଜ୍ଞାରେ ରହିଛି,
ପିଣ୍ଡ-ବ୍ରହ୍ମାଣ୍ଡକୁ କୃପାନେତ୍ରେ ଚାହୁଁଛନ୍ତି।[୨୦]

ଭୀମଭୋଇ ନିଶ୍ଚିତ ଯେ ପ୍ରତ୍ୟେକ ମଣିଷ ମଧ୍ୟରେ ଆଧ୍ୟାତ୍ମିକ ଶକ୍ତି ନିହିତ। ସେ ଯେତେବେଳେ ପିଣ୍ଡ-ବ୍ରହ୍ମାଣ୍ଡ ଏକତ୍ୱର ସନ୍ଧାନ ନିରନ୍ତର କରେ ସେ ନିଜର ସାଧନା ଲକ୍ଷ୍ୟରେ ପହଞ୍ଚିଯାଏ।

ପରମକୁ ଜୀବ ଖୋଜୁଅଛି ନିରନ୍ତରେ
ଚିହ୍ନିପାରିଲେ ସେ ଦୁଇଛନ୍ତି ଏକଠାରେ।[୨୧]

ଭଜନମାଳା-୧୯୨ରେ ଭୀମଭୋଇ କହୁଛନ୍ତି ବ୍ରହ୍ମଙ୍କୁ ଶରୀର ବାହାରେ ବୃଥାରେ ନ ଖୋଜି ନିଜ ଘଟ ମଧ୍ୟରେ ସନ୍ଦର୍ଶନ କର।

ବାହ୍ୟରେ ଖୋଜିଲେ କେବେ ନାହିଁ ମିଳେ
ଘଟ ଭେଦାନ୍ତରେ ଭେଟ ପାଇ।

× × ×

ଏ ଦେହ ଶିଖରେ ବ୍ରହ୍ମ ଅଛି ଅଭୟ ମଣ୍ଡଳେ ବିହାଗୁଛି।

ତେଣୁ ସ୍ୱଦେହରେ ନ କଲେ ଠାବ ଅଦେହରେ ଆଉ କି ପାଇବା।

ଆତ୍ମାର ଏକତ୍ୱ ଓ ଅଦ୍ୱୈତବାଦ ପ୍ରତିପାଦିତ କରିବା ପାଇଁ କବୀର କହନ୍ତି ଯେ ପରମତତ୍ତ୍ୱ ସମସ୍ତ ଘଟରେ ପରିବ୍ୟାପ୍ତ। ଏହା ବୁଝାଇବାକୁ ଯାଇ କବୀର ଏକ ସୁନ୍ଦର ଉପମା ଉପସ୍ଥାପିତ କରିଛନ୍ତି।

ପଞ୍ଚ ବରନ ଦସ ଦୁହିଯେ ଗାଇ, ଏକ ଦୁଧ ଦେଖୌ ପତିଆଇ,
କହୈ କବୀର ସଁସା କରି ଦୂର, ତ୍ରିଭୁବନ ନାଥ ଇହ୍ୟା ଭରପୂର।

ଅର୍ଥାତ୍, ପାଞ୍ଚୋଟି ବିଭିନ୍ନ ରଙ୍ଗର ଦଶଗୋଟି ଗାଭୀକୁ ଦୋହନ କଲେ ସେମାନଙ୍କର ଦୁଧର ରଙ୍ଗ ଯେପରି ଭିନ୍ନ ଭିନ୍ନ ନ ହୋଇ ଧବଳବର୍ଣ୍ଣ ହୋଇଥାଏ, ସେହିପରି ବିଭିନ୍ନ ପ୍ରକାର ନାମରୂପ ମଧ୍ୟରେ ଏକ ଅଦ୍ୱୈତ ତତ୍ତ୍ୱ ହିଁ ପରିବ୍ୟାପ୍ତ। ପିଣ୍ଡ ବ୍ରହ୍ମାଣ୍ଡ ମଧ୍ୟରେ ଥିବା କୌଣସି ଭେଦକୁ କବୀର ସ୍ୱୀକାର କରନ୍ତି ନାହିଁ। ପିଣ୍ଡ ଓ ବ୍ରହ୍ମାଣ୍ଡ ଅଖଣ୍ଡାତ୍ମକ। ଏହି ସିଦ୍ଧାନ୍ତକୁ ବୁଝାଇବାକୁ ଯାଇ ସେ 'ଜଳ-କୁମ୍ଭ ନ୍ୟାୟ'ର ସାହାଯ୍ୟ ନେଇଛନ୍ତି:

ଜଳ ମେଁ କୁମ୍ଭ, କୁମ୍ଭ ମେଁ ଜଳ ହୈ,
ବାହରି - ଭିତରି ପାନୀ।
ଫୁଟା କୁମ୍ଭ ଜଳ ଜଳ ହି ସମାଁନା,
ଯହୁ ତତ କଥୌ ଦୟାନୀ।

ଜଳାଶୟ ମଧ୍ୟରେ ଥିବା ଜଳପୂର୍ଣ୍ଣ ମାଟି ପାତ୍ରର ଭିତରେ ଏବଂ ବାହାରେ ଜଳ ହିଁ ଥାଏ। ଯଦି ଏହି ମାଟି ପାତ୍ରରେ ଛିଦ୍ର ହୋଇଯାଏ, ତେବେ ଏଥିରେ ଥିବା ଜଳ ଜଳାଶୟରେ ବିଲୀନ ହୋଇଯାଏ। ଏହିପରି ଭାବରେ ଉଭୟେ ଏକ ଏବଂ ତନ୍ମୟରୂପ ହୋଇଥିବାରୁ ବ୍ରହ୍ମ ମଧ୍ୟରେ ଜୀବ ଏବଂ ଜୀବ ମଧ୍ୟରେ ବ୍ରହ୍ମ ବିଲୀନ ହୋଇଯାଆନ୍ତି।

ଏକ ଏକ ତେଁ ଅନ୍ତ ହ୍ୱୈଁ, ଅନ୍ତ ଏକ ହୈଁ ଜାୟ।
ଏକ ସେ ଏକ ପରଚେ ହୟା, ଏକୈ ମାହିଁ ସମାୟ।

ଜୀବାତ୍ମାର ଉତ୍କଣ୍ଠା ପରମାତ୍ମାର ସହିତ ଲୀନ ହୋଇଯିବା। ସାଙ୍କେତିକ ଭାବରେ କବୀର କହନ୍ତି ଯେ ପରମାତ୍ମା ହେଉଛନ୍ତି ପ୍ରଭୁ ଏବଂ ଜୀବାତ୍ମା ହେଉଛି ସେବକ।

ଉଲଟି ସମାନା ଆପମଁ, ପ୍ରଗଟି ଜ୍ୟୋତି ଅନନ୍ତ।
ସାହବ ସେବକ ଏକ ସଙ୍ଗ, ଖେଲୈ ସଦା ବସନ୍ତ।।

ପିଣ୍ଡ ହେଉଛି ବ୍ରହ୍ମାଣ୍ଡର ଗୋଟିଏ ଅଂଶ। ଏହି ଅଂଶାଶୀ ଭାବ ଶରୀରର ବିଭିନ୍ନ ଅଙ୍ଗ ସହିତ ଥିବା ସମ୍ପର୍କ ଭଳି ନୁହେଁ। ଏହା ଅଖଣ୍ଡାତ୍ମକ ରୂପେ ବ୍ୟାପ୍ତ। ଏହାକୁ ଜଳବିନ୍ଦୁ ଓ ସମୁଦ୍ରର ଉପମା ଦ୍ୱାରା ବୁଝାଇ ଦିଆଯାଇପାରେ। ଜଳବିନ୍ଦୁ ସମୁଦ୍ରର ଏକ କ୍ଷୁଦ୍ର ଅଂଶ ହେଲେ ମଧ୍ୟ ପ୍ରତ୍ୟେକ ଜଳବିନ୍ଦୁରେ ସମୁଦ୍ର ପରିବ୍ୟାପ୍ତ। ଜଳବିନ୍ଦୁ ଓ ସମୁଦ୍ରର ପୃଥକ୍ ପରିକଳ୍ପନା ଯେପରି ଅସମ୍ଭବ, ସେହିପରି ପିଣ୍ଡ ଓ ବ୍ରହ୍ମାଣ୍ଡ ଅଭିନ୍ନ ହୋଇଥିବାରୁ ଗୋଟିକର ଅଭାବରେ ଅନ୍ୟଟିର ସ୍ଥିତିର କଳ୍ପନା କରା ନ ଯାଇପାରେ।

## ଅବତାରବାଦ

ସଗୁଣ ଓ ନିର୍ଗୁଣ ବ୍ରହ୍ମର ସମ୍ପର୍କ ବୁଝିବା ପାଇଁ ଭୀମଭୋଇ ଅବତାରବାଦକୁ ସ୍ୱୀକାର କରିଛନ୍ତି। 'ଅବତାର'ର ଅର୍ଥ ହେଉଛି 'ଦିବ୍ୟ ଅବତରଣ'। ଭୀମଭୋଇଙ୍କ ଅନୁସାରେ ମହିମା ଗୋସାଇଁ ହେଉଛନ୍ତି ଶୂନ୍ୟ, ଅଲେଖଙ୍କର ଅବତାର ଯେ ହେଉଛନ୍ତି ଅଣାକାର। ବର୍ତ୍ତମାନ ପ୍ରଶ୍ନଉଠେ ଯେ ପରମସତ୍ତା ଏବଂ ଯେ ସମସ୍ତ ଅପୂର୍ଣ୍ଣତାରୁ ମୁକ୍ତ ସେ ମାନବ ଶରୀର ଧାରଣ କରି ଜନ୍ମ-ମରଣ ଚକ୍ରରେ କହିଁକି ପଡ଼ିଲେ ? ଏହାର ଉତ୍ତର ହେଉଛି ଯେ ମୂଲ୍ୟବୋଧର ଯେତେବେଳେ ଅଧଃପତନ ହୁଏ ସେତେବେଳେ ଧର୍ମର ସଂସ୍ଥାପନ ଏବଂ ଲୋକ-କଲ୍ୟାଣ ନିମିତ୍ତ ସେ ମାନବ ଶରୀରରେ ଅବତୀର୍ଣ୍ଣ ହୁଅନ୍ତି।

ଭକତଙ୍କ ହିତେ ବିଜେ କଲେ ମର୍ତ୍ତ୍ୟେ,
ଦୀକ୍ଷା ଅବଧୂତ ନିର୍ବେଦ ସଂଭୂତ।[୨୨]

ପୁଣି ଭୀମଭୋଇ କହନ୍ତି –

ଅନନ୍ତ ପୁରୁଷ ସେହି ଆଦିଅନ୍ତ ତା ନ ପାଇ,
ଭକତ ହିତରେ ମର୍ତ୍ତ୍ୟେ ଅବତାର।[୨୩]

ଭୀମଭୋଇଙ୍କ ଅନୁସାରେ ମହିମା ଗୋସାଇଁଙ୍କ ଅବତାର ରୂପେ ଆର୍ବିଭାବ ସମୟ ଉପଯୋଗୀ କାରଣ ସେ ସମୟରେ ମାନବ ଜାତି ସଂସାର-ଜଞ୍ଜାଳରେ ପଡ଼ି ଅତି ଦୁଃଖ, ଶୋକରେ ଆକ୍ରାନ୍ତ ହେଉଥିଲେ। ଅବତାର ହେଉଛନ୍ତି ଏକ ପରିପୂର୍ଣ୍ଣ ବ୍ୟକ୍ତିତ୍ୱ ଏବଂ ସେ ସଂସାରର ସୃଷ୍ଟିକର୍ତ୍ତା।

ସେ ଅମର, ଅଜର ଏବଂ ସମସ୍ତଙ୍କର ପ୍ରଭୁ ହୋଇଥିବାରୁ ସେ ମାୟାର ଅଂଶ ନୁହନ୍ତି ବା ମାୟା ତାଙ୍କୁ ଫାନ୍ଦରେ ପକାଇପାରେ ନାହିଁ। ଏହାକୁ ସ୍ପଷ୍ଟ କରିବାକୁ ଯାଇ ଭୀମଭୋଇ କହନ୍ତି –

ଆପଣା ମାୟାକୁ ଆପେ ଅଛି ଜିଣି,
ତେଣୁ ତା ପକ୍ଷୀରେ ନ ଲାଗଇ ପାଣି।[୨୪]

କବୀର ଅବତାରବାଦକୁ ଖଣ୍ଡନ କରିଛନ୍ତି। ତାଙ୍କ ମତରେ ନିର୍ଗୁଣ ବ୍ରହ୍ମ କଦାପି ଅବତାର ଗ୍ରହଣ କରନ୍ତି ନାହିଁ। ଅବଦାରବାଦ ହେଉଛି ବ୍ୟାବହାରିକ ଜଗତ ତଥା ଏଥିରେ ଥିବା ଭକ୍ତମାନଙ୍କର କଳ୍ପିତ ରୂପ ମାତ୍ର। ପାରମାର୍ଥିକ ଦୃଷ୍ଟିରୁ ଅବତାରଙ୍କ ଅସ୍ତିତ୍ୱ ଅନସ୍ୱୀକାର୍ଯ୍ୟ। ବ୍ରହ୍ମ ଅଜର, ଅମର, ନିଃସଙ୍ଗ ହୋଇଥିବାରୁ ସେ ଜନ୍ମ-ମରଣ ଚକ୍ରରେ ଆବଦ୍ଧ ହୋଇ ନ ପାରନ୍ତି। ବ୍ରହ୍ମ ଯେ ଭକ୍ତର ରକ୍ଷା ଲାଗି ଏବଂ ପାପୀର ବିନାଶ କରିବାପାଇଁ ଅବତାର ଗ୍ରହଣ କରନ୍ତି ଏହି ଧାରଣା ଅମୂଳକ ଓ ଅବାସ୍ତବ। କବୀର ବାରମ୍ବାର ରାମ ନାମର ପ୍ରୟୋଗ କରିଥିବାରୁ ବ୍ୟାବହାରିକ ଭାଷାରେ ତାଙ୍କୁ ପୁରୁଷୋତ୍ତମ, ଦଶରଥ-ତନୟ ରାମ ମଧ୍ୟ କୁହାଯାଏ। କିନ୍ତୁ କବୀରଙ୍କ ରାମ ନିର୍ଗୁଣ ଓ ନିରାକାର ବ୍ୟତୀତ ଅନ୍ୟ କେହି ନୁହନ୍ତି। ନିର୍ଗୁଣ ରାମଙ୍କ ପରିଭାଷା ଦେବାକୁ ଯାଇ କବୀର କହନ୍ତି –

କସ୍ତୁରୀ କୁଣ୍ଡଳି ବସୈ, ମୃଗ ଢୁଁଢ଼େଁ ବନ ମାହିଁ।
ଏସୈଁ ଘଟି ଘଟି ରାମ ହୈ; ଦୁନିଆ ଦେଖୈ ନାହିଁ।

ଅର୍ଥାତ୍ ମୃଗନାଭିରେ ଯେପରି କସ୍ତୁରୀ ଥାଏ ଅଥଚ ତାହାର ସୁଗନ୍ଧିରେ ଉନ୍ମତ୍ତ ହୋଇ ବ୍ୟାକୁଳ ଭାବରେ ସେ ବିଭିନ୍ନ ସ୍ଥାନରେ କସ୍ତୁରୀର ଅନ୍ୱେଷଣ କରୁଥାଏ, ସେହିପରି ଅଜ୍ଞାନୀ ଜୀବ ଜାଣିପାରେ ନାହିଁ ଯେ ରାମ ସର୍ବବ୍ୟାପୀ ଏବଂ ତାହାର

ଘଟରେ ବିଦ୍ୟମାନ । ସେ ଯେ ନିର୍ଗୁଣ ରାମଙ୍କର ସାଧକ ତାର ଉଦ୍‌ଘୋଷଣ କରିବାକୁ ଯାଇ କହନ୍ତି–

ନିରଗୁଣ ରାମ ନିରଗୁଣ ରାମ ଜପହୁରେ ଭାଇ,
ଅବିଗତ କୀ ଗତି ଲଖି ନ ଜାଇ ।

## ମାନବ ଶରୀରର ଦିବ୍ୟତ୍ୱ

ସାଧକ ନିମିତ୍ତ ନିଜ ଶରୀର ରକ୍ଷା ପରମାବଶ୍ୟକ । ସୁସ୍ଥ ଶରୀର ବିନା ସାଧନାରେ ବିଘ୍ନ ସୃଷ୍ଟି ହୋଇଥାଏ । ଶରୀର ପରିବର୍ତ୍ତନଶୀଳ ଓ ମରଣଶୀଳ ହୋଇଥିବାରୁ ସାଧକକୁ ସ୍ୱଳ୍ପ ସମୟ ମଧ୍ୟରେ ଭଗବତ୍ ଭକ୍ତିପୂର୍ବକ ହରି ଦର୍ଶନ ନିମିତ୍ତ ପ୍ରୟାସୀ ହେବା ଉଚିତ । ଶରୀର ହିଁ ଏକମାତ୍ର ସାଧନ ଯାହା ମାଧ୍ୟମରେ ଭଗବତ୍ ଭକ୍ତି କରାଯାଇପାରେ । ତେଣୁ କବୀର କହନ୍ତି, 'ମନିଷ ଜନମ ଦୁଲ୍ଲଭ ହେ, ଦେହ ନ ବାରମ୍ବାର' ।

ମାନବ ଶରୀର ହେଉଛି ପରମସତ୍ତାଙ୍କର ଏକ ଦୁର୍ମୂଲ୍ୟ ଓ ଅମୂଲ୍ୟ ଉପହାର, ଯାହାକି ହେଉଛି ମୁକ୍ତିର ପଥ । ଯେଉଁମାନେ ଏ ଶରୀରର ଦୁର୍ବ୍ୟବହାର କରନ୍ତି ସେମାନେ ନର୍କରେ ପଡ଼ନ୍ତି । ଶରୀର ମାଧ୍ୟମରେ ଆମେ ପରମାନନ୍ଦ ପାଇଥାଉ । ଏହାକୁ କାୟା-ସାଧନା ମଧ୍ୟ କୁହାଯାଏ । କିନ୍ତୁ ଯଦି ଆମେ ଅଦେହ, ଅକାୟକୁ ଅଣଦେଖା କରି କେବଳ ଶରୀରକୁ ପ୍ରାଧାନ୍ୟ ଦେଉ, ତାହାହେଲେ ଆମେ ସୁଖବାଦରେ ନିମଗ୍ନ ହେଉ ଯାହାକି କରଣୀୟ ନୁହେଁ । ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱରୁ ମାନବ ଶରୀରର ଯଥାର୍ଥତା ଜାଣିହୁଏ । ମାନବ ଶରୀର ଏକ ମନ୍ଦିର ସଦୃଶ ହୋଇଥିବାରୁ ଆମର ମନ ଓ ଦେହର ଦୁର୍ଗୁଣଗୁଡ଼ିକର ନିରାକରଣ କରିବାକୁ ହେବ ।

ଭୀମଭୋଇଙ୍କ ଅନୁସାରେ ମାନବ ଶରୀର ହେଉଛି ମହିମାଙ୍କ ନିଗମ ସ୍ଥାନ । ଶୂନ୍ୟ ପୁରୁଷ ଯେଉଳି ସର୍ବଜ୍ଞ, ମାନବ ଶରୀର ମଧ୍ୟ ସେଉଳି ସର୍ବଜ୍ଞ । ତେଣୁ ମାନବ ଜୀବନ ଅତି ମୂଲ୍ୟବାନ ଯାହାକି ଆଉ ଥରେ ପାଇବା ଅତି କଷ୍ଟକର ।

ମହିମା ନାମଟି ଯେହୁ ପ୍ରତ୍ୟକ୍ଷେ ମନୁଷ୍ୟ,
ଦୁର୍ଲ୍ଲଭ ଜନ୍ମଟି ଅଟେ ସର୍ବଜ୍ଞ ପୁରୁଷ ।[୨୫]

ମନୁଷ୍ୟ ଜନ୍ମ ସାର, ଏ ଦେହେ ହେତୁ କର,
ଦୁର୍ଲ୍ଲଭ ଜନ୍ମଟି ଆଉ ପାଇବୁ ନାହିଁ।[୨୬]

ମାନବ ଶରୀରରେ ସମସ୍ତ ଦିବ୍ୟଗୁଣଗୁଡ଼ିକ ଲୁକ୍କାୟିତ ହୋଇ ରହିଛି। ଏହାକୁ ହୃଦୟଙ୍ଗମ ନ କରି ବୃଥାରେ ଏ ଶରୀର ପ୍ରତି ଅଭିମାନ କରନାହିଁ।

ସର୍ବଗୁଣେ ପରିପୂର୍ଣ୍ଣ କରିଅଛ ଅଭିମାନ,
ମାନବ ତନୁ ଏ ସଂସାରେ ସାର।[୨୭]

ଯେତେବେଳେ ଆମେ ଅଲେଖକୁ ଶରୀରର ପ୍ରକୃତ ସ୍ୱରୂପ ବିଷୟରେ ଜାଣିବା, ସେତେବେଳେ ବ୍ରହ୍ମଜ୍ଞାନ ନିମିତ୍ତ ଆମେ ଯୋଗ୍ୟ ହେବା।

ନିର୍ଗୁଣ ଯେ ବ୍ରହ୍ମଜ୍ଞାନ, ଏବେ ସ୍ୱଦେହରେ ଚିହ୍ନ
ଶରୀରାର୍ଥେ ଜ୍ଞାନ କର, ତେବେ ପାଇବ ଗୋଚର,
ସେ ଅଲେଖ ଅଣାକାର ଅଛନ୍ତି ସର୍ବଘଟରେ ହେ।[୨୮]

ସଦ୍‌ଜ୍ଞାନର ସମ୍ପତ୍ତି ଏ ଶରୀରରେ ଅଛି। ଅନୁଭବ ଏବଂ ମନକୁ ନିୟନ୍ତ୍ରିତ କଲେ ସାଧକ ଏ ସମ୍ପତ୍ତିର ଅଧିକାରୀ ହେବ। ଶରୀର ଯଦି ନଷ୍ଟ ହୋଇଯାଏ ତାହାହେଲେ ବ୍ରହ୍ମଜ୍ଞାନର ଅନୁଭୂତିରୁ ତୁମେ ବଞ୍ଚିତ ହେବ।

ଏଇ ଘଟ ଥିଲେ ସବୁ ଅଛି ଜ୍ଞାନଧ୍ୟାନ,
ଅନୁଭବ ପଥେ ଥୁଅ ଅମନରେ ମନ।
ଏ ଦେହ ଛାଡ଼ିଲେ କିଛି ଜ୍ଞାନ ଆଉ ନାହିଁ,
ଅଣହେତୁ ହେଲେ ବ୍ରହ୍ମ ପାଇବୁ ତୁ କାହିଁ।[୨୯]

ଏ ଶରୀର ଛାଡ଼ିଲେ ଆଉ ମାନବ ଜନ୍ମ ନାହିଁ। କେବେ ଯେ ମାନବ ଜନ୍ମ ପାଇବୁ ତାହା ତୁ ଜାଣିପାରିବୁ ନାହିଁ।

ଏ ଦେହ ଛାଡ଼ିଲେ ଜନ୍ମ ନାହିଁ,
କେବେ ଜନ୍ମ ହେବୁ ହେତୁ ନାହିଁ।[୩୦]

କବୀରଙ୍କ ମତରେ ମାନବ ଶରୀର ଏକ ମନ୍ଦିର ବା ଭବନ ସ୍ୱରୂପ ଯେଉଁଠି ଜ୍ୟୋତସ୍ୱରୂପ ଆତ୍ମା ବିଦ୍ୟମାନ। ଏହି ଜ୍ୟୋତିର ବିଲୀନ ଘଟିଲେ (ଅର୍ଥାତ୍ ଏହା

ଶରୀରରୁ ବିଛିନ୍ନ ହୋଇଗଲେ) ଶରୀର ରୂପୀ ଭବନରେ ଅନ୍ଧକାର ଘୋଟିଯାଏ, ଅର୍ଥାତ୍ ମାନବ ଜୀବନର ଅନ୍ତିମ ସମୟ ଆସିଯାଏ। କବୀର ପୁଣି କହନ୍ତି ଯେ ମାନବ ଶରୀର ଗୋଟିଏ ସରୋବର ସଦୃଶ ଯେଉଁଥିରେ ପରମଜ୍ୟୋତି ସ୍ୱରୂପ ନିର୍ଗୁଣ ନିରାକାର ଆତ୍ମା ଏକ ଅନୁପମ କମଳ ପୁଷ୍ପ ରୂପରେ ବିଦ୍ୟମାନ।

ଶରୀର ସରୋବର ଭିତରେ, ଆଛେ କମଳ ଅନୂପ।
ପରମଜ୍ୟୋତି ପୁରୁଷୋତ୍ତମୋ ଜାକେ ରେଖ ନ ରୂପ।।

ଆତ୍ମାକୁ କମଳ ପୁଷ୍ପ ଭାବରେ ବର୍ଣ୍ଣନା କରିବା ମୂଳରେ କବୀରଙ୍କ ଉଦ୍ଦେଶ୍ୟ ହେଉଛି ଯେପରି କମଳପୁଷ୍ପ ଜଳ ମଧ୍ୟରେ ନିର୍ଲିପ୍ତ ଥାଏ, ସେହିପରି ଶରୀରର ବିଭିନ୍ନ ଗୁଣ ଦ୍ୱାରା ଆତ୍ମା ପ୍ରଭାବିତ ବା କଳୁଷିତ ହୁଏନାହିଁ। ବ୍ୟକ୍ତ ସୃଷ୍ଟିରେ ଥିବା ସମସ୍ତ ପ୍ରାଣୀ ମଧ୍ୟରେ ମନୁଷ୍ୟର ସ୍ଥିତି ସର୍ବୋତ୍ତମ ବୋଲି କବୀର କହନ୍ତି –

ମନୁଷ ଜନମ ଉତ୍ତମ ଜୋ ପାବା,
ଜାନୁଁ ରାମ ତୌ ସୟାନ କହାବା।

ଜଳବିନ୍ଦୁ ସଦୃଶ ଏହି କ୍ଷଣଭଙ୍ଗୁର ଶରୀର ମାଧ୍ୟମରେ ଜୀବ ନିଜର ପ୍ରକୃତ ସ୍ୱରୂପକୁ ହୃଦୟଙ୍ଗମ କରିବା ପାଇଁ ସମର୍ଥ ହୋଇଥାଏ। ଯଦି ସେ ଏଥିନିମିତ୍ତ କୌଣସି ସାଧନା ନ କରେ ତା' ମାନବ ଜୀବନ ବ୍ୟର୍ଥ ହୁଏ। ତେଣୁ ସେ କହନ୍ତି,

ସୋ ବୌରାଦ ଆପୁ ନ ପଛାବୈ,
ଆପ ପଛାନୈ ତ ଏକୈ ଜାନେଁ।

ଅର୍ଥାତ୍ ଏହି ମାନବ ଶରୀରରେ ପରଂବ୍ରହ୍ମ ଜ୍ଞାନ ଉଦିତ ହେବା ଶ୍ରେୟ ଅନ୍ୟଥା ମହାବିନାଶ ଘଟିବା ସୁନିଶ୍ଚିତ।

## ସାଧନା

ସାଧନା କ୍ଷେତ୍ରରେ ଭୀମଭୋଇଙ୍କ ଅବଦାନ ଅବିସ୍ମରଣୀୟ। ସିଦ୍ଧିପ୍ରାପ୍ତି ନିମିତ୍ତ ବିଭିନ୍ନ ପ୍ରକାରର ସାଧନାର ଉଲ୍ଲେଖ ଅଛି, କିନ୍ତୁ ଭୀମଭୋଇ କର୍ମ, ଜ୍ଞାନ ଓ ଭକ୍ତି ସାଧନା ଉପରେ ବିଶେଷ ଗୁରୁତ୍ୱ ଦେଇଛନ୍ତି। ଭୀମଭୋଇଙ୍କ ପ୍ରତିପାଦିତ ସାଧନାକୁ

ଅଲେଖ ସାଧନା କୁହାଯାଏ। ଅଲେଖ ସାଧନା ନିମିତ୍ତ ସାଧକକୁ ଅହିଂସା, ସତ୍ୟ, ପ୍ରେମ, କରୁଣା ଆଦି ସଦାଚାରର ଅଧିକାରୀ ହେବାକୁ ପଡ଼ିବ।

ଭାରତୀୟ ଦର୍ଶନରେ କର୍ମବାଦକୁ ଗୁରୁତ୍ୱ ଦିଆଯାଇଛି। କର୍ମବାଦର ଅର୍ଥ ହେଉଛି ଯେଉଁଭଳି କର୍ମ, ସେହିଭଳି ଫଳ। କାର୍ଯ୍ୟ-କାରଣ ନିୟମ ଦ୍ୱାରା ଏହା ନିୟନ୍ତ୍ରିତ ହେଉଛି। କାର୍ଯ୍ୟ-କାରଣ ନିୟମକୁ ସ୍ୱୟଂ ଭଗବାନ ମଧ୍ୟ ଲଙ୍ଘନ କରିପାରିବେ ନାହିଁ। ଭୀମଭୋଇ ଏହାକୁ ସ୍ୱୀକାର କରି ମତ ଦିଅନ୍ତି –

ପାପ କରିଥିଲେ ପାପକୁ ଭୁଞ୍ଜିବେ,
ପୁଣ୍ୟ ଥିଲେ ପୁଣ୍ୟ ଭୋଗ।[୩୧]

କର୍ମବାଦର ଏକ ସମସ୍ୟା ହେଉଛି ଯେ ଜଣେ ପୁଣ୍ୟକର୍ମ କରୁ ବା ପାପକର୍ମ କରୁ ତା'ର କର୍ମଫଳ ଭୋଗିବାକୁ ତାକୁ ବନ୍ଧନରେ ପଡ଼ିବାକୁ ହେବ। ତାହାହେଲେ ଏ ବନ୍ଧନରୁ ମୁକ୍ତି ମିଳିବ କିପରି ? ଏ କର୍ମମୟ ସଂସାରରୁ ନିବୃତ୍ତି ସମ୍ଭବ ନୁହେଁ କାରଣ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ ମାନବ ଜୀବନରେ କର୍ମର ଗତି ଅବାରିତ ଭାବେ ଚାଲିଛି। କର୍ମ ବିନା ଜୀବନ ସମ୍ଭବ ନୁହେଁ।

ବିନା କର୍ମରେ ଶାନ୍ତି ଲଭିଅଛନ୍ତି, କେମନ୍ତେ ସରିବ ଦିନ,
ଏଡ଼େ ଅଜ୍ଞାନୀ ମୂର୍ଖ ହୋଇଣ ପ୍ରାଣୀ ପଶିଛନ୍ତି ମାୟାବନ।[୩୨]

ଯଦି କର୍ମ ବନ୍ଧନରେ ପକାଏ, ତାହାହେଲେ କର୍ମ ମାଧ୍ୟମରେ ମୁକ୍ତି ପାଇବା କିପରି ସମ୍ଭବ ? ଏହି ସମସ୍ୟାର ସମାଧାନ ପାଇଁ ଭୀମଭୋଇ କହନ୍ତି କର୍ତ୍ତାଭାବକୁ ତ୍ୟାଗ କଲେ ମନୁଷ୍ୟ କର୍ମଫଳର ବନ୍ଧନରେ ପଡ଼େ ନାହିଁ। ମହିମା ହେଉଛନ୍ତି ସମସ୍ତ କର୍ମର ଆଦିକର୍ତ୍ତା। ଯେହେତୁ ପରମ ସତ୍ତାଙ୍କର ସ୍ୱରୂପ ହେଉଛି ନିଷ୍କାମ। ତେଣୁ ତାଙ୍କୁ ପାଇବାକୁ ହେଲେ ସାଧକକୁ ନିଷ୍କାମ ପଥ ଗ୍ରହଣ କରିବାକୁ ହେବ।

'ନିଷ୍କାମ ବ୍ରହ୍ମକୁ ଯେବେ ଆଶ୍ରାକର, ଆପଣେ ନିଷ୍କାମ ହୁଅ।'[୩୩]

ଭୀମଭୋଇ ବିସ୍ତୃତ ଭାବରେ ସୂଚାଇ ଦେଇଛନ୍ତି, କର୍ମର ପଦ୍ଧତି କିପରି ହେବା ଉଚିତ, ଯଦ୍ୱାରା ସାଧକ ବନ୍ଧନରେ ପଡ଼ିବ ନାହିଁ। ପ୍ରତ୍ୟେକକୁ ନିଜର ବୃତ୍ତି କରିବା ଯଥାର୍ଥ  କିନ୍ତୁ ସଦାସର୍ବଦା ଗୁରୁ ନାମକୁ ସ୍ମରଣ କରିବା ହିଁ ବିଧେୟ।

ତାହାର ବୃତ୍ତି ସେ ନ ରଖିବ ଯେବେ
କେ କରିବ ସେହୁ କର୍ମ,
ମୁଖେ ଯେବେ ଗୁରୁ ନାମ ଜପୁଥିବ
ଉଦ୍ଧାର କରିବେ ବ୍ରହ୍ମ ।[୩୪]

କବୀର କର୍ମବାଦକୁ ବିଶ୍ୱାସ କରନ୍ତି ଯାହା ଅନୁସାରେ 'ଯେଉଁଭଳି କର୍ମ, ସେହିଭଳି ଫଳ' । ଉଚିତ କର୍ମ କଲେ ଶୁଭ ଫଳ ମିଳେ, ଅନୁଚିତ ବା ନିଷିଦ୍ଧ କର୍ମ କଲେ ଅଶୁଭ ଫଳ ମିଳିଥାଏ । ନିଜ କର୍ମ ଅନୁଯାୟୀ ସଂସାରୀ ଜୀବ ବିଭିନ୍ନ ଯୋନିରେ ଭ୍ରମଣ କରି ଜନ୍ମମୃତ୍ୟୁ ଲାଭ କରିଥାଏ । ତେଣୁ କବୀର ଜନ୍ମାନ୍ତରବାଦକୁ ଗ୍ରହଣ କରି କହନ୍ତି ଯେ ଜନ୍ମ-ମରଣ ଚକ୍ରରେ ପଡ଼ି ଦୁଃଖ କରିବା ଉଚିତ ନୁହେଁ ବରଂ ଲୋକମଙ୍ଗଳ କାର୍ଯ୍ୟ ନିରାସକ୍ତ ଭାବରେ ସମ୍ପାଦନ କଲେ ଏଥିରୁ ମୁକ୍ତି ମିଳିଥାଏ । କବୀର କହନ୍ତି –

ଧାବତ ଯୋନି ଜନମ ଭ୍ରମି ଥାକ୍ୟୋ
ଅବ ଦୁଃଖ କରି ହମ ହାରଯୋରେ ।

ଏହି ଦୁଃଖ ନିରୋଧର ଉପାୟ କବୀର ନିମ୍ନମତେ କହିଛନ୍ତି –

ହରି ହରିଦୟ ଏକୈ କରି ସାଁନାଁ
ଜିନି ଚିହ୍ନ୍ୟା ଚିନହାଁ ସୁଖ ମାଁନାଁ ।

ଯେଉଁ ବ୍ୟକ୍ତି ନିଜର ନିତ୍ୟ, ମୁକ୍ତ ଓ ଶୁଦ୍ଧସ୍ୱରୂପକୁ ଭୁଲିଯାଇ ନିଜ ଶରୀରକୁ ସବୁକିଛି ଜ୍ଞାନ କରି ମୋହ, ମାୟା, ଧନଲିପ୍ସା ଆଦିର ବଶୀଭୂତ ହୁଏ, ସେ ନିଜର କୃତକର୍ମର ଫଳ ଭୋଗ କରିବା ନିମିତ୍ତ ବାରମ୍ବାର ଜନ୍ମ-ମରଣ ଚକ୍ରରେ ଘୁରି ବୁଲୁଥାଏ ।

ମାଠୀ ମୀଠା ମାୟା ତଜି ନ ଜାଇ
ଅଜ୍ଞାନୀ ପୁରୁଷ କୌଁ ଭେଲି ଭେଲି ଖାଇ ।

**ଜ୍ଞାନ**

ଜ୍ଞାନ-ମୀମାଂସାରେ ଜ୍ଞାନର ଉତ୍ପତ୍ତି, ସୀମା ତଥା ସ୍ୱରୂପର ବିଚାର କରାଯାଇଥାଏ । ଆତ୍ମା ଓ ଅନାତ୍ମ ମଧ୍ୟରେ ପ୍ରଭେଦଜନିତ ଜ୍ଞାନର ଅଭାବକୁ ସମସ୍ତ

ଦୁଃଖର କାରଣ ବୋଲି କୁହାଯାଏ । ତେଣୁ ଦୁଃଖର ନିଷ୍କୃତି ହେତୁ ତତ୍ତ୍ୱଜ୍ଞାନ ଅତ୍ୟନ୍ତ ଆବଶ୍ୟକ । ସମସ୍ତେ ଜ୍ଞାନ ବିଷୟରେ ଆଲୋଚନା କରନ୍ତି କିନ୍ତୁ ଏହି ସାଧନାଟି ଏତେ କ୍ଲିଷ୍ଟ ଯେ ବିଭିନ୍ନ ଘାତ ପ୍ରତିଘାତ ସହ୍ୟ କରିବାକୁ ପଡ଼େ ।

ଜ୍ଞାନ ବୋଲି ଉଚ୍ଚାର କରନ୍ତି ସର୍ବମୁଖେ,
ତାହା ନ ଜାଣନ୍ତି କେହି ମିଳେ କେତେ ଦୁଃଖେ ।[୩୫]

ଏହି ଜ୍ଞାନ ନିମିତ୍ତ ଅଲେଖ ପୁରୁଷକୁ ନିଜ ଆତ୍ମାଠାରୁ ଅଭିନ୍ନ ବୋଲି ଭାବିବା ଉଚିତ । ତେଣୁ ଏହାକୁ ଆତ୍ମୋପସନା କୁହାଯାଏ ଯାହାର ଅର୍ଥ ନିଜ ଆତ୍ମାକୁ ପରମସତ୍ତା ଭାବରେ ଦେଖିବା ।

ପରମସତ୍ତା ନିର୍ବେଦ, ଅଣାକାର ଅଲେଖ ହୋଇଥିବାରୁ, ବ୍ରହ୍ମ-ଜ୍ଞାନର ଏକମାତ୍ର ପଥ ହେଉଛି ତାଙ୍କ ସ୍ୱରୂପକୁ ନିରନ୍ତର ଧ୍ୟାନ କରିବା ।

ଧର ନିଷ୍କାମ ନିର୍ବେଦ ମାୟାଜାଲକୁ ଛେଦ,
ଶୂନ୍ୟ ଜ୍ୟୋତିପାଦ ଚିତ୍ତେ ମନକୁ ମୋଡ଼ ।[୩୬]

ଆତ୍ମଜ୍ଞାନ କେବଳ ପ୍ରଭୁକୃପା ଦ୍ୱାରା ହିଁ ସମ୍ଭବ । ତେଣୁ ଭୀମଭୋଇଙ୍କ ସାଧନାକୁ ଜ୍ଞାନ-ମିଶ୍ରା ଭକ୍ତି କୁହାଯାଏ । ଏହାକୁ ପ୍ରମାଣିତ କରିବାପାଇଁ ଭୀମଭୋଇ କହନ୍ତି –

ଜ୍ଞାନଘର କଥା ଅଶ୍ରୁତ ଅବ୍ୟକ୍ତ ବିନା ଭକ୍ତିରେ କି ଲଭିବୁ,
ତୋ ହୃଦପଦ୍ମରେ ଜ୍ଞାନ ଜାତ ହେଲେ ତେବେ ସିନା ତୁହିଁ ତରିବୁ ।[୩୭]

ତେଣୁ ଏହା ସ୍ପଷ୍ଟ ଯେ ଜ୍ଞାନ ଓ ଭକ୍ତି ପରସ୍ପର ପରିପୂରକ । ଜ୍ଞାନ ବିନା ଭକ୍ତି ଏକ ସମ୍ବେଦନଶୀଳତା ମାତ୍ର, ସେହିଭଳି ଭକ୍ତି ବିନା ଜ୍ଞାନ କେବଳ ଏକ ସୂଚନା । ସଦ୍‌ଜ୍ଞାନ ଏକ ମଉସଧି ଭଳି ଆମକୁ ଦୁଃଖ, ଶୋକ ଓ ଜନ୍ମ-ମରଣ ଚକ୍ରରୁ ମୁକ୍ତ କରାଏ । ତେଣୁ ଭୀମଭୋଇ ପ୍ରାର୍ଥନା କରି କହନ୍ତି –

ଜ୍ଞାନ ମଉସଧି ଦେଇ ଭଲ କର ନ ଥାଉ କାଳ କାଳକୁ ।[୩୮]

ସଦ୍‌ଜ୍ଞାନ କେବେହେଲେ ସୀମିତ ବୁଦ୍ଧି ଦ୍ୱାରା ପ୍ରାପ୍ତ ହୋଇପାରେ ନାହିଁ । ତେଣୁ ଏହା ତର୍କ ବା ଦାର୍ଶନିକ ବାଦ-ବିବାଦ ଦ୍ୱାରା ପାଇବା ପାଇଁ ଉଦ୍ୟମ ନ କରି

ଅତି ସରଳ ଓ ନ୍ୟୂନ ଭାବରେ ତାଙ୍କୁ ଭକ୍ତି କଲେ ସେ ପ୍ରାପ୍ତ ହୁଅନ୍ତି । କିନ୍ତୁ ଅଖଣ୍ଡ ବ୍ରହ୍ମଙ୍କୁ ଖଣ୍ଡଖଣ୍ଡ କରି ଜାଣିବାକୁ ଚେଷ୍ଟାକଲେ ଆମ ଅଙ୍ଗରେ ବିପଦ ପଡ଼ିଥାଏ ।

ଜାଣିବାର ଲୋକ ନିଉନ ହୁଅନ୍ତି ନ କରନ୍ତି ବେଦବାଦ,
ଅଖଣ୍ଡ ବ୍ରହ୍ମଙ୍କୁ ଖଣ୍ଡ ଖଣ୍ଡ କଲେ ଅଙ୍ଗେ ପଡ଼େ ପରମାଦ ।[୩୯]

ତେଣୁ ବ୍ରହ୍ମଙ୍କୁ ଚର୍ମନୟନରେ ଦେଖିହୁଏ ନାହିଁ, ଦିବ୍ୟଦୃଷ୍ଟି ଦ୍ୱାରା ସେ ଦୃଶ୍ୟ ହୁଅନ୍ତି ଯଦିଓ ସେ ଆମ ବହୁ ନିକଟରେ ଅଛନ୍ତି ।

ବ୍ରାହ୍ମ ପାଶେ ନାମ ଅଛି, ଘୋଡ଼ାଇ କହି ରଖିଛି
ଚର୍ମ ନୟନକୁ ନ ଦିଶେ କାହାକୁ,
ଜ୍ଞାନ ନୟନେ ଦିଶଇ ଦୂରେ ନାହିଁ, ପାଶେ ଥାଇ
ଚିହ୍ନିପାରିଲେ କରନ୍ତି ସୁଦୟେ ଗୋ ।[୪୦]

କବୀରଙ୍କ ମତରେ ଜ୍ଞାନୋପ୍ତତ୍ତିର ପ୍ରାରମ୍ଭିକ ଅବସ୍ଥାରୁ ହିଁ ବୁଦ୍ଧିର ଯଥେଷ୍ଟ ଭୂମିକା ରହିଛି । କାରଣ ତଥ୍ୟ-ନିରୂପଣ ନିମିତ୍ତ ବୁଦ୍ଧିର ପ୍ରୟୋଗ ଆବଶ୍ୟକ । ଏହା ସ୍ୱୀକାର କରୁଥିଲେ ମଧ୍ୟ ସ୍ୱାନୁଭୂତି ବିନା କେବଳ ତର୍କ-ବିତର୍କ, ବୁଦ୍ଧି-କୌଶଳ ଦ୍ୱାରା କୌଣସି ସତ୍ୟ ନିର୍ଣ୍ଣୟ ହୋଇପାରେ ନାହିଁ । କବୀରଙ୍କ ମତରେ ବ୍ରହ୍ମ ସ୍ୱୟଂ କାଳରୂପ, ସର୍ବବ୍ୟାପୀ ଏବଂ ସ୍ୱୟଂ ପ୍ରକାଶମାନ ।

ଅବିଗତ ଅପରଂପାର ବ୍ରହ୍ମ, ଜ୍ଞାନଂ ରୂପ ସର୍ବଠାଁମ ।

ବ୍ରହ୍ମଜ୍ଞାନର ବ୍ୟାଖ୍ୟା କରିବାକୁ ଯାଇ କବୀର କହିଛନ୍ତି ଯେ ଯେଉଁ ଅବସ୍ଥାରେ ଜ୍ଞାତା, ଜ୍ଞେୟ ଏବଂ ଜ୍ଞାନ ଅଭିନ୍ନ ଏବଂ ନିଜ ପ୍ରକୃତ ସ୍ୱରୂପରେ ଅବସ୍ଥାନ କରନ୍ତି ସେହି ଅଦ୍ୱୈତାବସ୍ଥା ହିଁ ହେଉଛି ବ୍ରହ୍ମଜ୍ଞାନ । ଏହା ହେଉଛି ପରମ ମୁକ୍ତାବସ୍ଥା ଯେଉଁଥିରେ ସଂଶୟ ଅଥବା ଭ୍ରମର ଲେଶମାତ୍ର ଚିହ୍ନ ଦେଖିବାକୁ ମିଳେ ନାହିଁ –

କବୀର ରାମ ମୈଁ କହୁଁ, କହିବେ ମାହିଁ ବିବେକ,
ଏକ ଅନେକୈ ମିଳିଗୟା, ଏକ ସମାନା ଏକ ।

କବୀର କହନ୍ତି ଯେ ଜ୍ଞାନଦୃଷ୍ଟି ଦ୍ୱାରା ମନୁଷ୍ୟ ସତ୍ୟାସତ୍ୟର ନିରୂପଣ କରିଥାଏ । ଅନ୍ତଃଦୃଷ୍ଟି ଜ୍ଞାନ ଦ୍ୱାରା ସେ ବାହ୍ୟବସ୍ତୁ ପ୍ରତି ଅନୁସନ୍ଧିତ୍ସୁ ନ ହୋଇ ଅନ୍ତର୍ମୁଖୀ ହୁଏ

ଯଦ୍ଦ୍ୱାରା ସେ ପରମ ସତ୍ୟକୁ ହୃଦୟଙ୍ଗମ କରିବା ପାଇଁ ସକ୍ଷମ ହୋଇଯାଏ । ସାଧନାର ସର୍ବୋଚ୍ଚ ସୋପାନରେ ଏହି ଜ୍ଞାନପ୍ରାପ୍ତିର ଫଳରେ ସେ ବ୍ରହ୍ମାତ୍ମୈକ୍ୟଭାବର ଉପଲବ୍ଧି କରେ । ଏହି ଅଦ୍ୱୈତାବସ୍ଥାକୁ ବର୍ଣ୍ଣନା କରିବାକୁ ଯାଇ କବୀର କହନ୍ତି –

କାରାଦ ଲିଖୈ ସୋ କାଗାଦୀ କୀ ବ୍ୟୋହାରୀ ଜୀବ,
ଆତମ ଦ୍ରିଷ୍ଟି କହାଁ ଲିଖୈ ଜିତ ଦିଖୈ ତିତ ପୀବ ।

ଏହି ଜ୍ଞାନାନୁଭୂତିକୁ ବ୍ୟାବହରିକ ଭାଷାରେ ବର୍ଣ୍ଣନା କରାଯାଇ ପାରିବ ନାହିଁ । ତେଣୁ ଏହା ହେଉଛି ଏକ ଅନୁଭବର କଥା ତଥା ସତତ ଆନନ୍ଦିତ ହୋଇ ରହିବାର ପୂର୍ଣ୍ଣାବସ୍ଥା । ଏଣୁ ଏ ସମ୍ବନ୍ଧରେ କବୀର କହନ୍ତି –

କହତ କବୀର କଛୁ କହତ ନ ଆବୈ,
ପରଚୈାଁ ବିନା ମରମ କୋ ପାବୈ ।

କବୀରଙ୍କ ମତରେ ଯେଉଁଠି ଜ୍ଞାନ ଅଛି ସେଠାରେ ଧର୍ମ ଅଛି । ଯେଉଁ ବ୍ୟକ୍ତିର ଜୀବନରେ ଜ୍ଞାନ-ପିପାସା ନାହିଁ, ଯେ ଜ୍ଞାନ-ଚର୍ଚ୍ଚା କରିନାହିଁ, ତା'ର ଜୀବନ ନିରର୍ଥକ ।

ବାବରେ ତୈଁ ଜ୍ଞାନ ବିଚାରୈଁ ନ ପାୟା,
ବିରଥା ଜୀବନ ଗବାୟା ।

କବୀର ଶାସ୍ତ୍ର-ଜ୍ଞାନର ବିରୋଧୀ ଥିଲେ । ତେଣୁ ସେ ତାଙ୍କର ସମସ୍ତ ଶାସ୍ତ୍ରଜନିତ ପୁସ୍ତକଗୁଡ଼ିକ ପାଣିରେ ଭସାଇ ଦେଇଥିଲେ । ସେ ଭାଷାର ପଚାଶଟି ଅକ୍ଷରକୁ ସ୍ୱୀକାର କରୁଥିଲେ ମଧ୍ୟ କେବଳ 'ରାମ' ଶବ୍ଦରେ ହିଁ ଧ୍ୟାନ କରୁଥିଲେ ।

କବୀରା ପଢ଼ିବା ଦୂର କରୀ ପୁସ୍ତକ ଦେହୁ ବହାଇ,
ବାତୂଳ ଅକ୍ଷର ସୋଧିକେ ରରାଇ ମମାଇ ଚିତ୍ତ ଲାଇ ।

ଶାସ୍ତ୍ରଜ୍ଞାନ ହିଁ ସବୁ ଦୁଃଖକୁ ସୃଷ୍ଟି କରେ । ତେଣୁ ସେ କହିଲେ,

ପଢ଼ାସୁନା ଶୀଖ ସଭି, ମିଟୀ ନ ସାଂସେ ଶୂଳ,
କହେ କବୀର କରେ କହୁନ, ୟହ ସବ ଦୁଃଖ କା ମୂଳ ।

ସେ ଗଭୀର ଜ୍ଞାନର ଅଧିକାରୀ ଥିଲେ। ପାରମ୍ପରିକ ଶାସ୍ତ୍ର-ଶିକ୍ଷାର ବିରୋଧୀ ହୋଇଥିବାରୁ ଈଶ୍ୱରୀୟ ଜ୍ଞାନର ପ୍ରାପ୍ତି ପାଇଁ ସେ ଆଧ୍ୟାତ୍ମିକ ଅନୁଭବ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ –

ପୋଥି ପଢ଼ ପଢ଼ ଜଗ ମୁଆ ପଣ୍ଡିତ ଭୟା ନ କୋୟ,
ଢାଇ ଅଛର ପ୍ରେମକା ପଢ଼େ ସୋ ପଣ୍ଡିତ ହୋୟ।

**ଭକ୍ତି**

ଭୀମଭୋଇଙ୍କ ମତରେ ଭକ୍ତି ସାଧନା ହେଉଛି ଭକ୍ତଙ୍କ ସାଧନା ଏହାକୁ ସେ ନିଷ୍କାମଭକ୍ତି ବୋଲି କହନ୍ତି। ଭକ୍ତି ହେଉଛି ଏକ ଭାବ ଯେଉଁଥିରେ ଭକ୍ତ ପରମେଶ୍ୱରଙ୍କ ସ୍ୱରୂପକୁ ଏକାନ୍ତ ଭାବରେ ଚିନ୍ତନ, ମନନ ଓ କର୍ମ କରିଥାଏ। ପରମେଶ୍ୱର ଏକ ସିଦ୍ଧାନ୍ତ ତତ୍ତ୍ୱ ନୁହେଁ ବରଂ ଏକ ଜୀବନ୍ତ ତତ୍ତ୍ୱ। ତେଣୁ ଭକ୍ତ ଓ ଭଗବାନଙ୍କ ସମ୍ବନ୍ଧ ଏକ ଅନନ୍ୟ ସମ୍ବନ୍ଧ। ଯଦିଓ ଶୂନ୍ୟପୁରୁଷ ଅନାଦି, ଅଲେଖ, ଅଣାକାର, ଅରୂପ ସେ ଭକ୍ତ ନିମିତ୍ତ ରୂପରେ ପ୍ରକାଶିତ ହୁଅନ୍ତି। ଅବ୍ୟକ୍ତ ପୁରୁଷ ଏକ ପ୍ରେମମୟ ଏବଂ କରୁଣାମୟ ପୁରୁଷ ହୋଇଯାଆନ୍ତି। ଅଲେଖ ଭକ୍ତି ସରଳ ଓ ସହଜ ଜଣାପଡୁଥିଲେ ମଧ୍ୟ ଏହି ମାର୍ଗଟି ଅତ୍ୟନ୍ତ କଠିନ କାରଣ ଯେଉଁ ବ୍ୟକ୍ତି ତାର ସମସ୍ତ କିଛି ପରମେଶ୍ୱରଙ୍କଠାରେ ସମର୍ପଣ କରିଦିଏ ଏବଂ ତାଙ୍କ ପ୍ରତି ଅଗାଧ ନିଷ୍ଠା ଥାଏ ସେହିଭଳି ସାଧକ ଅତି ବିରଳ।

ଅଲେଖ ଭକତି କେହି ନ ପାରନ୍ତି, କୋଟିକେ ଗୋଟିଏ ସାର।
ଯେହୁ ଅଛ କେହୁ ସମର୍ଥ ନୁହନ୍ତି ଶୁଦ୍ଧ ମନରେ ବିଚାର।[୪୧]

ସାଧକ ଯେତେବେଳେ ଜାଣିପାରେ ଯେ ଶୂନ୍ୟ ପୁରୁଷ ହେଉଛନ୍ତି ସର୍ବ-ଶକ୍ତିମାନ୍ ଏବଂ ଅସୀମ କରୁଣାର ପ୍ରତୀକ, ସେତେବେଳେ ସେ ନିଜର ସିଦ୍ଧି ନିମିତ୍ତ ନିଜର ଉଦ୍ୟମ ବା ଅନ୍ୟର ସହାୟତା ଉପରେ ନିର୍ଭର ନ କରି ସେ ନିଜକୁ ଏବଂ ନିଜର ସମସ୍ତ କିଛି ପ୍ରଭୁଙ୍କଠାରେ ସମର୍ପଣ କରିଦିଏ। ପ୍ରକୃତ ଭକ୍ତ ହେବାପାଇଁ ସେ ନିଜର ଅହଂକାର ଓ କର୍ତ୍ତାଭାବକୁ ତ୍ୟାଗ କରିଦିଏ।

ସମର୍ପି ପିଣ୍ଡ ପରାଣ ଦାରା ସୁତ ବିତ୍ତ ଧନ,
ଧରି ମତ ଉଦାସୀନ ନିଷ୍କାମ ମନରେ ହୋ।[୪୨]

କେବଳ ପରମେଶ୍ୱରଙ୍କଠାରେ ସବୁକିଛି ସମର୍ପଣ କରିବା ଯଥେଷ୍ଟ ନୁହେଁ, ନିଷ୍କାମ ଭକ୍ତ ହେବାପାଇଁ ତାଙ୍କ ପ୍ରତି ଅଗାଢ଼ ପ୍ରୀତି ଥିବା ଆବଶ୍ୟକ।

ଭୀମଭୋଇ କହନ୍ତି ଯେ ଜ୍ଞାନ ବିନା ଭକ୍ତି ଅସମ୍ଭବ। ଅଲେଖ ଭକ୍ତ ହେବା ନିମିତ୍ତ ତା'ର ଜ୍ଞାନ ଥିବା ଆବଶ୍ୟକ ଯେ ଅଲେଖ ପୁରୁଷ ସର୍ବବ୍ୟାପୀ ଏବଂ ସମସ୍ତ ଘଟ ଓ ସୃଷ୍ଟି ତାଙ୍କ ଦ୍ୱାରା ସୃଷ୍ଟ। ତେଣୁ ବ୍ରହ୍ମଜ୍ଞାନୀ ସ୍ୱତଃ ଭକ୍ତ ହୋଇଯାଏ। ତେଣୁ ସଦ୍‌ଜ୍ଞାନରୁ ନିଷ୍କାମ ଭକ୍ତିର ଉଦ୍ରେକ ହୁଏ। ଏହାକୁ ବୁଝାଇବାକୁ ଯାଇ ଭୀମଭୋଇ କହନ୍ତି –

କେଉଁ ଠାବରେ ନାହିଁ ସବୁଠାରେ ଥାନ୍ତି,
ଆତ୍ମଜ୍ଞାନୀ ଭକ୍ତକୁ ସେ ଦୃଶ୍ୟ ହୋଇଛନ୍ତି,
ଏକାକ୍ଷର ପଥ ଚିହ୍ନି ଭଜୁଛନ୍ତି ବ୍ରହ୍ମଜ୍ଞାନୀ।[୪୩]

ଜ୍ଞାନମାର୍ଗରେ ସେ ପରମସତ୍ତାକୁ ଜାଣେ, ଭକ୍ତିମାର୍ଗରେ ଦ୍ୱୈତଭାବ ଦେଖାଯାଏ ଭକ୍ତ ଓ ଭଗବାନ ମଧ୍ୟରେ। ଭୀମଭୋଇଙ୍କ ପ୍ରକୃଷ୍ଟ ସାଧନା ମାର୍ଗ ହେଉଛି ଜ୍ଞାନ-ମିଶ୍ରା ଭକ୍ତି ଯେଉଁଥିରେ ଭକ୍ତ ନିଜର ସୃଷ୍ଟ-ଚେତନାର ଭଗବାନ ନିଜର ଈଶ୍ୱରତ୍ୱକୁ ଭୁଲିଯାଆନ୍ତି। ଈଶ୍ୱର ନିଜର ଭକ୍ତକୁ ନିଜର ଜୀବନ ଓ ପ୍ରେମ ଭାବରେ ଗ୍ରହଣ କରନ୍ତି।

ଏମନ୍ତ ବୋଲନ୍ତି ଅଲେଖ ପୁରୁଷ
ନିଷ୍କାମ ଭକ୍ତକୁ ଚାହିଁ,
ତୋହ ମୋହ ବାବା ଯେବଣ ପୀରତି
ତ୍ରିଭୁବନେ ଜଣା ନାହିଁ।[୪୪]

ଯେତେବେଳେ ଭକ୍ତ ତାହାର ସାଧନାର ଶୀର୍ଷ ସୋପାନରେ ପହଞ୍ଚିଯାଏ ସେତେବେଳେ ଜ୍ଞାନ ଓ ଭକ୍ତି, ସଗୁଣ ଓ ନିର୍ଗୁଣ ମଧ୍ୟରେ କୌଣସି ପ୍ରଭେଦ ରହେ ନାହିଁ। କେବଳ ଅଲେଖ ପୁରୁଷ ନିଜ ସ୍ୱରୂପରେ ପ୍ରକାଶିତ ହୁଅନ୍ତି।

କବୀର ମଧ୍ୟ ଭକ୍ତିଯୋଗକୁ ସମସ୍ତ ସାଧନାପଥ ମଧ୍ୟରେ ଶ୍ରେଷ୍ଠ ପଥ ବୋଲି କହନ୍ତି। ତାଙ୍କ ମତାନୁସାରେ ଯେଉଁ ବ୍ୟକ୍ତିଠାରେ ଭକ୍ତିଭାବ ଉଦୟ ହୁଏ ନାହିଁ,

ତା'ର ଜୀବନ ବ୍ୟର୍ଥ ଏବଂ ଜନ୍ମ ହେବା ମାତ୍ରେ ମୃତ୍ୟୁ ହିଁ ତା' ପାଇଁ ଶ୍ରେୟଷ୍କର। ପ୍ରଭୁ ପ୍ରୀତି-ଅନୁଭୂତି ଅନିର୍ବଚନୀୟ। ତେଣୁ ତାକୁ ବ୍ୟକ୍ତ କରିବା ସମ୍ଭବ ନୁହେଁ।

"ଅକଥ କହାନୀ ପ୍ରେମକୀ କଛୁ କହି ନ ଜାଇ।"

ଏଠାରେ କବୀର ସତର୍କ କରାଇ ଦେଇଛନ୍ତି ଯେ ପ୍ରଭୁଙ୍କ ପ୍ରତି ପ୍ରେମ ଏତେ ସରଳ ନୁହେଁ। ଯେଉଁ ଭକ୍ତ ନିଜର ପତ୍ନୀ, ସନ୍ତାନ, ସମ୍ପତ୍ତି ଏବଂ ନିଜକୁ ସମ୍ପୂର୍ଣ୍ଣ ଭାବେ ସମର୍ପଣ କରିପାରେ ସେ ଏହି ପ୍ରେମାସ୍ୱାଦନ କରିପାରେ –

ପ୍ରେମ ପିୟାଲା ଯୋ ଦୀୟା, ସୀସ ଦଛିଣା ଦେୟ,
ଲୋଭୀ ସିସ ନ ଦେି ସକେ, ନାମ ପ୍ରେମକା ଲେୟ।

ନିଜର ଭକ୍ତିକୁ କବୀର 'ଭାବ-ଭକ୍ତି' ନାମରେ ନାମିତ କରିଛନ୍ତି ଯାହାଦ୍ୱାରା ଭକ୍ତ ଅସମ୍ଭବକୁ ସମ୍ଭବ ଭାବରେ ପରିଣତ କରିପାରେ। ତେଣୁ ସେ ସ୍ପଷ୍ଟ ଭାବରେ କହିଛନ୍ତି –

ଜୋ ଜନ ଭାବ ଭଗତି କୁଛ ଜାନେ, ଅଚରଜ କାହେ।

ତେଣୁ କବୀରଙ୍କ ମତରେ ଭାବ-ଭକ୍ତି ହେଉଛି ସର୍ବୋତ୍କୃଷ୍ଟ ଭକ୍ତି। ଏହି ଭକ୍ତିରେ ଧର୍ମୋପଦେଶ, ତର୍କ-ବିତର୍କ, ଜ୍ଞାନ-ଚର୍ଚ୍ଚା ଆଦି ନିରର୍ଥକ। ଭାବ-ଭକ୍ତି ଦ୍ୱାରା ଭଗବତ୍-ପ୍ରାପ୍ତି ସମ୍ଭବପର।

କଥଣୀଁ ବଜଣୀଂ ସବ ଜଞ୍ଜାଳ,
ଭାବ-ଭଗତି ଔର ରାମ ନିରାଳ।

କବୀର ନିଜ ସ୍ୱରୂପକୁ ହୃଦୟଙ୍ଗମ କରି ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ ଉଠିଛନ୍ତି ଏବଂ ନିଜ ସ୍ୱରୂପକୁ ଅନୁଭବ କରିପାରୁଥିବା ଭକ୍ତକୁ ଶ୍ରେଷ୍ଠ ଭକ୍ତ ଭାବରେ ଅଭିହିତ କରିଛନ୍ତି –

ଅପନେଁ ମେଁ ରଙ୍ଗୀ ଅପନପୌ ଜାନୂଁ,
ଜିହି ରଙ୍ଗ କାନି ତାହି କୂଁ ମାନୂଁ।

ଏଥିରେ ଭକ୍ତର ଭାବ ଏବ ଭଗବତ୍‌ସ୍ୱରୂପ ଏକାକାର ହୋଇଯାଆନ୍ତି। ଏଥିରେ ଭକ୍ତ ଓ ଭଗବାନ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ।

ଅବ ହମ ତୁମ ଏକ ହୟେ ହରି,
ଏକୈ ଦେଖତି ମନ ପତିୟାରି।

ହରି-ପ୍ରେମ ସାଧନାର ଶୀର୍ଷରେ ପହଞ୍ଚି ସାଧକ ପ୍ରେମର ଭକ୍ତି ସାତ୍ତ୍ୱିକ ଏବଂ ସାର୍ବଭୌମିକ ହୋଇଯାଏ ଯଦ୍ୱାରା ତା' ମନରେ ସମଦର୍ଶୀ ଭାବର ଉଦୟ ହୁଏ। ସର୍ବତ୍ର ତାର ପ୍ରିୟତମ ବ୍ୟାପ୍ତ ବୋଲି ଜାଣି ସେ ସମସ୍ତଙ୍କ ପ୍ରତି ପ୍ରେମଭାବ ପ୍ରଦର୍ଶନ କରେ। ସମଦର୍ଶୀ ଭକ୍ତ ଏବଂ ପ୍ରେମ-ଭକ୍ତିର ଅନୁଦାନ ହେଉଛି ନରହରି-ଦର୍ଶନ। ତେଣୁ କବୀର କହନ୍ତି –

ଅପାପର ସମଚୀନିୟେ, ଦୀସୈ ସରବ ସମାଁନ।
ଇହିପଦ ନରହରି ଭେଟିୟେ, ତୁ ଛାଣ୍ଡି କପଟ ଅଭିମାନ।।

କବୀରଙ୍କ ସ୍ୱଷ୍ଟ ମତ ଯେ ସମସ୍ତ ଶକ୍ତି ସାମର୍ଥ୍ୟ ଓ ସମୃଦ୍ଧିର ସ୍ରଷ୍ଟା ହେଉଛନ୍ତି ପ୍ରଭୁ। ଅଜ୍ଞାନୀ ଏହାକୁ ବୁଝି ନ ପାରି ସମୃଦ୍ଧିର ଅନୁଧାବନ କରେ। କିନ୍ତୁ ନିଷ୍କାମ ଭକ୍ତ ଯେ ପ୍ରଭୁଙ୍କୁ ନିରନ୍ତର ସ୍ମରଣ କରେ, ପ୍ରଭୁ ତା'ର ଅନୁଧାବନ କରନ୍ତି।

ପ୍ରଭୁତାକୋ ସବ କୋଇ ଭଜୈ, ପ୍ରଭୁକୋ ଭଜୈନା କୋଇ,
କହ କବୀର ପ୍ରଭୁ କୋ ଭଜୈ, ପ୍ରଭୁତା ଚେରୀ ହୋଇ।

ଏହାକୁ ଅନ୍ୟ ଭାବରେ ସ୍ୱଷ୍ଟ କରିବାକୁ ଯାଇ କବୀର କହନ୍ତି ଯେ ଯେଉଁ ସମୟରେ ତାଙ୍କ ମନ ଗଙ୍ଗାଜଳ ଭଳି ନିର୍ମଳ ହୋଇଥାଏ ପ୍ରଭୁ ତାଙ୍କୁ କବୀର, କବୀର ବୋଲି ତାଙ୍କ ପଛରେ ଚାଲିଥାନ୍ତି।

କବୀର ମନ ନିର୍ମଳ ଭୟା
ଜୈସା ଗଙ୍ଗା ନୀର,
ତବ ପାଛି ଲଗ ହରି ଫିରୈ
କହତ କବୀର, କବୀର।

## ନାମ-ତତ୍ତ୍ୱ

ଭାରତୀୟ ଆଧ୍ୟାତ୍ମିକ ସାଧନାରେ ନାମତତ୍ତ୍ୱର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଯାହାକି ସମସ୍ତଙ୍କ ପାଇଁ ଆଧ୍ୟାତ୍ମିକପୂର୍ଣ୍ଣତା ନିମିତ୍ତ ଦ୍ୱାର ଉନ୍ମୁକ୍ତ କରିଥାଏ। 'ନାମ'

ଦ୍ୱାରା ହିଁ ମନୁଷ୍ୟ ଏହି ସଂସାରରୁ ମୁକ୍ତ ହୋଇଥାଏ । ଯଦିଓ ଭୀମଭୋଇ ଅଲେଖ ପୁରୁଷଙ୍କୁ 'ଅନାମ' ବୋଲି କହନ୍ତି ତଥାପି ତାଙ୍କ ମତରେ ନାମର ଶରଣ ହିଁ ସର୍ବୋତ୍ତମ ଧର୍ମ । ତେଣୁ ସମସ୍ତଙ୍କ ପ୍ରତି କରୁଣା ଭାବ ରଖି ନାମ-ସ୍ମରଣ କର ।

ନାମରେ ଶରଣ ଯାଅ, ଜୀବ ପ୍ରତି ଦୟା ବହ,
ଏ ଧର୍ମରୁ ସାର ନାହିଁ ନା ସଂସାରେ ।[୪୫]

ମହିମା ଅବର୍ଣ୍ଣନୀୟ, ତାଙ୍କ ସ୍ୱରୂପ ଏତେ ମହାନ୍ ଯେ ତାଙ୍କୁ ହୃଦୟଙ୍ଗମ କରିବାର ଏକମାତ୍ର ପଥ ହେଉଛି ମହିମା ନାମ ଯାହା ହେଉଛି ସାକ୍ଷାତ୍ ଧର୍ମ । ଭୀମଭୋଇ ଏହା ମଧ୍ୟ କହନ୍ତି ଯେ ନାମ ହେଉଛି ଅମୂଲ୍ୟ ଅଳଙ୍କାର ଯାହାକି ସର୍ବଶକ୍ତିମାନ୍ । ତେଣୁ ନାମ ସାଧନାରେ ପ୍ରବୃତ୍ତ ହେଲେ ପଥର ପାଣି ହୁଏ, ଶୁଷ୍କ କାଷ୍ଠ ପଲ୍ଲବିତ ହୁଏ ଏବଂ ମୂର୍ଖ ମଧ୍ୟ ପଣ୍ଡିତ ହୋଇଯାଇଥାଏ ।

ନାମକୁ ଭଜିଲେ ଚିହ୍ନି, ପାଷାଣ ହୁଅନ୍ତି ପାଣି...
ମୂର୍ଖ ହୁଅନ୍ତି ପଣ୍ଡିତା, ପାଆନ୍ତି ଜ୍ଞାନ ହେତୁ ଚେତା ।[୪୬]

ସେ ସମସ୍ତଙ୍କୁ ବାରମ୍ବାର ନିବେଦନ କରି କହନ୍ତି ଯେ ତୁମେ ଯେ କୌଣସି କାର୍ଯ୍ୟରେ ନିୟୋଜିତ ହୁଅ, କିନ୍ତୁ ଭକ୍ତି ଚିତ୍ତରେ ମହିମା ନାମକୁ ସ୍ମରଣ କଲେ ତୁମେ ଆଧ୍ୟାତ୍ମିକ ପୂର୍ଣ୍ଣତା ପାଇବ ।

ପୁଣି କହୁଅଛୁ ଏ ପୁରୁଷମାନେ,
ମହିମା ନାମକୁ ଜପ,
ବାଡ଼ିବୃତ୍ତି କରୁଥାଅ ପଛେ
ହୃଦ ପଦ୍ମେ ନାମ ରଖ ।[୪୭]

ମହିମା ନାମ ହେଉଛି ଏକମାତ୍ର ନାମ ଯାହାକି ମୁକ୍ତିଦାତା ଏବଂ ଚାରିଯୁଗରେ ମହତ୍ତ୍ୱପୂର୍ଣ୍ଣ ଏବଂ ମହିମା ପ୍ରକାଶିତ ହେଲେ ସମସ୍ତେ ଅମର ହେବେ ।

ଶୁଣିଲୁ କି ନିରାକାର ମହିମାଙ୍କ ରୀତି,
ମହିମା ନାମଟି ଯେହୁ ଜୀବର ମୁକତି ।
ମହିମା ନାମଟି ଯେହୁ ଚାରି ଯୁଗେ ସାର,
ମହିମା ପ୍ରକାଶ ହେଲେ ହୁଅନ୍ତି ଅମର ।[୪୮]

କବୀର ମଧ୍ୟ କୁହନ୍ତି ଯେ ନାମ ହେଉଛି ଜୀବନ-ଶକ୍ତି ଯାହା ମାଧ୍ୟମରେ ଭକ୍ତ ନିଜ ଲକ୍ଷ୍ୟରେ ପହଞ୍ଚିପାରେ । ଭୀମଭୋଇଙ୍କ ଭଳି କବୀରଙ୍କ ମତରେ ନାମ ହେଉଛି ସର୍ବଦାତା ଏବଂ ତାଙ୍କ ମହିମା ଅସୀମ । ନାମ-ଜପ ଓ ନାମ-ସ୍ମରଣ ଦ୍ୱାରା ମନୁଷ୍ୟ ସବୁ ଦୁର୍ଗୁଣରୁ ମୁକ୍ତ ହୋଇଥାଏ । ତେଣୁ ସେ ସମସ୍ତଙ୍କୁ ଆବେଦନ କରିଛନ୍ତି ଅବିଦ୍ୟାକୁ ତ୍ୟାଗ କରି ନାମକୁ ନିରନ୍ତର ସ୍ମରଣ କର ।

କହତ କବୀର ସୁନହରେ ପ୍ରାଣୀ
ଛଡ଼ାଇ ମନକା ଭ୍ରମ,
କେବଳ ନାମ ଜପହୁରେ
ପ୍ରଭୁ କା ଏକ ହି ଶରଣ ।

କବୀରଙ୍କ ନିଷ୍ଠା ନାମ-ସାଧନା ପ୍ରତି ରହିଛି । ଯେଉଁଠାରେ ନାମ-ସାଧନା ରହିଛି ସେହିଠାରେ ପ୍ରଭୁ ନିବାସ କରନ୍ତି । ଯେଉଁ ବ୍ୟକ୍ତି ଅଗାଧ ଭକ୍ତି ଓ ପ୍ରେମରେ ନାମ-ସ୍ମରଣ କରେ, ତାର ବ୍ୟକ୍ତିତ୍ୱରେ ଅଦ୍ଭୁତ ପରିବର୍ତ୍ତନ ପରିଲକ୍ଷିତ ହୁଏ । ତା' ଓଠରୁ ମୋତି (ପ୍ରୀତି ଶବ୍ଦ) ଝରେ ଏବଂ ତା' ହୃଦୟ ହୀରା ଭଳି ଚମକେ, ଯାହାକି ଆଉ କିଛି ନୁହେଁ କେବଳ ପ୍ରଭୁଙ୍କ ମହିମା ପ୍ରକାଶିତ ହେବା ।

କବୀର ହରିକା ନାମ ସୁନ, ପ୍ରୀତି ରହେ ଏକତାର,
ତନ ମୁଖ ସେ ମୋତି ଝରେ, ହୀରା ଅନ୍ତ ନ ପାର ।

କବୀରଙ୍କ ମତରେ ମାନବ-ଜୀବନର ଆୟୁଷ ହେଉଛି ସ୍ୱଳ୍ପ । କୌଣସି ସୂଚନା ନ ଥାଇ ମୃତ୍ୟୁ ଆସିପାରେ । ତେଣୁ ମାନବ ପାଇଁ ଯେତିକି ସମୟ ମିଳିଛି ତାକୁ ଅବହେଳା ନ କରି ନାମ-ସ୍ମରଣ ସର୍ବଦା କରିବା ବିଧେୟ ।

କବୀର ନିର୍ଭୟ ରାମ ଭଜ
ଦବ ଲଗି ଦୀଓ୍ୱାଇ ବାତି,
ତେଲ ଘଟ୍ୟା ବାତି ବୁଝେ
ତବ ସୋବଇ ଦିନ ରାତି ।

ସେ କହନ୍ତି ଯେ ଯେଉଁମାନେ ନାମ-ସାଧନା କରନ୍ତି, ସମସ୍ତେ ସମାନ । କେଉଁ ପ୍ରକାର ବସ୍ତୁ ବାସନ ମଧ୍ୟରେ ଅଛି ତାହା ହେଉଛି ମହତ୍ତ୍ୱପୂର୍ଣ୍ଣ, ବାସନର

ଆକାର, ପ୍ରକାର ମୁଖ୍ୟ ନୁହେଁ। ତେଣୁ ମାନବ ମଧ୍ୟରେ ତାଙ୍କର ରୂପ, ରଙ୍ଗ ଅପେକ୍ଷା ତାଙ୍କ ନାମ-ସ୍ମରଣ ହେଉଛି ସାରତତ୍ତ୍ୱ।

ସର୍ବୈଇ ହମରେ ଏକ ହୈ, ଜୋ ସୁମିରେ ହରିନାମ ।
ବସ୍ତୁ ଲହୀ ପହଚାନ କେ, ବାସନ ସେ କ୍ୟା କାମ ।।

କବୀରଙ୍କ ମତରେ ନାମ-ସ୍ମରଣ ଅନ୍ୟ ସାଧନା ତୁଳନାରେ ହେଉଛି ସାଧନାର ସର୍ବୋତ୍ତମ ସ୍ଥାନ ଯାହାକି ପ୍ରଭୁଙ୍କ କୃପା ଓ ସୁରକ୍ଷା ପ୍ରଦାନ କରିଥାଏ। ତେଣୁ ପ୍ରତି ଶ୍ୱାସରେ ପ୍ରଭୁଙ୍କ ନାମ-ସ୍ମରଣ କର, ଯଦ୍ୱାରା ତୁମେ ଜୀବନ୍ମୁକ୍ତ ହୋଇପାର।

"ସାଂସ ସାଂସ ସୁମରନ କରଉ, ଅରଉ ଜତନ କଛୁ ନାହିଁ।"

## ଗୁରୁତତ୍ତ୍ୱ

ସାଧନାରେ ସଦ୍‌ଗୁରୁର ଆବଶ୍ୟକତା ଅପରିହାର୍ଯ୍ୟ। ଗୁରୁ କେବଳ ଶିକ୍ଷକ ନୁହନ୍ତି, ସେ ହେଉଛନ୍ତି ତତ୍ତ୍ୱ ଦ୍ରଷ୍ଟା, ବ୍ରହ୍ମଜ୍ଞାନୀ, ସିଦ୍ଧିଦାତା, ଯେ କି ଆତ୍ମଜ୍ଞାନ ନିମିତ୍ତ ଦିଗ୍‌ଦର୍ଶନ ଦେଇ ଜିଜ୍ଞାସୁର ଭ୍ରମକୁ ଦୂରୀକରଣ କରନ୍ତି। ତେଣୁ ଉଭୟ ଭୀମଭୋଇ ଓ କବୀର ଯେ କୌଣସି ବ୍ୟକ୍ତିକୁ ଗୁରୁ ଭାବରେ ଗ୍ରହଣ ନ କରି ଏପରି ଗୁରୁଙ୍କ ସନ୍ଧାନ କରିବା ପାଇଁ କହନ୍ତି ଯେ ଲୋଭ, ମୋହରୁ ମୁକ୍ତ ଏବଂ ସଂସାରରେ ଥାଇ ମଧ୍ୟ ସଂସାର ପ୍ରତି ଅନାସକ୍ତ। ତେଣୁ କବୀର କହନ୍ତି –

ସଦ୍‌ଗୁରୁ ଐସା କୀଜିୟେ, ଲୋଭ, ମୋହ, ଭ୍ରମ ନାହିଁ।

ଯଦି ସାଧକ ଏପରି ଗୁରୁଙ୍କ ସନ୍ଧାନ ପାଏ ତାହାହେଲେ ଶିଷ୍ୟ ଏ ସଂସାର ମାୟା ଏବଂ ସୁଖ, ଦୁଃଖରୁ ମୁକ୍ତ ହୋଇଯାଏ।

ଗୁରୁ ମିଲା ଜାନିୟେ, ମିଟେ ମୋହ ତନ ତାପ।
ହରଷ ଶୋକ ବ୍ୟାପେ ନହିଁ, ତବ ଗୁରୁ ଆପେ ପାପ।।

ଗୁରୁଙ୍କ କଠିନ ଶୃଙ୍ଖଳ ଏବଂ ଶିଷ୍ୟଙ୍କ ପ୍ରତି ତାଙ୍କ ସ୍ନେହ ବର୍ଣ୍ଣନା କରିବାକୁ ଯାଇ କବୀର କହନ୍ତି ଯେ ଶିଷ୍ୟ ଏକ କଞ୍ଚା ମାଟି ପାତ୍ର ଭଳି। କୁମ୍ଭାର ଯେପରି ପାତ୍ର ଉପରେ ପ୍ରହାର କରି ଭିତରେ ଏକ ହାତ ଦ୍ୱାରା ତାକୁ ସୁରକ୍ଷିତ କରିଥାଏ, ସେହିପରି

ଭାବରେ ଗୁରୁ କଠିନ ଶିକ୍ଷା ଦ୍ୱାରା ଶିଷ୍ୟର ସମସ୍ତ ଦୁର୍ଗୁଣକୁ ବିନାଶ କରି, ସମସ୍ତ ଦୁଃଖରେ ତାକୁ ସୁରକ୍ଷା ଦେଇଥାଏ।

ଗୁରୁ କୁମ୍ଭାର ଶିଷ୍ୟ କୁଁଭ ହୈ, ଗଢ଼ ଗଢ଼ କା ଢୈ ଖୋଟ।
ଅନ୍ତର ହାତ ସହାରା ଦୈ, ବାହାର ବାହାର ଚୋଟ ॥

ଗୁରୁଙ୍କ ସଦ୍‌ଜ୍ଞାନ ଦ୍ୱାରା ଶିଷ୍ୟ ଏଭଳି ଜ୍ଞାନ କ୍ଷଣକ ମଧ୍ୟରେ ପାଇଥାଏ ଯାହା ତାହାର ଅସଂଖ୍ୟ ଜୀବନ କାଳ ମଧ୍ୟରେ ପ୍ରାପ୍ତ ହୋଇନଥାଏ।

ଭେଦୀ ଲିୟା ସାଥ କରି, ଦୀହ୍ନା ବସ୍ତୁ ଲଖାୟ।
କୋଟୀ ଜନମକା ପନ୍ଥୁଥା, ପଲମେ ପହୁଁଚା ଯାୟ ॥

ସଦ୍‌ଗୁରୁଙ୍କ କୃପା ବିନା ମନୁଷ୍ୟର ଅସତ୍ ପ୍ରକୃତିର ବିନାଶ ହେବ ନାହିଁ।

ସଦ୍‌ଗୁରୁ ବିନା ନ ଛଟି ହୈ, ମନ ମନସା କା ବାତ।

ଭୀମଭୋଇ ମହିମା ସ୍ୱାମୀଙ୍କୁ ନିଜ ଗୁରୁ ଭାବରେ ସ୍ୱୀକାର କରିଥିଲେ। ତାଙ୍କ ମତରେ ଗୁରୁ ମଣିଷ ନୁହନ୍ତି, ସେ ହେଉଛନ୍ତି ଅଣାକାର, ଅରୂପାନନ୍ଦ, ଅଲେଖ ଏବଂ ଶୂନ୍ୟ। ସେ ତେଣୁ କହନ୍ତି,

ଶ୍ରୀଗୁରୁ କୃପାରୁ ମୋର କବିପଣ,
ବାଳକ ବୟସ ବୁଦ୍ଧି ନାହିଁ ମୋ ଜ୍ଞାନ।[୪୯]

ଯେପରି ପିଣ୍ଡ-ବ୍ରହ୍ମାଣ୍ଡ ଏକ ଏବଂ ଅଭିନ୍ନ, ଗୁରୁ ଏବଂ ଶିଷ୍ୟ ମଧ୍ୟ ସେପରି ଭାବରେ ଏକ ଓ ଅଭିନ୍ନ।

ଗୁରୁ ଶିଷ୍ୟ ଦୁହେଁ ଏକତ୍ୱ ଅଟନ୍ତି,
ଅନ୍ତର ମଣିବ ନାହିଁ।[୫୦]

ଗୁରୁ ଏବଂ ଶିଷ୍ୟ ମଧ୍ୟରେ ସମ୍ପର୍କ ଏପରି ଯେ ସେମାନେ ଗୋଟିଏ ଶରୀରର ଅଙ୍ଗ। ଶିଷ୍ୟ ଯେପରି ଗୁରୁଙ୍କୁ ଭକ୍ତି କରୁଥାଏ, ଗୁରୁ ମଧ୍ୟ ସମ ଭାବରେ ଶିଷ୍ୟଙ୍କ ପ୍ରତି ଭକ୍ତିଭାବ ରଖିଥାନ୍ତି।

ଭଗତ ଅଙ୍ଗଟି ପ୍ରଭୁ ଅଙ୍ଗ ଜାଣ, ଜୀବରୂପେ କରି ବିଜେ।
ଗୁରୁ-ଚରଣକୁ ଶିଷ୍ୟ ଭଜୁଥାଇ, ଶ୍ରୀଗୁରୁ ଶିଷ୍ୟକୁ ଭଜେ।।[୫୧]

ଶ୍ରୀଗୁରୁଙ୍କ ସ୍ୱରୂପ ଏପରି ଯେ ସେ ଅଲେଖ ଭକତ ଉପରେ କୃପା ବର୍ଷା କରିବାପାଇଁ ସର୍ବଦା ଚେଷ୍ଟିତ ସେପରି ଗୁରୁକୃପା ପ୍ରାପ୍ତ କରିବାପାଇଁ ଶିଷ୍ୟ ମଧ୍ୟ ସବୁ ସମୟରେ ବ୍ୟାକୁଳ। ସେମାନଙ୍କ ସମ୍ପର୍କ ଏପରି ଯେ ଉଭୟେ ଏକ ଏବଂ ଅଭିନ୍ନ ପ୍ରାଣ। ତେଣୁ ଭୀମଭୋଇଙ୍କ ଭାଷାରେ –

ଶ୍ରୀଗୁରୁ ଲୋଡ଼ଇ ଦୟା କରିବାକୁ ସେବକ ଲୋଡ଼ଇ ଦୟା,
ବେନିଜନ ତହିଁ ଏକ ପ୍ରାଣ ହୋଇ ନ ଥାଏ ଅନ୍ତରେ ମାୟା।[୫୨]

ଭୀମଭୋଇଙ୍କ ମତରେ ବେଦ ଅଧ୍ୟୟନ ଦ୍ୱାରା ଅମୂଲ୍ୟ ସମୟ ନଷ୍ଟ ନ କରି ସଦ୍‌ଗୁରୁଙ୍କୁ ଖୋଜ ଯେ କି ତୁମର ଆଧାତ୍ମିକ ଅକାଂକ୍ଷାକୁ ପୂର୍ଣ୍ଣ କରିପାରିବେ।

ଚାରି ଶାହାସ୍ର ବେଦ, ନାହିଁ ସେ ଗୁରୁ ପାଦ
ସଦ୍‌ଗୁରୁଙ୍କୁ ଖୋଜ, ବେଦରେ କିସ କାର୍ଯ୍ୟ।[୫୩]

ଶ୍ରୀଗୁରୁଙ୍କୁ ପାଦରେ ସମସ୍ତ କିଛି ସମର୍ପଣ ବିନା ଏ ସଂସାରର ଦୁଃଖ ଶୋକରୁ ମୁକ୍ତି ପାଇବା ପାଇଁ ସମ୍ଭବ ନୁହେଁ।

ଏ ଦୁର୍ଲ୍ଲଭ ତନୁ ଗୁରୁସେବା ବିନୁ,
ବର୍ତ୍ତିବ ସଂସାରେ କେଉଁ ଜଣ।[୫୪]

ଭୀମଭୋଇ ଓ କବୀର ଦାର୍ଶନିକ। ତାଙ୍କ ଲେଖାରେ ଆମେ ତତ୍ତ୍ୱ-ମୀମାଂସା, ଏକ ଧାର୍ମିକ ଚେତନା, ନୈତିକ ଆଦର୍ଶ ଏବଂ ଏକ ଆଦର୍ଶ ସମାଜର ଦୃଷ୍ଟିଭଙ୍ଗୀ ଦେଖିପାରୁ। ସେମାନେ ଏଭଳି ସମୟରେ ଜନ୍ମଗ୍ରହଣ କରିଥିଲେ ଯେତେବେଳେ ସମାଜରେ ମୂଲ୍ୟବୋଧର ଅଧଃପତନ ଘଟିଥିଲା। ସେମାନେ ଏହା ଦେଖି ମର୍ମାହତ ହୋଇଥିଲେ ଏବଂ ଚାହୁଁଥିଲେ ମାନବ-ସମାଜକୁ ଏ ଦୁର୍ଗତିରୁ ମୁକ୍ତ କରିବାପାଇଁ। କଳିକାଳର ଦୁର୍ଦ୍ଦଶା ଭୀମଭୋଇ ନିମ୍ନମତେ ବର୍ଣ୍ଣନା କରିଛନ୍ତି।

ଦିନୁ ଦିନୁ ମହା ଅନର୍ଥ ହେଲାଣି, ଥୟ ନ ରହୁଛି ଦେଖ
ବ୍ରହ୍ମନିନ୍ଦା କରି ମେଳେଛ ହେଲଣି, ତିନି ଭୁବନର ଲୋକ,
ପାପ-ପୁଣ୍ୟକୁ କାହାରି ଭୟ ନାହିଁ, ସମସ୍ତେ ଗଲେଣି ଭାସି।

ଏ ଜଗତରେ କୁକର୍ମର ମାତ୍ରା ଏତେ ହେଲାଣି ଯେ ସାଧୁ, ସନ୍ଥଙ୍କ ସୁରକ୍ଷା ନାହିଁ। ନିଜର ଅସହାୟତାକୁ କହିବାକୁ ଯାଇ କବୀର ଆତୁର ହୋଇଗଲେଣି।

"ବ୍ରହ୍ମାଣ୍ଡରେ ପାପ ଭରା ହୋଇଲାଣି, କେମନ୍ତେ ତରିବି ସ୍ୱାମୀ।"

× × ×

"ସାଧୁ, ସନ୍ଥ କେହି ରହି ନ ପାରିଲେ ଜାଗା ନାହିଁ ନା ମେଦିନୀ।"[୫୫]

ଏସବୁ ଆଚାର ବ୍ୟବହାର କରି ରୂଢ଼ିଗ୍ରସ୍ତ ମଣିଷ ନିଜର ଅଜ୍ଞତା ହେତୁ ଏ ସମସ୍ତ ଅନାଚାରକୁ ସାଦରେ ଗ୍ରହଣ କରୁଥିଲେ। ଏ ଅସତ୍ୟ ଓ ମିଥ୍ୟାଡ଼ମ୍ବର ଦେଖି କବୀର ଓ ଭୀମଭୋଇ ମାନବ ସମାଜର କଳୁଷିତ ଜୀବନକୁ ମୁକ୍ତ କରିବା ଓ ସମାଜକୁ ପତନ ମୁଖରୁ ଉଦ୍ଧାର କରିବା ପାଇଁ ପରଂବ୍ରହ୍ମଙ୍କ କୃପା ଚାହିଁଲେ। ସେ ମଧ୍ୟ ଏଭଳି ପ୍ରାର୍ଥନା କରିଛନ୍ତି ଯେ ମନୁଷ୍ୟକୁ ମୂଲ୍ୟବୋଧର ପତନରୁ ଉଦ୍ଧାର କର ଏବଂ କୌଣସି ମାୟବନ୍ଧନରେ ସେ ବାନ୍ଧି ନ ହୁଅନ୍ତୁ।

ସମ୍ଭାଳ ତୁମର ଜଗତ ଭଗତ ଏ ଧର୍ମରେ ଯେ ଅଛନ୍ତି,
କାହାରି ମନରେ ଛନ୍ଦମାୟା ନ ପଶୁ ନିର୍ମଳ କରାଅ ମତି।[୫୬]

ଭୀମଭୋଇ ମାନବମାନଙ୍କୁ ଶୂନ୍ୟ ଗୁରୁଙ୍କର ସ୍ଥିତି ଓ ପ୍ରକୃତ ଧର୍ମ ବିଷୟରେ ବାରମ୍ବାର ବୁଝାଇ ସେମାନଙ୍କୁ ସତ୍‌ପଥରେ ଯିବା ପାଇଁ ଦିଗଦର୍ଶନ ଦେଇଥିଲେ। କିନ୍ତୁ ମୂଢ଼ ହୋଇଥିବାରୁ ସେମାନେ କିଛି ଗ୍ରହଣ କଲେ ନାହିଁ, ତେଣୁ ଭୀମଭୋଇ ଅତ୍ୟନ୍ତ ଦୁଃଖିତ ଓ ଚିନ୍ତିତ ହୋଇ କହୁଛନ୍ତି:

ବୁଝାଇଲି ଯେତେ ନ ଗଲେ ପରତେ
ଭରସା ନାହିଁ ନା ମୋର,
ଏ ଜଗତ ଜନ ସର୍ବେ ହତଜ୍ଞାନ
ହେଲେଣି ମାଟି ପଥର।[୫୭]

ଅନ୍ୟର ମଙ୍ଗଳ ନିମିତ୍ତ ସେ କେବଳ ନିଜେ ପରାମର୍ଶ ଦେଇନଥିଲେ ବରଂ ସେ ନିଜେ ଏହାକୁ ପ୍ରୟୋଗ କରୁଥିଲେ ଏବଂ କହୁଥିଲେ ଯେ ଏହା ବ୍ୟତୀତ ତାଙ୍କର ଅନ୍ୟ କୌଣସି କାର୍ଯ୍ୟ ନାହିଁ। ପୂର୍ବରୁ ଏହା କରିନଥିବାରୁ ସେ ଦୁଃଖ ଭୋଗୁଛନ୍ତି।

ପ୍ରାଣୀମାନଙ୍କର ଆନନ୍ଦ ମଙ୍ଗଳ ଆଗରେ କି କାର୍ଯ୍ୟ ଅଛି,
ମୋ କର୍ମ କପଟ ମୋତେ ହେଲା କାଳ କାହାକୁ କହିବି କିଛି ।[୫୮]

ମାନବ-ସମାଜର ଦୁଃଖ, କପଟ ତାଙ୍କୁ ବେଦନାସିକ୍ତ କରିଛି । ଏହାକୁ ଅନୁଭବ କରି ସେ ଅତି ଆତୁର ହୋଇ କହୁଛନ୍ତି ଯେ ପ୍ରାଣୀମାନଙ୍କର ଶୋକ, କଷ୍ଟ ସେ ସହି ପାରୁନାହାନ୍ତି ।

ଏକ ଖଣ୍ଡେ ହାଡ଼ ବୁନ୍ଦାଏ ରୁଧିର ଫୁଟେ ମାଉଁସ ଜାଣଇ,
ତେଣୁ କରି ସିନା ପ୍ରାଣୀଙ୍କ ବିକଳ ସହି ନ ପାରଇ ମୁହିଁ ।[୫୯]

ତେଣୁ ସେ ପ୍ରଭୁଙ୍କ ଶରଣରେ ପଶି ଅତି ବିକଳରେ ନିଜର ମନର ଭାବନାକୁ ବ୍ୟକ୍ତ କରି ଏହାର କାରଣ ଜାଣିବା ପାଇଁ ତାଙ୍କ ଶରଣାଗତ ହୋଇଛନ୍ତି ।

ପ୍ରାଣୀଙ୍କ କଷଣ ଭେଦୁଅଛି ମନ ଜୀବନକୁ ମୋର ବାଧେ
ଭୀମ ଅରକ୍ଷିତ କରି ଦଣ୍ଡବତ କାରଣ ମାଗୁଛି ପାଦେ ।[୬୦]

ଭଗବତ୍‌ଙ୍କ ଶରଣାପନ୍ନ ହେବା ପାଇଁ କବୀର ଜାତି-ପ୍ରଥାର ବିରୋଧ କରି କହନ୍ତି ଯେ ସେ ହିନ୍ଦୁ ନୁହନ୍ତି ବା ମୁସଲମାନ ନୁହନ୍ତି, କାରଣ ମଣିଷ ହେଉଛି ପଞ୍ଚତତ୍ତ୍ୱର ଏକ ଖେଳନା ମାତ୍ର । ପ୍ରଭୁଙ୍କ ସଂସାରରେ ମଣିଷର ବିଶେଷ ମହତ୍ତ୍ୱ ନାହିଁ -- ସେ ସଂସାରକୁ ଏକାଟିଆ ଆସେ ଏବଂ ଯାଏ । ନିଜ କର୍ମ ହିଁ ତାକୁ ସଂସାର ବନ୍ଧନରେ ଆବଦ୍ଧ କରାଏ ଏବଂ ନିଷ୍କାମ କର୍ମ ହିଁ ତାକୁ ମୁକ୍ତ କରାଏ ।

କବୀରଙ୍କ ମତରେ ହିନ୍ଦୁ ଓ ମୁସଲମାନମାନେ ଧର୍ମର ପ୍ରକୃତ ତତ୍ତ୍ୱ ନ ବୁଝି ପରସ୍ପର ମଧ୍ୟରେ କଳହ କରିଥାନ୍ତି– ପ୍ରକୃତରେ ସଂସାରରେ ପ୍ରଭୁ ଏକ ଅଟନ୍ତି – ବିଭିନ୍ନ ସଂପ୍ରଦାୟର ଲୋକ ତାଙ୍କୁ ବିଭିନ୍ନ ନାମ ଦେଇଥାନ୍ତି ।

ହିନ୍ଦୁ କହେ ରାମ ମୋହି ପ୍ୟାରା, ତୁରକ କହେ ରହିମାନା ।
ଆପସମେଁ ଦୋଉ ଲରି ଲରି ମୁଏ ମରମ ନ କାହୂ ଜାନା ।।

କବୀରଙ୍କ ମୁଖ୍ୟ ଉଦ୍ଦେଶ୍ୟ ଥିଲା ଜାତିପ୍ରଥାରୂପୀ ବିଷବୃକ୍ଷର ମୂଳୋତ୍ପାଟନ କରିବା । ତେଣୁ ଜାତିପ୍ରଥା ବିରୁଦ୍ଧରେ ତାଙ୍କର ପ୍ରଶ୍ନ ହେଲା –

ତୁମ କତ ବ୍ରାହ୍ମଣ ହମ କତ ଶୂଦ୍ର,
ହମ କତ ଲୋହୁ ତୁମ କତ ଦୂଧ ।

କବୀରଙ୍କ ନିମିତ୍ତ ଆଧ୍ୟାତ୍ମିକ ସାଧନାରେ ଜାତିପ୍ରଥାର କୌଣସି ସ୍ଥାନ ନାହିଁ। ଭଗବାନଙ୍କ ଶରଣାପନ୍ନ ହେବା ପାଇଁ ଯେକୌଣସି ଜାତି ବା କୁଳର ବନ୍ଧନକୁ ସେ ଅସ୍ବୀକାର କରୁଥିଲେ। ତେଣୁ ସେ କହୁଥିଲେ –

ଜାତି ପାନ୍ତି ପୂଛେ ନହୀଁ କୋଇ,
ହରିକୋ ଭଜୈ ସେ ହରି କୋ ହୋଇ।

ଜାତିପ୍ରଥାର ମିଥ୍ୟାତ୍ୱକୁ ଅସ୍ବୀକାର କରି ସେ ଅଦ୍ୱୈତବାଦକୁ ସ୍ୱୀକାର କରି କହନ୍ତି –

ହମ ତୌ ଏକ ଏକ ଏକ କରି ଜାଁନାଁ
ଦୋଇ କହୈ ତନହୀ କୋ ହୋଜଗ,
ଜିନ ନାହିଁନା ପରିରନାଁ।

କେବଳ ଏତିକି ନୁହେଁ, ତତ୍କାଳୀନ ଜାତିଆଣ ମନୋଭାବକୁ ଲକ୍ଷ୍ୟକରି ସେ ଜନସାଧାରଣଙ୍କ ଏହି ଜାତି-ପ୍ରୀତି ପ୍ରତି ତାଚ୍ଛଲ୍ୟ କରି କହିଛନ୍ତି –

ଜାତି ନ ପୂଛୌ ମାଧୁରୀ ପୁଛ ଲୀଜିଏ ଜ୍ଞାନ,
ମୋଲ କର ତଲୱାରକା ପଡ଼ା ରହନେ ଦୋ ମ୍ୟାନ।

ଏହାର ଅର୍ଥ ହେଉଛି ଜାତି ସମ୍ବନ୍ଧରେ ପ୍ରଶ୍ନ ନ କରି ତା'ର ଆତ୍ମଜ୍ଞାନ ସମ୍ବନ୍ଧରେ ପ୍ରଶ୍ନ କର। ଗୋଟିଏ ଖଣ୍ଡାର ମୂଲ୍ୟାୟନ ତାର ଶାଣିତକୁ ଦେଖି କର, କେଉଁଥିରେ ଖଣ୍ଡାଟି ରହିଛି ସେଥିରେ ଧ୍ୟାନ ଦିଅନାହିଁ।

ଭୀମଭୋଇ ମଧ୍ୟ ଜାତି-ପ୍ରଥାର ତୀବ୍ର ବିରୋଧୀ। ଆଧ୍ୟାତ୍ମିକତାରେ ଜାତି, କୁଳ, ସଂପ୍ରଦାୟ ଆଦିର କୌଣସି ସ୍ଥାନ ନାହିଁ। ପରଂବ୍ରହ୍ମ ଏକ ଏବଂ ସର୍ବତ୍ର ପରିବ୍ୟାପ୍ତ ହୋଇଛନ୍ତି, ଆମେ ଯେଉଁ ବିଭିନ୍ନ ଜାତି ଦେଖୁ ତାହା ହେଉଛି ଦିବ୍ୟ-ଲୀଳା।

ତିନି ବ୍ରହ୍ମାଣ୍ଡରେ ଲୋଡ଼ିଆସ ତୁମ୍ଭେ
ଏକ ଜନ ଏକ ଜାତି,
ସେହି ସବୁକୁ ଶତଜାତି କରିଛି
ତାହାର ରଚିଲା ପୃଥ୍ୱୀ।[୭୧]

ତେଣୁ ଭୀମଭୋଇ କହୁଛନ୍ତି ବ୍ରାହ୍ମଣ ଓ ଚାଣ୍ଡାଳ ମଧ୍ୟରେ କୌଣସି ପ୍ରଭେଦ କର ନାହିଁ। ତାର ଜାତି, ଗୋତ୍ର ଆଦି କିଛି ପ୍ରଶ୍ନ କରିବ ନାହିଁ କାରଣ ଏହାର କୌଣସି ଯଥାର୍ଥତା ନାହିଁ।

କି ଅବା ବ୍ରାହ୍ମଣ କି ଅବା ଚାଣ୍ଡାଳ ଅନ୍ୟ ନ କରିବ ଚିତ୍ତେ,
ଜାତି, ଗୋତ୍ରହିଁ ନ ପଚାରିବ କିଛି ହାନିଲାଭ ତାର ଯେତେ।[୬୨]

ଭୀମଭୋଇଙ୍କ ସମତାଭାବ ତତ୍ତ୍ୱ-ମୀମାଂସା ଉପରେ ନିର୍ଭରଶୀଳ। ଅଲେଖ ପୁରୁଷ ସମସ୍ତ ଜାତିରେ ସମଭାବରେ ସ୍ଥିତ। ତେଣୁ ସେ ଶ୍ରୁତିନିଷେଧ ଗୀତାରେ କହୁଛନ୍ତି –

ସଦା ସମ୍ପୂର୍ଣ୍ଣରେ ସମାନ
ତାହାର ନାହିଁ ପାପପୁଣ୍ୟ,
ଜାତି ଅଜାତି ତାର ନାହିଁ
ପୂରିଅଛି ସର୍ବଘଟେ ସେହି।

ଏହି ଅଲେଖପୁର ଭୁବନରେ ବଡ଼ ସାନ କିଛି ନାହିଁ, ତେଣୁ ସମସ୍ତ ଜୀବଙ୍କ ପ୍ରତି ଦୟାଦୃଷ୍ଟି ସମଭାବରେ ରଖ।

ଅଲେଖ ପୁର ଭୁବନ ନହିଁ ତହିଁ ବଡ଼ ସାନ,
ସମାନରେ ଦୟାଦୃଷ୍ଟି ସର୍ବଜୀବରେ।[୬୩]

ପ୍ରଭୁ ଏତେ କରୁଣାମୟ ଯେ ତାଙ୍କ ପାଇଁ ସମସ୍ତେ ସମାନ। ପୁରୁଷ ବା ସ୍ତ୍ରୀ, ଉଚ୍ଚ କିମ୍ବା ନୀଚ ମଧ୍ୟରେ କୌଣସି ପ୍ରଭେଦ ନାହିଁ। ବ୍ରହ୍ମନିରୂପଣ ଗୀତାରେ ସେ କହନ୍ତି –

ଗୁରୁ ଦୁଆରକୁ ସର୍ବେ ଅଟନ୍ତି ସମାନ,
ସ୍ତିରୀ ବା ପୁରୁଷ ତହିଁ କେହି ନାହିଁ ବଡ଼ ସାନ।

ମୂର୍ତ୍ତିପୂଜାକୁ ଭୀମଭୋଇ ବିରୋଧ କରିଛନ୍ତି। ଭୀମଭୋଇଙ୍କ ଅନୁସାରେ ପରମସତ୍ତା ହେଉଛି ଏକ ଏବଂ ତାଙ୍କର ବିଭିନ୍ନ ରୂପ। ସେ ରୂପ ଶୂନ୍ୟ। ତେଣୁ ତାଙ୍କୁ କୁହାଯାଇପାରେ– ରୂପରେଖ ନାହିଁ, ହେ ଶୂନ୍ୟଦେହୀ। ସେ ଜଗତରେ

ସର୍ବବ୍ୟାପୀ ଏବଂ ସବୁଠାରୁ ଉର୍ଦ୍ଧ୍ୱରେ । ଯଦିଓ ସମସ୍ତଙ୍କ ମଧ୍ୟରେ ଦିବ୍ୟତ୍ୱ ଅଛି ତାଙ୍କୁ କୌଣସି ସୀମିତ କାଷ୍ଠ ବା ପଥର ମୂର୍ତ୍ତି ସହିତ ତାଦାତ୍ମ୍ୟ କରାଯାଇ ପାରିବ ନାହିଁ । ମୂର୍ତ୍ତି ହେଉଛି ନିର୍ଜୀବ ଯାହାକି ପଞ୍ଚମହାଭୂତରେ ସୃଷ୍ଟ । ମନୁଷ୍ୟର ସ୍ୱରୂପ ହେଉଛି ଅସୀମ ତେଣୁ ତା'ର ଲକ୍ଷ୍ୟ ବା ଇଚ୍ଛା ହେଉଛି ଅସୀମ । ତେଣୁ ଏହି ନିର୍ଜୀବ ମୂର୍ତ୍ତି ତାର କାମନାକୁ ପୂର୍ତ୍ତି କରିପାରିବ ନାହିଁ । ମାନସିକ କରିବା, ଫଳମୂଳ, ମିଷ୍ଟାନ୍ନ ଭୋଗ ଦେଇ ତାଙ୍କୁ ସନ୍ତୁଷ୍ଟ କରିବା ହେଉଛି ମଣିଷର ଅଜ୍ଞତାର ପରିଚୟ । ତେଣୁ ଭୀମଭୋଇ କହନ୍ତି –

ଅଚେତରେ ସିନା ଜନପ୍ରାଣୀମାନେ କରୁଛନ୍ତି ଦେବପୂଜା
ପାଦେ ପଡ଼ି ରକ୍ଷା କର ବୋଲୁଛନ୍ତି ଦେବୁ ଖିରି ପୁରୀ ଗଜା ।

× × ×

ମୂର୍ତ୍ତି ସିନା ସେହି ଜୀବଆତ୍ମା ନାହିଁ କାହୁଁ ଯାଚିଦେବ ବର,
ବିଷ୍ଣୁ ନଟକୁଟ ମାୟାଙ୍କୁ ନ ଜାଣି ଅଜ୍ଞାନରେ ମୂଢ଼ ନର ।[୬୪]

ଅଜ୍ଞ ବ୍ୟକ୍ତମାନେ ନିର୍ଜୀବ ବସ୍ତୁକୁ ଭକ୍ତି କରି ଜୀବନ୍ତ ପ୍ରଭୁଙ୍କୁ ଅବହେଳା କରୁଛନ୍ତି । ଭୀମଭୋଇ କହୁଛନ୍ତି ଯେ କିପରି ମଣିଷମାନେ ଯିଏ ପ୍ରାଣକୁ ଗଢ଼ିଛି ତାକୁ ପୂଜା ନ କରି, ଯିଏ ପ୍ରାଣବନ୍ତ ନୁହେଁ ତାଙ୍କୁ ପୂଜା କରିବାକୁ ଇଚ୍ଛା କରୁଛନ୍ତି ।

ଯେହୁ ଗଢ଼ିଅଛି ଆପଣା ପିଣ୍ଡପ୍ରାଣ ତାଙ୍କୁ ସମର୍ପଣ ନାହିଁ,
ଦାରୁ ପ୍ରତିମାମୂର୍ତ୍ତିକୁ ବୋଲୁଛନ୍ତି, ପ୍ରାଣକୁ ବଞ୍ଚାଅ ତୁହି ।
ମନୁଷ୍ୟ ହୋଇ ନିର୍ଜୀବ ସଙ୍ଗେ ଭାବଟି ଦେଖ କେଡ଼େ ଅଜ୍ଞାନ,
ଶୂନ୍ୟରୁ ଯେହୁ ପିଣ୍ଡପ୍ରାଣ ଗଢ଼ିଲା ନାହିଁ ତାକୁ ଅନୁମାନ ।।[୬୫]

କବୀର ମଧ୍ୟ ମୂର୍ତ୍ତିପୂଜାକୁ ସ୍ୱୀକାର କରୁନଥିଲେ । ତାଙ୍କ ମତରେ ମଣିଷ ହୃଦୟଙ୍ଗମ କରିପାରେ ନାହିଁ ଯେ ତାର ହୃଦୟରେ ପ୍ରଭୁ ନିବାସ କରନ୍ତି । ସେ ନିଜର ଅମୂଲ୍ୟ ସମୟ ଓ ଶକ୍ତିକୁ ଅଯଥାରେ ନଷ୍ଟ କରି ମୂର୍ତ୍ତିର ପୂଜା ଓ ପ୍ରାର୍ଥନା କରିଥାନ୍ତି ।

ତେରେ ହିୟେ ମେ ରାମ ହୈ
ତହି ନ ଦେଖାପାୟା,

ଦିଲ ଦେହୁରା କେ ଖବରା
ନାହିଁ ପଥର ତେ କହ ପାୟା ।

କବୀର ଏହା ଦେଖି ଅତି ବ୍ୟଥିତ ଏବଂ ଚିନ୍ତିତ ହୋଇ କହୁଥିଲେ ଯେ ହିନ୍ଦୁମାନେ ମନ୍ଦିର ଯାଇ ପୂଜା କରନ୍ତି କିଛି ଫଳପ୍ରାପ୍ତି ଆଶାରେ ଏବଂ ମୁସଲମାନମାନେ ମଧ୍ୟ ସେହି ଆଶାରେ ମସ୍‌ଜିଦ ଯାଆନ୍ତି କିନ୍ତୁ ପ୍ରକୃତ ତତ୍ତ୍ୱକୁ ଭୁଲିଯାଆନ୍ତି ଯେ ପରମସତ୍ତା ସେମାନଙ୍କ ନିଜ ମଧ୍ୟରେ ସ୍ଥିତ । ତେଣୁ ସେମାନେ ପଥଭ୍ରଷ୍ଟ ହୁଅନ୍ତି ।

କିତନେ ମନାଉଁ ପାଉଁ ପରି
କିତନେ ମନାଉଁ ରୋୟା,
ହିନ୍ଦୁ ପୂଜାଇ ଦେବତା
କୁରକ ନେ କାହୁ କୋୟା ।

ଭୀମଭୋଇଙ୍କ ଅନୁସାରେ ଅଲେଖ ଗୁରୁ ସର୍ବବ୍ୟାପୀ ହୋଇଥିବାରୁ ଆତ୍ମଭକ୍ତି ହେଉଛି ପ୍ରକୃତ ଆଧ୍ୟାତ୍ମିକ ସାଧନା । ତେଣୁ ସେ ବାରମ୍ବାର କହୁଛନ୍ତି ଯେ ବାହ୍ୟାଚାର ଜପ, ତପ, ସନ୍ଧ୍ୟା, ହୋମ ଯଜ୍ଞକୁ ପରିତ୍ୟାଗ କରି ଆତ୍ମ-ଭକ୍ତିରେ ନିମଗ୍ନ ରୁହ ।

ଜପ ତପ ସନ୍ଧ୍ୟାହୋମ ଯଜ୍ଞ ତେଜି
ଧରି ନିରବେଦ ପଥ,
ଆତ୍ମ ଭଗତିରେ ଏ ମୃତ୍ୟୁ ସଂସାରେ
ମଣିଲି ମୁଁ ଏକ ମତ ।[୬୬]

ଯେପରି ହିନ୍ଦୁ ଓ ମୁସଲମାନମାନେ ତୀର୍ଥଯାତ୍ରାକୁ ଗୁରୁତ୍ୱ ଦିଅନ୍ତି ଏବଂ ଭାବନ୍ତି ଯେ ତୀର୍ଥଯାତ୍ରା କଲେ ସମସ୍ତ ପାପର ବିନାଶ ହୋଇଯାଇଥାଏ, ତାକୁ ଉଭୟ ଭୀମଭୋଇ ଓ କବୀର ସ୍ୱୀକାର କରନ୍ତି ନାହିଁ । ଭୀମଭୋଇଙ୍କ ମତରେ ସଂସାରର ସମସ୍ତ ବସ୍ତୁ ଓ ବ୍ୟକ୍ତି ପରଂବ୍ରହ୍ମର ପରିପ୍ରକାଶ ଏବଂ ସର୍ବତ୍ର ବିଦ୍ୟମାନ । ଏହାକୁ ବିସ୍ମରଣ କରି ସେମାନେ ପଥଶ୍ରମ କରି ତୀର୍ଥଯାତ୍ରା କରନ୍ତି । ଯେହେତୁ ପ୍ରତ୍ୟେକ ଜୀବାତ୍ମାରେ ପରମାତ୍ମା ଅବସ୍ଥିତ ତେଣୁ ମନ୍ଦିରକୁ ନ ଯାଇ ନିଜ ଭିତରେ ପରମାତ୍ମାକୁ ଖୋଜ ।

ନ ଜାଣି ଚାରିଦିଗେ ଫେରୁଅଛ
ତୀର୍ଥ ବ୍ରତ ବୋଲି କରି,
ଯହିଁରେ ଲୋଡ଼ିବ ତହିଁ ଅଛନ୍ତି ବ୍ରହ୍ମ
ବୁଝିବ ଯେବେ ବିଚାରି ।[୬୬]

ଧର୍ମର ବାହ୍ୟାଡ଼ମ୍ବରକୁ ତାଚ୍ଛଲ୍ୟକରି କବୀର କହନ୍ତି – ଯେଉଁମାନେ ପ୍ରାତଃସ୍ନାନ କରି, ବିଭୂତି ଲଗାଇ ଲୋକଲୋଚନରେ ନିଜକୁ ଧାର୍ମିକ ଭାବରେ ଦେଖାଇ ହୁଅନ୍ତି; କିନ୍ତୁ ଆତ୍ମଜ୍ଞାନ ପ୍ରାପ୍ତି ନିମିତ୍ତ ଜିଜ୍ଞାସୁ ହୁଅନ୍ତି ନାହିଁ ଏବଂ ଜାଣନ୍ତି ନାହିଁ ଯେ ସେମାନଙ୍କ ଭିତରେ ପରମାତ୍ମା ବିରାଜମାନ । ତେଣୁ ସେମାନେ ଦୁଃଖ ବିନା ଅନ୍ୟ କିଛି ଭୋଗ କରନ୍ତି ନାହିଁ ।

ଆତମ ବୁଦ୍ଧି ଜାନୈ ନହିଁ, ନାହବେ ପ୍ରାତଃ କାଳ ।
ଲୋକ ଲଜ୍ଜା ଲିୟେ ରହେ, ଲଗା ଭସମ କପାଳ ॥
ଜପ ତପ ଦୀଖୋ ଥୋଥରା, ତୀରଥ ବ୍ରତ ବିଶ୍ୱାସ ।
ସୂବା ସୋମଲ ସୋଇୟା ଜ୍ୟୋଁ ଜଗ ଚଲା ନିରାଶ ॥

ଯୋଗୀମାନେ ଶରୀରକୁ ସୁସଜ୍ଜିତ କରି, ମନକୁ ଅବହେଳା କରନ୍ତି । ସେମାନଙ୍କ ସାଧନା ବିଫଳ ହୁଏ କିନ୍ତୁ ଯେଉଁ ଯୋଗୀ ମନକୁ ସଂଯତ କରନ୍ତି ସେମାନେ ସଫଳ ହୁଅନ୍ତି ।

ତନକୋ ଯୋଗୀ ସବ କହେ, ମନ କୋ କରୈ ନା ନ କୋୟ ।
ସହଜୈ ସିଦ୍ଧି ପାଇୟେ, ଯୋ ମନ ଯୋଗୀ ହୋୟ ॥

କବୀରଙ୍କ ପାଇଁ ରୁଦ୍ରାକ୍ଷ, ଜନେଉ, ମେଖଳା, ଚୋଲା ଆଦି ଧାରଣ ନ କରି ସବୁକୁ ମନରେ ଧାରଣ କରିବା ଉଚିତ ।

ମନ ମେ ଧାରଣ ମନ ମେଁ ରହନା ।
ମନ କା ଜପତପ ମନସୂ କହନା ।।

ଏହି ମର୍ମରେ ଭୀମଭୋଇ କହିଛନ୍ତି –

ସେ ବ୍ରହ୍ମର ଦର୍ଶନ, ଭଜନ ସବୁ ନାସ୍ତି
ଚିତା ପଇତା ଆବର ଗୋମୟ ବିଭୂତି ।

ଜଟାଭାର ବର୍ଣ୍ଣମୁଦ୍ରା କାହିଁ ନାହିଁ କିଛି,
ନିର୍ମଳ ବ୍ରହ୍ମସ୍ୱରୂପ କିଛି ନ ଲାଗୁଛି ।[୬୮]

ଭୀମଭୋଇ ମାନବବାଦୀ ହେଲେ ମଧ୍ୟ କେବଳ ମାନବର ହିତ କଥା ଚିନ୍ତା କରୁନାହାନ୍ତି ବରଂ ସଂସାରର ସମସ୍ତ ସୃଷ୍ଟିର ଜୀବଙ୍କ ହିତ କାମନା କରୁଛନ୍ତି । ମାନବବାଦୀଙ୍କ ମତରେ ମନୁଷ୍ୟ ହେଉଛି ସର୍ବୋଚ୍ଚ ସତ୍ତା ଏବଂ ଅନ୍ୟସବୁ କିଛି ମାନବହିତ ପାଇଁ ଉଦ୍ଦିଷ୍ଟ । କିନ୍ତୁ ଭୀମଭୋଇ ପ୍ରାର୍ଥନା କରୁଛନ୍ତି ଯେ ହେ ପ୍ରଭୁ ! ସଂସାରର ସମସ୍ତଙ୍କୁ ରକ୍ଷା କର, ଜୀବ, ଜନ୍ତୁ, କୀଟପତଙ୍ଗ, ବୃକ୍ଷ ଆଦି ସମସ୍ତଙ୍କୁ ଉଦ୍ଧାର କର । ତେଣୁ ସେ ହେଉଛନ୍ତି ଆଧ୍ୟାତ୍ମିକ ମାନବବାଦୀ କାରଣ ସେ ଜାଣନ୍ତି ଶୂନ୍ୟପୁରୁଷ ସମସ୍ତଙ୍କଠାରେ ସମଭାବରେ ବ୍ୟାପ୍ତ । ସେମାନଙ୍କର ଭିନ୍ନତା ଗୁଣାତ୍ମକ ନୁହେଁ ବରଂ ପରିମାଣାତ୍ମକ ।

ମାନବ ଜନ୍ମ ହେଉଛି ସବୁଠାରୁ ଶ୍ରେଷ୍ଠ ଜନ୍ମ କାରଣ ସେ ବୁଦ୍ଧିବାଦୀ, ତାକୁ ସମସ୍ତଙ୍କ ହିତରେ ଦାୟିତ୍ୱ ନେବାକୁ ହେବ । ସେ ଦିବ୍ୟାତ୍ମା ସମସ୍ତଙ୍କଠାରେ ବିଦ୍ୟମାନ ଥିବାରୁ ଆଧ୍ୟାତ୍ମିକ ସାଧନା ନିମିତ୍ତ ସମସ୍ତଙ୍କର ଅଧିକାର ଅଛି ଯାହାକି ଜାତି, ଗୋତ୍ରର ଉର୍ଦ୍ଧ୍ୱରେ । ତେଣୁ ଭୀମଭୋଇ କହୁଛନ୍ତି –

"ସଦ୍‌ଗୁରୁ ଧର୍ମ ଏହି କାହାକୁ ମନା ନାହିଁ ।"

× × ×

ଏକା ଜଣଙ୍କର ନୁହନ୍ତି ଠାକୁର
ଅଛି ସବୁରି ଭାଗ,
କୋଠା ଲୋକ ହେବ ଅନ୍ତର ନୋହିବ
ଯେଉଁମାନେ ଭଜୁଥିବେଟି ଆଗ ।[୬୯]

ଭୀମଭୋଇ କେବେହେଲେ ମଣିଷକୁ ଦେବତା ସ୍ତରକୁ ନେବାକୁ ଚାହୁଁନଥିଲେ । ତାଙ୍କ ମାନବତାବାଦର ଅର୍ଥ ହେଲା – ମଣିଷର ଅବିଦ୍ୟା ଓ ଅଜ୍ଞାନର ନିରାକରଣ ଏବଂ ତା' ମଧ୍ୟରେ ଦିବ୍ୟତ୍ୱର ସମ୍ମାନ କରି ତାକୁ ସନ୍ଦର୍ଶନ କରିବା । ଶରୀର ଅବୟବ ଅଛି ବୋଲି ମଣିଷ ସର୍ବଦା ପ୍ରକୃତରେ ମନୁଷ୍ୟ ହୋଇପାରେ ନାହିଁ । ମଣିଷର ପ୍ରକୃତି ଦେଖି ସେ କହୁଥିଲେ ଯେ ସାଂପ୍ରତିକ ମଣିଷ ହେଉଛି –

ଚକ୍ଷୁ ଥାଉଁ କଣା, ବୁଦ୍ଧି ଥାଉଁ ବଣା
ବାତୁଳ ହେଲେଣି ସମସ୍ତେ ହେ,
ଯେ ହେବ ମନୁଷ୍ୟ ଜାଣିବ ଅବଶ୍ୟ
ବୁଝାଇ କହୁଅଛି ଯେତେ ହେ ।[୭୦]

ମଣିଷର ଏଭଳି ଅମଣିଷ ପ୍ରକୃତି ଦେଖି ସେ କହିଲେ ଯେ ଲୋଭ, ମାୟା ଦ୍ୱାରା ଯାହା ସଞ୍ଚୟ କରିଛ ମୃତ୍ୟୁ ପରେ କିଛି ନେଇଯିବ ନାହିଁ, ଖାଲି ହାତରେ ଯିବ । ତୁମ ସହିତ ତୁମର ପ୍ରିୟଜନମାନେ ମଧ୍ୟ ତୁମ ସହ ଯିବେ ନାହିଁ । ତେଣୁ ବସ୍ତୁ, ବନ୍ଧୁ, ପରିଜନ ପ୍ରତି ଆସକ୍ତି ରଖ ନାହିଁ ।

ମରିଗଲେ କେହି କିଛି ନ ନେବାକୁ ଅରଜି ଅଛନ୍ତି ଯେତେ,
ସେତେବେଳେ ଆଉ କେହି ନ ଗଛନ୍ତି ଯାଉଛନ୍ତି ତୁଚ୍ଛା ହସ୍ତେ ।

"ଆସୁଅଛି ଏକା ଯାଉଅଛି ଏକା କେହି ନୁହନ୍ତି କାହାର" ।[୭୧]

ଭୀମଭୋଇ କହୁଛନ୍ତି ଯେ ଧର୍ମ-ଅଧର୍ମ, ଗୁଣ-ଦୁର୍ଗୁଣ ସଂସାରରେ ସମାନ ଭାବରେ ରହିଛନ୍ତି, ତେଣୁ ବିବେକ-ବୁଦ୍ଧି ଓ ସଦ୍‌ଜ୍ଞାନ ଦ୍ୱାରା ସତ୍‌ଗୁଣକୁ ବାଛ ।

ସାର ଅସାର ସମାନରେ କରିଛି, କାହାକୁ ତେଜିବି ଦେଖ ।
ସଦ୍‌ବୁଦ୍ଧି ଜ୍ଞାନ ହୃଦରେ ବିଚାର, ମନରେ କର ବିବେକ ।[୭୨]

ମନୁଷ୍ୟର ମୂଲ୍ୟବୋଧ ସେତେବେଳେ ଉଦୟ ହୁଏ ଏବଂ ତାର ସଦ୍‌ଜ୍ଞାନ ହୁଏ ଯେ ସଂସାରର ବିଭିନ୍ନତା ଓ ଅନେକତା ହେଉଛି ଏକ ପରଂବ୍ରହ୍ମଙ୍କ ବିଭିନ୍ନ ରୂପ । ତେଣୁ ସେ ପ୍ରଭୁଙ୍କ ପାଖରେ ପ୍ରାର୍ଥନା କରୁଛନ୍ତି ଏହି ସଂସାରରେ ଯେତେ ମଣିଷ ଅଛନ୍ତି ତାଙ୍କ ଘଟରେ ହେତୁ ଚେତା ଦିଅ ଯଦ୍ୱାରା ତାଙ୍କର ଅଲେଖ ଭକ୍ତି ପ୍ରତି ନିଷ୍ଠାର ଉଦୟ ହେବ ।

ଏକୋଇଶ ପୁର ଚଉଦ ଭୁବନ ଯେଉଁଠାରେ ଯେହୁଛନ୍ତି,
ସବୁ ଘଟରେ ପ୍ରଭୁ ହେତୁ ଚେତା ଦିଅ ଉଠୁ ଅଲେଖ ଭଗତି ।[୭୩]

କବୀର ମଣିଷକୁ ମଣିଷ ଭଳି ବଞ୍ଚିବା ପାଇଁ ନିବେଦନ କରିଛନ୍ତି । ପଶୁଠାରୁ ମଣିଷ ଭିନ୍ନ କାରଣ ପଶୁ ହେଉଛି ଆତ୍ମ-କୈନ୍ଦ୍ରିକ ଯେ ନିଜର ବାସନାକୁ ପୂର୍ଣ୍ଣ

କରିବା ପାଇଁ କର୍ମ କରିଥାଏ । ତେଣୁ ଯେଉଁ ମଣିଷ ପରହିତ ପାଇଁ କାମନା ନ କରି କେବଳ ନିଜ କାମନା ପୂରଣ କରିବାପାଇଁ ବ୍ୟସ୍ତ, ସେ ହେଉଛି ଏକ ପଶୁ ଭଳି । ତେଣୁ ପରହିତ କାମନା କଲେ ହିଁ ନିଜ ମନୁଷ୍ୟତ୍ୱକୁ ସେ ଜାଣିପାରିବ । କବୀର କହନ୍ତି –

ୟହି ପଶୁ ପ୍ରବୃତ୍ତି ହୈ କି ଆପହି ସଦା ବରୈଇ
ତହି ମନୁଷ୍ୟ ବୈ ଯୋ ମନୁଷ୍ୟ ଲିୟେ ମରୈଇ ।

ସେହି ମର୍ମରେ କବୀର କହନ୍ତି,

ଦୟା କୌନପର କିଜୀୟେ, କାପର ନିର୍ଦ୍ଦୟ ହୋୟ ।
ସାଇଁ କେ ସବ ଜୀବ ହେଁ,
କିରି କୁଞ୍ଜର ହୋୟ ।

ତେଣୁ କବୀରଙ୍କ ସମସ୍ତଙ୍କ ପାଇଁ କରୁଣା ତାଙ୍କ ଦାର୍ଶନିକ ଚିନ୍ତନରୁ ସୃଷ୍ଟ ହୋଇନାହିଁ ବରଂ ତାଙ୍କ ହୃଦୟରୁ ସୃଷ୍ଟ । ସେ କହିଲେ ଯେ ମୋର କାମନା ହେଉଛି ସମସ୍ତଙ୍କର ମଙ୍ଗଳ, ମୋର କେହି ଶତ୍ରୁ ବା ମିତ୍ର ନାହାନ୍ତି । ଯେଉଁମାନେ ପ୍ରଭୁଠାରେ ସମର୍ପିତ, ସେମାନେ ଜାତି, ଧର୍ମ, ଭାଷା ନିର୍ବିଶେଷରେ ସମସ୍ତଙ୍କୁ ସମଭାବରେ ଦେଖନ୍ତି ।

ସର୍ବେ ହମାରେ ଏକ ହୈ ଜୋ ସୁମରେ ହରିନାମ,
ବସ୍ତୁ ଲହୁ ପହଚାନକୈ, ବାସନ ସୌଁ କା କାମ ।

ଉଦାରତା ଭଳି କବୀର ସମତ୍ୱ ଭାବନାକୁ ମଧ୍ୟ ଅତ୍ୟନ୍ତ ପ୍ରିୟ ମଣୁଥିଲେ । ଏପରିକି ସେ ସମଦର୍ଶୀକୁ ଭଗବାନଙ୍କ ପ୍ରତିମୂର୍ତ୍ତି ଭାବରେ ଗ୍ରହଣ କରୁଥିଲେ ।

ଲୋହା କଞ୍ଚନ ସମ ଜାନହିଁ ତେ ମୂରତି ଭଗବାନା ।

ଯେ ପରମାତ୍ମାଙ୍କଠାରେ ନିଜକୁ ସ୍ଥିର ରଖି ଅନ୍ୟକୁ ଆତ୍ମବତ୍ ମନେକରି ଅନ୍ୟର ସୁଖଦୁଃଖକୁ ନିଜର ସୁଖ-ଦୁଃଖ ବୋଲି ଜ୍ଞାନ କରେ, ସେ ହିଁ ପ୍ରକୃତ ସମଦର୍ଶୀ । କବୀରଙ୍କ ମତରେ ବାଦ-ବିବାଦରେ ସମୟର ବ୍ୟର୍ଥ ଅପଚୟ ନ କରି, ସମସ୍ତ ପ୍ରାଣୀଙ୍କୁ ସମଦୃଷ୍ଟିରେ ଦେଖି ସେ ସମଦର୍ଶୀ ହୋଇଥାଏ ।

'ସର୍ବଭୂତ ଏକେ କରି ଜାନ୍ୟା, ଚୁକେ ବାଦ-ବିବାଦା'

କବୀର କହିଛନ୍ତି ଯେ, ପାପ-ପୁଣ୍ୟ, ସ୍ୱର୍ଗ-ନର୍କ ପ୍ରତି ତାଙ୍କ ଆଶଙ୍କା ନାହିଁ – ଯେଉଁମାନେ ଆତ୍ମ-ଜ୍ଞାନୀ ସେମାନଙ୍କ ପାଇଁ ସମସ୍ତ କିଛି ସୁଖମୟ ଓ ମଙ୍ଗଳମୟ। ସେ କେବଳ ଅନ୍ୟମାନଙ୍କର ମଙ୍ଗଳ କାମନା କରନ୍ତି କାରଣ ସମସ୍ତେ ହେଉଛନ୍ତି ସମାନ। ମାନବତାବାଦୀ ଭାବରେ ସେ କହନ୍ତି,

ପାପ-ପୁଣ୍ୟ କା ଶଂକା ନାହିଁ ଏ, ସ୍ୱର୍ଗ-ନରକ ନହିଁ ଜାହିଁ,
କହତ କବୀର ସୁନହୁର ସନ୍ତୋ, ଜହାଁ କା ତହାଁ ସମାଇ।

ଅନ୍ୟର କଲ୍ୟାଣ ବିନା ଅନ୍ୟ କୌଣସି କାମନା କରିବା ଉଚିତ୍ ନୁହଁ। ତେଣୁ ସେ ନିଜ କାମନାର ଫଳପ୍ରାପ୍ତିରେ ସୁଖ-ଦୁଃଖ ଅନୁଭବ କରେ ନାହିଁ, ଯାହାକି ତାକୁ ଜନ୍ମ-ମରଣ ଚକ୍ରରୁ ମୁକ୍ତ କରି ଅନନ୍ତ ଆନନ୍ଦ ଦେଇଥାଏ।

ସୁଖ-ଦୁଃଖ ଦୋନୋ ଏକ ସମାନ ହୈ, ହରଷ ଶୋକ ନହିଁ ବ୍ୟାପ,
ଉପକାରୀ ନହ କାମନ, ଉପଜୈ, ଛୋୟ ନ ପାପ।

ସେ ସ୍ୱର୍ଗ ବା ମୋକ୍ଷର କାମନା କରନ୍ତି ନାହିଁ। ଅନ୍ୟର ସଦାଚାର ଓ ଈଶ୍ୱରାଭିମୁଖୀ ହେବା ହିଁ ତାଙ୍କର କାମ୍ୟ। କବୀରଙ୍କ ନିମନ୍ତେ ପରିହିତ ସାଧନ ପରମାବଶ୍ୟକ। ବୃକ୍ଷର ପରୋପକାର ଭାବନାକୁ ଉଲ୍ଲେଖ କରିବାକୁ ଯାଇ କବୀର କହନ୍ତି ଯେ ବୃକ୍ଷ ଯେପରି ଫଳ ପ୍ରଦାନ କରି, ଶୀତଳ ଛାୟା ପ୍ରଦାନ କରି ତଥା ବିଭିନ୍ନ ପକ୍ଷୀକୁ ଆଶ୍ରୟ ଦେଇ ନିଜ ସମ୍ପୂର୍ଣ୍ଣ ଶରୀରକୁ ପରିହିତ ସାଧନରେ ନିଜକୁ ନିମଜ୍ଜିତ କରିଥାଏ, ସେହିଭଳି ପ୍ରତ୍ୟେକ ମାନବ ମଧ୍ୟ ନିଜ ସର୍ବସ୍ୱକୁ ପରହିତ ସାଧନରେ ଉପଯୋଗ କରିବା ଉଚିତ।

ତାଙ୍କ ମତରେ ଶୁଦ୍ଧ ବିଚାର ବିନା ପବିତ୍ର ଧର୍ମ ସମ୍ଭବ ନୁହେଁ। ପ୍ରତ୍ୟେକ ବ୍ୟକ୍ତିର କର୍ତ୍ତବ୍ୟ ହେଉଛି ବିବେକ ଦ୍ୱାରା ସତ୍ୟର ନିରୂପଣ କରି ତାକୁ ଗ୍ରହଣ କରିବା। ସତ୍ୟନିରୂପଣ ହେଉଛି ଗୋଟିଏ ମାର୍ଗ; କିନ୍ତୁ ଲକ୍ଷ୍ୟ ନୁହେଁ। ଯେଉଁ ବ୍ୟକ୍ତି ସତ୍ୟ-ନିରୂପଣକୁ ନିଜର ପରମ ଲକ୍ଷ୍ୟ ଭାବେ ସେ ତର୍କଜାଲରେ ଛନ୍ଦି ହୋଇଯାଏ। ତେଣୁ ଯେଉଁ ଆଚରଣ ମାନବ-ଜାତିର କଲ୍ୟାଣ ନିମିତ୍ତ ଉଦ୍ଦିଷ୍ଟ ତାହା କରଣୀୟ

ଏବଂ ସେଥିରେ ବାଧା ସୃଷ୍ଟି କରୁଥିବା ସମସ୍ତ କର୍ମ ବର୍ଜନୀୟ। ତେଣୁ କବୀରଙ୍କ ଧର୍ମ ହେଉଛି ମାନବବାଦୀ ଧର୍ମ।

ଆମେ ଦେଖିଲେ ଯେ କବୀର ଓ ଭୀମଭୋଇଙ୍କ ଚିନ୍ତାଧାରାରେ ଅନେକ ସାମ୍ୟ ରହିଛି। ସେମାନଙ୍କ ଦର୍ଶନ ଅନପେକ୍ଷ ନୁହେଁ ବା ରହସ୍ୟବାଦ ନୁହେଁ। ସେମାନଙ୍କ ଧର୍ମ-ଦର୍ଶନ ହେଉଛି ବ୍ୟାବହାରିକ ଜୀବନରେ ଆଦୃତ କରି ପୂର୍ଣ୍ଣତା ପ୍ରାପ୍ତ କରିବା। ତାଙ୍କ ପାଇଁ ମୁକ୍ତି ହେଉଛି, ଅତ୍ୟାଚାରିତ ଧର୍ମ ଓ ସମାଜକୁ ମୁକ୍ତ କରି ଏକ ଆଦର୍ଶ-ଧର୍ମାଭିମୁଖୀ ସମାଜ ଗଠନ କରିବା। ସେମାନେ ନିଜର ମୁକ୍ତି ଅପେକ୍ଷା ସର୍ବମୁକ୍ତିର କାମନା କରୁଥିଲେ। ତେଣୁ ଭୀମଭୋଇ ସ୍ୱଷ୍ଟ ଭାବରେ କହିଛନ୍ତି 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ'। କବୀର ମଧ୍ୟ ସ୍ୱର୍ଗ ବା ମୋକ୍ଷର କାମନା ନ କରି ମାନବ-ଜାତିର କଲ୍ୟାଣ ନିମିତ୍ତ ନିଜକୁ ଉତ୍ସର୍ଗ କରି ଦେବାପାଇଁ ପ୍ରସ୍ତୁତ। ତେଣୁ ଉଭୟ ମାନବବାଦୀଙ୍କ ଦର୍ଶନ ସାମ୍ପ୍ରତିକ ସମାଜ ପାଇଁ ଏକ ଅନବଦ୍ୟ ଦିଗ୍‌ଦର୍ଶନ।

## ପ୍ରାନ୍ତଟୀକା

୧. ବ୍ରହ୍ମନିରୂପଣ ଗୀତା - III
୨. ଭଜନମାଳା - ୭୮
୩. ସ୍ତୁତିଚିନ୍ତାମଣି - ୩୬
୪. ବ୍ରହ୍ମନିରୂପଣ ଗୀତା - III
୫. ତତ୍ରୈବ
୬. ଭଜନମାଳା - ୭୮
୭. ସ୍ତୁତି ଚିନ୍ତାମଣି - ୭୮
୮. ବ୍ରହ୍ମନିରୂପଣ ଗୀତା - X
୯. ତତ୍ରୈବ - VII
୧୦. ତତ୍ରୈବ - X
୧୧. ତତ୍ରୈବ
୧୨. ତତ୍ରୈବ - XIII
୧୩. ସ୍ତୁତିଚନ୍ତାମଣି - ୩୬
୧୪. ବ୍ରହ୍ମନିରୂପଣ ଗୀତା XII

୧୫. ତତ୍ରୈବ - VII
୧୬. ତତ୍ରୈବ - X
୧୭. ସ୍ତୁତିଚିନ୍ତାମଣି - ୭୮
୧୮. ବ୍ରହ୍ମନିରୂପଣ ଗୀତା - VII
୧୯. ଭଜନମାଳା - ୨୧୮
୨୦. ସ୍ତୁତିଚିନ୍ତାମଣି - ୮୦
୨୧. ଭଜନମାଳା - ୧୦୮
୨୨. ତତ୍ରୈବ - ୨୫୩
୨୩. ତତ୍ରୈବ - ୧୭୫
୨୪. ତତ୍ରୈବ - ୧୯୯
୨୫. ବ୍ରହ୍ମନିରୂପଣ ଗୀତା - VII
୨୬. ତତ୍ରୈବ - VIII
୨୭. ଭଜନମାଳା - ୧୧୦
୨୮. ତତ୍ରୈବ
୨୯. ବ୍ରହ୍ମନିରୂପଣ ଗୀତା - XIV
୩୦. ଭଜନମାଳା - ୯୯
୩୧. ସ୍ତୁତିଚିନ୍ତାମଣି - ୬୬
୩୨. ତତ୍ରୈବ - ୫୫
୩୩. ତତ୍ରୈବ - ୮୧
୩୪. ତତ୍ରୈବ - ୯୧
୩୫. ବ୍ରହ୍ମନିରୂପଣ ଗୀତା - XIV
୩୬. ଭଜନମାଳା - ୩୨
୩୭. ତତ୍ରୈବ - ୧୩୮
୩୮. ସ୍ତୁତିଚିନ୍ତାମଣି - ୭୫
୩୯. ତତ୍ରୈବ
୪୦. ଭଜନମାଳା - ୩୬
୪୧. ତତ୍ରୈବ
୪୨. ତତ୍ରୈବ - ୧୩୨
୪୩. ତତ୍ରୈବ - ୧୮
୪୪. ସ୍ତୁତିଚିନ୍ତାମଣି - ୮୮

୪୫. ଭଜନମାଳା - ୩୮
୪୬. ତତ୍ରୈବ - ୩୩
୪୭. ସ୍ତୁତିଚିନ୍ତାମଣି - ୯୦
୪୮. ବ୍ରହ୍ମନିରୂପଣ ଗୀତା - VII
୪୯. ଆଦିଅନ୍ତଗୀତା - IV
୫୦. ସ୍ତୁତିଚିନ୍ତାମଣି - ୩୭
୫୧. ତତ୍ରୈବ
୫୨. ତତ୍ରୈବ
୫୩. ଭଜନମାଳା - ୩୦୨
୫୪. ତତ୍ରୈବ - ୧୬
୫୫. ସ୍ତୁତିଚିନ୍ତାମଣି - ୭୮
୫୬. ତତ୍ରୈବ - ୯୭
୫୭. ତତ୍ରୈବ - ୨୬
୫୮. ତତ୍ରୈବ - ୧୨
୫୯. ତତ୍ରୈବ - ୨୭
୬୦. ତତ୍ରୈବ
୬୧. ତତ୍ରୈବ - ୭୦
୬୨. ତତ୍ରୈବ - ୮୫
୬୩. ଭଜନମାଳା - ୯
୬୪. ସ୍ତୁତିଚିନ୍ତାମଣି - ୯୫
୬୫. ତତ୍ରୈବ
୬୬. ତତ୍ରୈବ - ୩୩
୬୭. ତତ୍ରୈବ - ୯୨
୬୮. ବ୍ରହ୍ମନିରୂପଣ ଗୀତା - XIV
୬୯. ଭଜନମାଳା - ୬୨
୭୦. ତତ୍ରୈବ - ୬୬
୭୧. ସ୍ତୁତିଚିନ୍ତାମଣି - ୮୦
୭୨. ତତ୍ରୈବ
୭୩. ତତ୍ରୈବ - ୨୪

# 'ହେତୁ ଉଦୟ ଭାଗବତ' ଓ 'ସ୍ତୁତି ଚିନ୍ତାମଣି': ପରମ୍ପରା ଓ ବିବର୍ତ୍ତନର ଏକ ବିଚାର

ବିଜୟ କୁମାର ନନ୍ଦ

ଉଭୟ "ହେତୁ ଉଦୟ ଭାଗବତ" ଓ "ସ୍ତୁତି ଚିନ୍ତାମଣି" ଦାର୍ଶନିକ ଦୃଷ୍ଟିଭଙ୍ଗୀ ପ୍ରଦାନ କରୁଥିବା କବିତା ଗ୍ରନ୍ଥ। ଉଭୟ ଜୀବନ ଓ ଜଗତର ପ୍ରକୃତ ଅର୍ଥ ଅଧ୍ୟୟନ କରିଛନ୍ତି ଅର୍ଥାତ୍ ଉଭୟର ଜୀବନ ଓ ଜଗତ ବିଷୟରେ ଅନ୍ୱେଷାର ବର୍ଣ୍ଣନା କରିଛନ୍ତି। ତାହା ପୁଣି କବିତା ମାଧ୍ୟମରେ। ପ୍ରଥମ ଗ୍ରନ୍ଥ "ହେତୁ ଉଦୟ ଭାଗବତ"ର କବି ଶିଶୁ ଅନନ୍ତ ଦାସଙ୍କ କବିତା ହେଉଛି ବର୍ଣ୍ଣନାତ୍ମକ ଏବଂ "ସ୍ତୁତି ଚିନ୍ତାମଣି" ର କବି ଭୀମ ଭୋଇଙ୍କ କବିତା ଗୀତିକବିତା, ପ୍ରଥମ ପୁସ୍ତକଟି ସମାଜକୈନ୍ଦ୍ରିକ ଓ ଦ୍ୱିତୀୟଟି ବ୍ୟକ୍ତିକୈନ୍ଦ୍ରିକ। ଶିଶୁ ଅନନ୍ତଙ୍କ ରଚନା କାଳ ଷୋଡ଼ଶ ଶତାବ୍ଦୀରେ ସମାଜ ଉପରେ ଏବଂ ଭୀମଭୋଇଙ୍କ ସମୟ ଊନବିଂଶ ଶତାବ୍ଦୀରେ ବ୍ୟକ୍ତି ଉପରେ ପ୍ରାଧାନ୍ୟ ଦିଆଯାଉଥିଲା। ଭୀମଭୋଇଙ୍କ ସମୟ ଥିଲା ନବଜାଗରଣର ଯୁଗ, ଉଭୟ ପୁସ୍ତକ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସମର୍ପିତ। "ହେତୁ ଉଦୟ ଭାଗବତ" ବୋଧ ହୁଏ ଜଣେ ବୟୋଜ୍ୟେଷ୍ଠ ପଞ୍ଚସଖା ଜଗନ୍ନାଥ ଦାସଙ୍କ କୃତ ଓଡ଼ିଆ ଭାଗବତ ଦ୍ୱାରା ଅନୁପ୍ରେରିତ ହୋଇଥିଲା। ଭାଗବତ ହେଉଛି ଭଗବତ୍ ବା ଈଶ୍ୱର ସମ୍ବନ୍ଧୀୟ ଭାଗବତ ଏକ ପୁରାଣ ବିଶେଷ। 'ଚିନ୍ତାମଣି' ଶବ୍ଦର ଅର୍ଥ ମଧ୍ୟ ଈଶ୍ୱର। 'ସ୍ତୁତି ଚିନ୍ତାମଣି'ରେ ଅଦ୍ୱୈତ ଈଶ୍ୱର, ଅଲେଖଙ୍କୁ ସ୍ତୁତି କରାଯାଇଛି। ଏଠାରେ ମନେ ରଖିବାକୁ ହେବ ଯେ ଶିଶୁ ଅନନ୍ତ ଜଣେ ବୈଷ୍ଣବ ଏବଂ ଭୀମ ଭୋଇ ମହିମା ଧର୍ମାବଲମ୍ବୀ। ଉଭୟ ସନ୍ଥକବି ଓ ଭକ୍ତ କବି। ଉଭୟେ ସନ୍ଥମାନଙ୍କ ଭଳି ମଣିଷ

ଓ ଜଗତର ମଙ୍ଗଳ କାମନା କରିଛନ୍ତି । ଶିଶୁ ଅନନ୍ତ ପଞ୍ଚସଖାଙ୍କ ମଧ୍ୟରେ ସର୍ବ କନିଷ୍ଠ ସଖା । ଭୀମଭୋଇ କନ୍ଧ ଜନଜାତିର ସନ୍ଥ ଏବଂ କବି । ଏହି ପ୍ରବନ୍ଧରେ ଉଦ୍ଦେଶ୍ୟ ହେଉଛି 'ହେତୁ ଉଦୟ ଭାଗବତ'ରେ ଥିବା ପରମ୍ପରାକୁ ଭୀମଭୋଇ ନିଜର ବ୍ୟକ୍ତି ପ୍ରତିଭା ଦ୍ୱାରା କିପରି ଉଭୟ ଆତ୍ମିକ ଓ ଆଙ୍ଗିକ ଦୃଷ୍ଟିରୁ ବିବର୍ତ୍ତିତ କରିଛନ୍ତି ତାର ଆଲୋଚନା କରିବା ।

ବିଶିଷ୍ଟ ଇଂରେଜୀ କବି –ସମାଲୋଚକ **ଟି.ଏସ୍. ଏଲିଅଟ୍** ୧୯୦୯ ମସିହାରେ ଏକ ପ୍ରବନ୍ଧ ଲେଖିଥିଲେ ଯାହାର ଶୀର୍ଷକ ଥିଲା Tradition and Individual Talent । ସେ ଏହି ପ୍ରବନ୍ଧରେ ଯୁକ୍ତି କରିଥିଲେ ଯେ ପରମ୍ପରା କହିଲେ କେବଳ ଅନୁକରଣ ବୁଝାଏ ନାହିଁ । ବରଂ ଏହା ପରବର୍ତ୍ତୀ ଜଣେ ଲେଖକର ଅବବୋଧ ବା ବୋଧଶକ୍ତି ସହିତ ଅଧିକ ସଂପୃକ୍ତ । ଏହା ଜଣେ ଲେଖକ ଲେଖୁଥିବା ବୌଦ୍ଧିକ ଓ ସାହିତ୍ୟିକ ପ୍ରସଙ୍ଗକୁ ପ୍ରସାରିତ କରେ । ଏହା ନିଶ୍ଚିତ ଭାବରେ ସମାଲୋଚନାମୂଳକ ଏବଂ ସୁକ୍ଷ୍ମରୁଚି ବିଶିଷ୍ଟ । ପରମ୍ପରା ପୂର୍ବ କୃତିର ବିଶିଷ୍ଟ ଉପାଦାନଗୁଡିକୁ ନିଶ୍ଚିତ ଭାବରେ ସୂଚିତ କରେ । ପରବର୍ତ୍ତୀ କୃତି ପୂର୍ବବର୍ତ୍ତୀ କୃତି ଅପେକ୍ଷା ଜଟିଳ ହୁଏ ଏହାର ସ୍ୱଭାବ ବା ଗୁଣ ଦୃଷ୍ଟିରୁ । ତେଣୁ ପରମ୍ପରା ଏକ ପରବର୍ତ୍ତୀ କୃତିର ଅତୀତର ନିରବଚ୍ଛିନ୍ନତାର ଧାରଣା ଦେବା ସଙ୍ଗେ ସଙ୍ଗେ ତାହାର କେଉଁ ଅଂଶ ପରିବର୍ତ୍ତିତ ହୋଇଛି ସେ ବିଷୟରେ କହିବ ।

ଏଲିଅଟ୍ ପୁଣି କହିଛନ୍ତି ଯେ ଏକ ନୂତନ କୃତିର ମୁଖ୍ୟ ଅଂଶ ଗୁଡ଼ିକ ଜଣେ ମୃତ ଲେଖକ ବା ନୂତନ ଲେଖକଙ୍କର ପୂର୍ବପୁରୁଷ ଲେଖକଙ୍କର ଅଂଶ ହୋଇପାରେ କିନ୍ତୁ ବ୍ୟକ୍ତି ପ୍ରତିଭା ନୂତନ କୃତିକୁ ପରିବର୍ତ୍ତିତ ବା ଆଂଶିକ ଭାବରେ ପରିବର୍ତ୍ତିତ କରିପାରେ । ଏଠାରେ ନୋବେଲ ପୁରସ୍କାର ପ୍ରାପ୍ତ ଫରାସୀ ଲେଖକ **ଆନ୍ଦ୍ରେ ଗାଇଡ୍** କହିଥିବା କଥାକୁ ଆମେ ଉଲ୍ଲେଖ କଲେ ଅସମୀଚୀନ ହେବନାହିଁ । ସେ କହିଥିଲେ "Everying has been said before but since nobody listens we have to keep going back and begin all over again". ସେ ବୋଧହୁଏ ଏଲିଅଟ୍‌ଙ୍କର ଟ୍ରାଡିସନ୍ (Trdition) କଥା କହିଛନ୍ତି ।

ଦୁଇ ପୁସ୍ତକରେ ମୁଖ୍ୟତଃ ଦୁଇ ଧର୍ମକଥା କୁହାଯାଇଛି । ପ୍ରଥମଟିରେ ଜ୍ଞାନମିଶ୍ରା ଭକ୍ତି ବୈଷ୍ଣବ ଧର୍ମ ଓ ଦ୍ୱିତୀୟଟି ହେଉଛି ମହିମା ଧର୍ମ / ମହିମା ଧର୍ମ ଆମ ମତରେ ହିନ୍ଦୁ ଧର୍ମର ଏକ ସଂସ୍କାର ଆନ୍ଦୋଳନ । ମହିମା ଧର୍ମର ସୃଷ୍ଟି ଓଡ଼ିଶାର ନବଜାଗରଣ

ସମୟରେ ଊନବିଂଶ ଶତାବ୍ଦୀରେ। ଏହି ନବଜାଗରଣ ସମୟରେ ମାନବବାଦୀ ଚେତନା ଓ ବ୍ୟକ୍ତିବାଦ ଆସିଥିଲା। ସେତେବେଳେ ସାହିତ୍ୟ କେବଳ ଗଣତାନ୍ତ୍ରିକ ହେଲା ନାହିଁ ଏହା ଅଶିଷ୍ଟ ବା ସାଧାରଣ ଲୋକ ସମ୍ବନ୍ଧୀ ହୋଇଗଲା। ଏହି ସମୟରେ ଛାପାକଳର ସୃଷ୍ଟି ହେଲା ଏବଂ ଏହି ଛାପାକଳ ସାମାଜିକ ଓ ଧାର୍ମିକ ପରିବର୍ତ୍ତନର ଏକ ମୁଖ୍ୟ ମାଧ୍ୟମ ହେଲା । ନବଜାଗରଣ ସମୟରେ ଜ୍ଞାନର ପ୍ରସାର ହେଲା ଯାହା ସେ ପର୍ଯ୍ୟନ୍ତ ମୁଖ୍ୟତଃ ବ୍ରାହ୍ମଣମାନଙ୍କ ହାତରେ ଥିଲା। କୁହାଯାଏ ଯେ ସେହି ସମୟରୁ ଆଧୁନିକ ଯୁଗର ଆରମ୍ଭ ହେଲା। ଏହା ହେଲା ନିରଙ୍କୁଶ ବ୍ୟକ୍ତିବାଦର ସମୟ। ଜୀବନରେ, ଚିନ୍ତାଧାରାରେ, ଧର୍ମରେ ଏବଂ ସାହିତ୍ୟ ତଥା କଳାରେ ଅନେକ ବୈପ୍ଳବିକ ପରିବର୍ତ୍ତନ ଆସିଲା।

ମଧ୍ୟଯୁଗରେ ଏକ ଆବଦ୍ଧ ସଭ୍ୟତା ଥିଲା। କିନ୍ତୁ ନବଜାଗରଣ ଏକ ନୂତନ ଉତ୍ସାହ ଆଣିଦେଲା। ଏହି ଉତ୍ସାହର ମୁଖ୍ୟ ଉପାଦାନଗୁଡ଼ିକ ବ୍ୟକ୍ତିଗତ ଓ ପାର୍ଥିବତା ସଂପର୍କିତ। ପାର୍ଥିବତା ଏହି ଅର୍ଥରେ ଯେ ବ୍ୟକ୍ତି ସାରାଜୀବନ ଜଡବାଦୀ ଓ ବିଷୟାସକ୍ତ ହେବ ଏବଂ ସେ ମୃତ୍ୟୁ ପରବର୍ତ୍ତୀ ଜୀବନ କଥା ଚିନ୍ତା କରିବ ନାହିଁ। ମଧ ଯୁଗରେ ତାକୁ କୁହାଯାଉଥିଲା ଯେ ଜୀବନ କ୍ଷଣସ୍ଥାୟୀ, ମଣିଷ କିଏ ଏବଂ କେଉଁ କାରଣରୁ ପୃଥିବୀକୁ ଆସିଛି-ସେ ବିଷୟ ସେ ଚିନ୍ତାକରିବ। ନବଜାଗରଣ ଆସିବାପରେ ସାହିତ୍ୟ ବ୍ୟକ୍ତିବାଦୀ ହେଲା ଓ ତାହାର ସ୍ୱରହେଲା ଗଣତାନ୍ତ୍ରିକ। ଏହି ସମୟରେ ବିଧିସଙ୍ଗତ କ୍ଷମତା ଓ ପ୍ରାମାଣିକ ଜୀବନକୁ ପ୍ରତ୍ୟାଖ୍ୟାନ କରାଗଲା ଏବଂ ମଣିଷକୁ କ୍ଷମତା ଦିଆଗଲା ନିଜର ସିଦ୍ଧାନ୍ତ ନିଜେ ନେବାପାଇଁ ତାହା ଠିକ୍ ହେଉ ବା ଭୁଲ୍ ହେଉ। ଧର୍ମରେ ପରିବର୍ତ୍ତନ ଆସିଲା ଏବଂ କୁହାଗଲା ଜଣେ ଈଶ୍ୱରଙ୍କ ସହିତ ସିଧାସଳଖ ସଂପର୍କ ସ୍ଥାପନ କରିପାରିବ, ସେଥିପାଇଁ କୌଣସି ମଧ୍ୟସ୍ଥ ଯଥା ମନ୍ଦିର, ମସ୍‌ଜିଦ୍, ଗୀର୍ଜା, ପୁରୋହିତ ବା ମୌଲବୀଙ୍କର ଆବଶ୍ୟକତା ନାହିଁ। ସେ ପୂର୍ବରୁ ପ୍ରଚଳିତ ଧର୍ମମତ ଓ ନିୟମଗୁଡ଼ିକୁ ତ୍ୟାଗ କଲା।

ବ୍ୟକ୍ତିବାଦର ମୁଖ୍ୟଦିଗ ହେଉଛି ବ୍ୟକ୍ତି ଓ ତାର ଚିନ୍ତାଉପରେ ପ୍ରାଧାନ୍ୟ ଦେବା। ମଣିଷ ସେତେବେଳେ ନିଜର ସର୍ବବିଧ ପାର୍ଥିବ ଉନ୍ନତି ଚାହିଁଲା, ସେହି ସମୟରେ ସମସ୍ତ କଳାରେ ରହିଲା ରଙ୍ଗ ଓ ଆବେଗର ଐଶ୍ୱର୍ଯ୍ୟ, ସୌନ୍ଦର୍ଯ୍ୟ ଏବଂ ଉଦ୍ଦାମତା। ଏହି ନବଜାଗରଣର ସମୟ ଭୀମଭୋଇଙ୍କର ସମୟ, ଶିଶୁ ଅନନ୍ତ ଦାସଙ୍କ ସମୟ ମଧ୍ୟ ଯୁଗରେ।

ଶିଶୁ ଅନନ୍ତ ଅନ୍ୟ ସଖା ଯଥା-ବଳରାମ, ଜଗନ୍ନାଥ, ଅଚ୍ୟୁତ ଓ ଯଶୋବନ୍ତଙ୍କ ଭଳି ଜ୍ଞାନମିଶ୍ରା ଭକ୍ତି ପ୍ରତି ଅନୁରକ୍ତ ଥିଲେ। ଯଦିଓ ସେମାନେ ସମସ୍ତ ଚୈତନ୍ୟଙ୍କର ଶିଷ୍ୟଥିଲେ, ସେମାନେ ରାଗାନୁଗାଭକ୍ତି ବା ରାଧାକୃଷ୍ଣଙ୍କ ପ୍ରେମଭକ୍ତିକୁ ଗ୍ରହଣ କରିନଥିଲେ। ଈଶ୍ୱରଙ୍କ ନିକଟରେ ନିଜକୁ ସମର୍ପଣ କରିଦେବାର ଯେଉଁ ଅନୁରାଗ ବା ଶ୍ରଦ୍ଧା ମନଭିତରେ ଉଦ୍ରେକ ହୁଏ ଏବଂ କ୍ରମେ କ୍ରମେ ଏହା ଗାଢରୁ ଗାଢତର ହୋଇଥାଏ ଏବଂ ସେତେବେଳେ ଭକ୍ତି ସୃଷ୍ଟି ହୋଇଥାଏ। ଭକ୍ତି ଏକ ଆତ୍ମିକ ଚେତନା। ଯିଏ ଜଗତର ସକଳ ସତ୍ତା ମଧ୍ୟରେ ଈଶ୍ୱରଙ୍କ ମଧ୍ୟରେ ଅନୁଭବ କରେ ଏବଂ ନିଜକୁ ସେ ସଦାବେଳେ ଈଶ୍ୱରଙ୍କ ମାଧ୍ୟମରେ ଦେଖେ, ସେ ପ୍ରକୃତ ଭକ୍ତ। ତେଣୁ ଶ୍ରୀମଦ୍‌ଭଗବତ୍ ଗୀତାରେ କୁହାଯାଇଛି-

ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂଚ଼ ମୟିପଶ୍ୟତି।
ତସ୍ୟାହଂ ନ ପ୍ରଣଶ୍ୟାମି ସଚ ମେନ ପ୍ରଣଶ୍ୟତି।।
(ଶ୍ରୀମଦ୍‌ଭଗବତ୍ ଗୀତା, ଷଷ୍ଠ ଅଧ୍ୟାୟ, ୩୦)

ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାରେ ବୈଷ୍ଣବ ଧର୍ମଦର୍ଶନର ଦୁଇଟି ମୁଖ୍ୟ ଧାରା ପ୍ରବାହିତ ହେଉଥିଲା। ପ୍ରଥମଟି ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ରକରି କର୍ମ ଜ୍ଞାନ, ଯୋଗ ଆଦି ଉପରେ ପର୍ଯ୍ୟବେସିତ ଜ୍ଞାନମାର୍ଗ ଏବଂ ଅନ୍ୟଟି ରାଧାକୃଷ୍ଣଙ୍କୁ କେନ୍ଦ୍ରକରି ସୃଷ୍ଟି ହୋଇଥିବା ଶ୍ରଦ୍ଧାଭକ୍ତି ବା ପ୍ରେମମାର୍ଗ। ଶ୍ରୀଚୈତନ୍ୟ ପ୍ରେମଭକ୍ତି ମାର୍ଗର ଉପାସକ ଥିଲେ। ଉତ୍କଳୀୟ ପଞ୍ଚସଖାଗଣ ଜଗନ୍ନାଥଙ୍କଠାରେ ଜ୍ଞାନମାର୍ଗରେ ରାଧାକୃଷ୍ଣଙ୍କୁ ଏକୀଭୂତ କରି ଏବଂ ଶ୍ରୀଚୈତନ୍ୟଙ୍କୁ ଗୁରୁରୂପେ ଗ୍ରହଣ କରି ପ୍ରେମଭକ୍ତି ମାର୍ଗକୁ ମଧ୍ୟ ଆପଣେଇ ଥିଲେ। ଜ୍ଞାନ ଓ ପ୍ରେମର ସମନ୍ୱୟରେ ସେମାନେ ସୃଷ୍ଟି କରିଥିଲେ ଏକ ନୂତନ ମାର୍ଗ ଯାହାକୁ କୁହାଗଲା ଜ୍ଞାନମିଶ୍ରା ଭକ୍ତି ମାର୍ଗ।

ସେମାନେ ଚିନ୍ତାକଲେ ଯେ ଭକ୍ତି ନଥିଲେ ଜ୍ଞାନ ମୂଲ୍ୟହୀନ । ଜ୍ଞାନଦ୍ୱାରା ବ୍ରହ୍ମସତ୍ତାର ପରିଚୟ ମିଳିପାରେ ମାତ୍ର ତାହା ଲାଭ କରିବା ସମ୍ଭବପର ନୁହେଁ। ସେଥିପାଇଁ ଭକ୍ତି ଆବଶ୍ୟକ। ମନୁଷ୍ୟ ନିଜକୁ ଈଶ୍ୱରଙ୍କ ନିକଟରେ ସଂପୂର୍ଣ୍ଣ ରୂପେ ସମର୍ପଣ କରିଦେଲେ ତାପାଖରୁ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଆଦି ଷଡ଼ରିପୁ ଦୂରେଇ ଯାଆନ୍ତି ଏବଂ ସେ ଧର୍ମ, ଅର୍ଥ, କାମ, ମୋକ୍ଷ ଆଦି ଚତୁର୍ବର୍ଗ ଫଳ ପ୍ରାପ୍ତିରେ ମୋହିତ ନ ହୋଇ ବାସ୍ତବ ବୈରାଗ୍ୟ ଭକ୍ତି ଲାଭ କରିଥାଏ।

ଶିଶୁ ଅନନ୍ତଙ୍କ ଦର୍ଶନରେ ସମସ୍ତ ସାଂସାରିକ ସୁଖ କ୍ଷଣିକ ମାତ୍ର । ଯେଉଁମାନେ ଅଳୀକ ସୁଖର ଅନୁଧାବନ କରନ୍ତି ସେମାନେ ମୂର୍ଖ ପଦବାଚ୍ୟ । ପରଂବ୍ରହ୍ମ ହିଁ ସକଳ ବାସ୍ତବ ସୁଖର ଆଧାର । ସେ ସତ୍, ଚିତ୍ ଓ ଆନନ୍ଦ ସ୍ୱରୂପ । ସେ କୃପାକଲେ ସମସ୍ତ ସାଂସାରିକ ଦୁଃଖରୁ ମୁକ୍ତିମିଳେ । ସେଥିପାଇଁ ଶିଶୁଅନନ୍ତ ଦାସ ଜ୍ଞାନମିଶ୍ରା ଭକ୍ତି ଭାବନା ଉପରେ ଗୁରୁତ୍ୱ ଦେଇ ଏହି କଳି ଯୁଗରେ କେବଳ ଈଶ୍ୱରଙ୍କ ନାମଭଜନ କରିବା ପାଇଁ ପରାମର୍ଶ ଦେଇଛନ୍ତି ।

ଈଶ୍ୱର ହେଉଛନ୍ତି ମାୟାଧର । ତାଙ୍କର ମାୟା ସମସ୍ତ ଜାଗତିକ ସୁଖ ଓ ଦୁଃଖର କାରଣ । ଶିଶୁ ଅନନ୍ତଙ୍କ ମତରେ କେବଳ ଈଶ୍ୱରଭକ୍ତି ସମସ୍ତ ଜାଗତିକ ଦୁଃଖରୁ ମୁକ୍ତି ଦେଇଥାଏ । ଆତ୍ମା ପରମାତ୍ମାଙ୍କ ଅଂଶବିଶେଷ । ପ୍ରତ୍ୟେକ ଘଟରେ ପରମାତ୍ମା ଆତ୍ମାରୂପରେ ବିରାଜମାନ କରୁଛନ୍ତି । ଭକ୍ତିଭାବର ପ୍ରଭାବରେ ଯେତେବେଳେ ଜୀବଠାରୁ ମାୟାର ପ୍ରଭାବ ଲୋପ ପାଇଥାଏ ସେତେବେଳେ ଆତ୍ମ-ସାକ୍ଷାତ୍କାର ସମ୍ଭବ ହୁଏ । ସେହି ଅବସ୍ଥାରେ ଆତ୍ମା ଓ ପରମାତ୍ମାଙ୍କ ଦ୍ୱୈତଭାବ ଲୋପ ପାଇଯାଏ ଏବଂ ସ୍ଥାବର, ଜଙ୍ଗମ, କୀଟ, ପତଙ୍ଗାଦି ସମସ୍ତଙ୍କ ଠାରେ ଭକ୍ତ ବ୍ରହ୍ମସତ୍ତା ଅନୁଭବ କରେ ।

ଶିଶୁ ଅନନ୍ତଙ୍କ ରଚନାରେ ଭକ୍ତିତତ୍ତ୍ୱ ବିଶ୍ଳେଷଣ କଲେ ଜଣାଯାଏ ସେ ତାଙ୍କ ଜୀବନଦର୍ଶନରେ ସାଧୁସନ୍ଥଙ୍କୁ ସମ୍ମାନ ଦେବା ସହିତ, ଈଶ୍ୱରଙ୍କ ନାମଜପ ଏବଂ ସର୍ବୋପରି ଗୁରୁଭକ୍ତିକୁ ବିଶେଷ ମହତ୍ୱ ପ୍ରଦାନ କରିଛନ୍ତି । ସେ ଗୁରୁଙ୍କୁ ଈଶ୍ୱରଙ୍କ ସହ ସମାନ ଭାବରେ ଦେଖିଛନ୍ତି । ତେଣୁ ତାଙ୍କ ସୃଷ୍ଟିରେ ଗୁରୁଭକ୍ତିରେ ରୂପାନ୍ତରିତ ହୋଇଛି ଈଶ୍ୱରଭକ୍ତି । ସେ ଲେଖିଛନ୍ତି-

ବନ୍ଦଇ ଶ୍ରୀଗୁରୁ ଚରଣ । ଗୁରୁ ଜୀବର ପରିତ୍ରାଣ ।
ଗୁରୁଟି ଆପେ ବ୍ରହ୍ମରାଶି । କଳ ସ୍ୱରୂପେ ତମ ଗ୍ରାସି ॥
ଶ୍ରୀଗୁରୁ ଆଦି ଶକ୍ତି ହୋଇ । ଆଦି ଅନାଦି ନାମବହି ।
ଅନାଦି ଠାରୁ ଆଦି ହୋଇ । ଏଣୁ ତା ଆଦି ଅନ୍ତ ନାହିଁ ॥

( *ମହାପୁରୁଷ ଶିଶୁ ଅନନ୍ତ ଦାସ ଗ୍ରନ୍ଥାବଳୀ,* "ହେତୁ ଉଦୟ ଭାଗବତ," ପ୍ରଥମ ଅଧ୍ୟାୟ ପୃଷ୍ଠା-୧୫୭)

ତାଙ୍କ ମତରେ କଳିଯୁଗର କଳୁଷରୁ ରକ୍ଷା ପାଇବାର ଏକ ମାତ୍ର ସହଜ ଉପାୟ ହେଉଛି ନାମଜପ । ଈଶ୍ୱରନାମଜପ କଲେ ଅଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ଭଳି ତ୍ରିତାପର ବିନାଶ ହୁଏ । ଏହି ନାମକୁ ପଞ୍ଚସଖାଗଣ ଏକାକ୍ଷର ପ୍ରଣବ ତଥା ଅଜପା ଗାୟତ୍ରୀ ଭାବରେ ଗ୍ରହଣ କରିଛନ୍ତି । ସେମାନଙ୍କର ମତରେ ନାମହିଁ ଜୀବନର ମୁକ୍ତିଦାତା । ବ୍ରହ୍ମ ଅପେକ୍ଷା ନାମକୁ ସେମାନେ ଅଧିକ ଗୁରୁତ୍ୱ ଦେଇଛନ୍ତି । ସନ୍ଥ ସାଧକ ଶିଶୁ ଅନନ୍ତ ବେଦ ବେଦାନ୍ତର ସାର ଭାବରେ ନାମକୁ ଗ୍ରହଣ କରିଛନ୍ତି । ତାଙ୍କ ମତାନୁଯାୟୀ ନାମ ସୃଷ୍ଟି ହେବା ପୂର୍ବରୁ ପରମସତ୍ତା ଅଣାକ୍ଷରଭାବରେ ବିଦ୍ୟମାନ ଥିଲା । ତାହା ଏକାକ୍ଷର ବା ଓଁ କାର ରୂପରେ ପ୍ରକାଶିତ ହେଲା ଏବଂ ସେହି ଏକାକ୍ଷରରୁ ନାମର ସୃଷ୍ଟି ହେଲା । ତାଙ୍କ ମତରେ ଏହି ଓଁକାର ସତ୍ୱ, ରଜ ଓ ତମ- ଏହି ତିନି ଗୁଣର ମିଶ୍ରିତ ରୂପ । ଏହା ବ୍ରହ୍ମନାମ ରୂପେ ପ୍ରକଟିତ ହୁଏ ଏବଂ ଶେଷରେ ସୃଷ୍ଟିର ସମସ୍ତ ତତ୍ତ୍ୱ ସେହି ନାମରେ ହିଁ ଲୀନ ହୋଇଯାଆନ୍ତି । ଶିଶୁ ଅନନ୍ତ କହିଛନ୍ତି-

ଏଣୁ ଯେ ସର୍ବେ ଏକ ବ୍ରହ୍ମ । ଅନାମୁଁ ନାମଟି ଜନମ ।।
ଯମ ବ୍ରହ୍ମରୂପୀ ହୋଇଣ । ସର୍ବେ ଏଥିରେ ହୋଇଲୀନ ।।

(*ମହାପୁରୁଷ ଶିଶୁ ଅନନ୍ତ ଦାସ ଗ୍ରନ୍ଥାବଳୀ,* "ହେତୁ ଉଦୟ ଭାଗବତ", ଦ୍ୱିତୀୟ ଅଧ୍ୟାୟ, ପୃଷ୍ଠା ୧୬୫)

"ହେତୁ ଉଦୟ ଭାଗବତ"ର ଦ୍ୱିତୀୟ ଅଧ୍ୟାୟରେ ଶିଶୁ ଅନନ୍ତ ଷୋଳ ନାମ, ବତିଶ ଅକ୍ଷର ଏବଂ ଚତୁର୍ଦ୍ଧା ମୂର୍ତ୍ତି ସଂପର୍କରେ ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ "ହରେ, ରାମ, କୃଷ୍ଣ, ଶ୍ୟାମ" ହେଉଛନ୍ତି ଚତୁର୍ଦ୍ଧାମୂର୍ତ୍ତି । ହରେ ହେଉଛନ୍ତି ବଳଭଦ୍ର, ରାମ ହେଉଛନ୍ତି ସୁଭଦ୍ରା, କୃଷ୍ଣ ହେଲେ ଜଗନ୍ନାଥ ଏବଂ ଶ୍ୟାମ ହୋଇଛନ୍ତି ସୁଦର୍ଶନ, ଯେଉଁମାନଙ୍କରେ ବୀଜମନ୍ତ୍ର ଯଥାକ୍ରମେ ହ୍ରାଂ, ଶ୍ରାଂ, କ୍ଲାଂ ଏବଂ ଧ୍ରାଂ । ବୀଜମନ୍ତ୍ରଯୁକ୍ତ ଷୋଳନାମ ବତିଶ ଅକ୍ଷର ମହାମନ୍ତ୍ର, ଛବିଶ ଅକ୍ଷରଯୁକ୍ତ ମନ୍ତ୍ରରାଜ ଏବଂ 'ପର ରଜ ଶଶ ବଦ' ଆଦି ଅଷ୍ଟ ଅବନା ପଞ୍ଚସଖା ନିର୍ଦ୍ଦେଶିତ ନାମତତ୍ତ୍ୱ ତଥା ସାଧନା ମାର୍ଗର ଏକ ଅମୂଲ୍ୟ ଦିଗ । ସେହିପରି ସେମାନେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ଉପନିଷଦୀୟ ବ୍ରହ୍ମବାଦୀ ତତ୍ତ୍ୱ, ଯୋଗମାର୍ଗ, କାୟାସାଧନା ଏବଂ ଷଡ଼ଚକ୍ର ଭେଦ ବିଷୟରେ କହିଛନ୍ତି ।

"ହେତୁ ଉଦୟ ଭାଗବତ"ରେ ୧୦ଟି ସ୍କନ୍ଧ ଅଛି । ଏଠାରେ ରୂପକ ଛଳରେ ଶିଶୁଅନନ୍ତ ଗୁରୁମହିମା ବର୍ଣ୍ଣନା କରିଛନ୍ତି । ଗୁରୁଙ୍କ ମହିମାରୁ ସେ ପରମହଂସଙ୍କ

ସ୍ଥାନ, ଷଡ଼ଚକ୍ର ସାଧନା ବା ହଂସ ସାଧନାର ଶୀର୍ଷସ୍ଥାନରେ ପହଞ୍ଚିଥିଲେ ବୋଲି କହିଛନ୍ତି ।

ଗ୍ରନ୍ଥଟିର ଦ୍ୱିତୀୟ ଅଧ୍ୟାୟରେ ମଧ୍ୟ ଗୁରୁ ମହିମା ବର୍ଣ୍ଣିତ । ଶିଷ୍ୟଙ୍କ ଶରୀରରେ ହାତରଖି ଗୁରୁ ସୃଷ୍ଟିତତ୍ତ୍ୱ, 'ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ' ଓ ଗୁରୁମହିମା ଆଦି ପ୍ରସଙ୍ଗରେ ବହୁତ କଥା କହିଛନ୍ତି । ସେ କହିଛନ୍ତି:

ଅନାଦି ପରେ ରେତ ରହି । ତାପରେ ଆଉ କେହିନାହିଁ ।।
ସେହି ରୂପଟି ଜନାର୍ଦ୍ଦନ । ସକଳ ଯହିଁ ହେୟେ ଲୀନ ।।
ସେହି ରୂପରେ ଥାଇ ରହି । ତା ଅନ୍ତ କେହି ନଜାଣଇ ।।
ଚାହାଂ ତୁ ନିର୍ମଳ ଗଗନ । ଗଗନ ପରେ ଏହୁ ଲୀନ ।।
ଦେଖ ଏ ନିଗମ ଘୋଟିଛି । ନିଶି ଦିବସେ ନାହିଁ କିଛି ।।
ରେହରୁ ଅରେହ ହୋଇଲା । ଅନାଦି ଈଶ୍ୱରଙ୍କ ଲୀଳା ।
ଈଶ୍ୱର ତେଜ ଅନ୍ତରାଳ । ତା ତହୁଁ ଜାତ ହେଲା କାଳ ।।
ଅଥ ଯେ ଈଶ୍ୱର ଅଟଇ, ଆଦି ଶକ୍ତିଟି କାଳ ହୋଇ ।।
(*ଶିଶୁଅନନ୍ତ ଗ୍ରନ୍ଥାବଳୀ*, 'ହେତୁ ଉଦୟ ଭାଗବତ', ଦ୍ୱିତୀୟ ଅଧ୍ୟାୟ, ପୃ-୧୬୪)

ଗ୍ରନ୍ଥର ତୃତୀୟ ଅଧ୍ୟାୟରେ 'ବ୍ରହ୍ମ ଦର୍ଶନ'ର ବ୍ୟାଖ୍ୟା କରିବାକୁ ଯାଇ କବି କହିଛନ୍ତି-

ଯେ ବ୍ରହ୍ମଶୂନ୍ୟର ବିଚ୍ଚର । ତୋର ଦେହରେ ହେତୁ କର ।
ତୋ ଦେଖି ଦେଖ ମୋତେ ତୁହି । ସକଳ ଏହି ସିନା ହୋଇ ।
(*'ହେତୁ ଉଦୟ ଭାଗବତ'*, ତୃତୀୟ ଅଧ୍ୟାୟ ପୃ-୧୬୬)

ଏହି ଅଧ୍ୟାୟରେ ଶରୀର ମଧ୍ୟରେ ମନର ସ୍ଥାନ ନିରୂପଣ କରିବାକୁ ଯାଇ କବି କହିଛନ୍ତି, "ଭୂଲତା ମଧ୍ୟରେ ଯେ ମନ । ବାର ଯୋଜନ ତା ଗମନ" ।। ଜ୍ଞାନମିଶ୍ରା ସାଧାନା ମାର୍ଗରେ ଅସ୍ଥିର ମନକୁ ସ୍ଥିର କରିବାର ଏକମାତ୍ର ସହଜ ପନ୍ଥା ହେଉଛି ଭୂଲତା ମଧ୍ୟରେ ଦୃଷ୍ଟିକେନ୍ଦ୍ରୀଭୂତ କରିବା । ଏହି ଅଭ୍ୟାସ କଲେ ମନ ଆପେ ଆପେ ସ୍ଥିର ହୋଇଯିବ । ମନ ସ୍ଥିର ହୋଇଗଲେ ବ୍ରହ୍ମାଣ୍ଡର ସମସ୍ତ ଚିତ୍ର ଚିତ୍ତରେ ପ୍ରତିବିମ୍ବିତ ହେବ । ଏହି ଅଧ୍ୟାୟରେ ଶରୀର ମଧ୍ୟରେ ଷୋଳନାମ, ବତିଶ ଅକ୍ଷର, ମହାମନ୍ତ୍ର,

ମନ୍ତ୍ରରାଜ, ଚତୁର୍ଦ୍ଧା ମୂର୍ତ୍ତି ଏବଂ ଅଷ୍ଟ ଅବନା ପ୍ରଭୃତି ତତ୍ତ୍ୱ କିଭଳି ବିରାଜିତ-ତାହାର ଏକ ବର୍ଣ୍ଣନା ଦେଇଛନ୍ତି ।

ପୁଣି ଏହି ଅଧ୍ୟାୟରେ ବ୍ରହ୍ମଜ୍ଞାନତତ୍ତ୍ୱ ବର୍ଣ୍ଣନା କରାଯାଇଛି । ଏହା ଜାଣିଥିବା ସାଧକର ସ୍ଥାନ ଗୋଲକ ବୈକୁଣ୍ଠରେ । ଚତୁର୍ଥ ଅଧ୍ୟାୟରେ ଗାୟତ୍ରୀ ତତ୍ତ୍ୱ ସହିତ ପିଣ୍ଡ ମଧ୍ୟରେ ବିଭିନ୍ନ ଅବତାରର ବର୍ଣ୍ଣନା କରାଯାଇଛି । ଏହି ଅଧ୍ୟାୟରେ 'ବ୍ରହ୍ମଗାୟତ୍ରୀ', 'ବିଷ୍ଣୁଗାୟତ୍ରୀ', ଏବଂ 'ଶିବ ଗାୟତ୍ରୀ' ମନ୍ତ୍ରର ମହିମା ବର୍ଣ୍ଣିତ ।

ଜଗନ୍ନାଥ ଦାସଙ୍କର ଶ୍ରୀମଦ୍‌ଭାଗବତ ଏକାଦଶ ସ୍କନ୍ଧର ସପ୍ତମ, ଅଷ୍ଟମ ଏବଂ ନବମ ଅଧ୍ୟାୟରେ ଅବଧୂତ ଉପାଖ୍ୟାନ ତଥା ଅବଧୂତଙ୍କ ଚବିଶଗୁରୁ ପ୍ରସଙ୍ଗ ଯେଭଳି ଭାବରେ ବର୍ଣ୍ଣିତ ହୋଇଛି, "ହେତୁ ଉଦୟ ଭାଗବତ"ରେ ମଧ ସେହିଭଳି ଅବଧୂତ ପ୍ରସଙ୍ଗର ଅବତାରଣା କରାଯାଇଛି ମାତ୍ର "ହେତୁ ଉଦୟ ଭାଗବତ"ର ଅବଧୂତ ହେଉଛନ୍ତି ବାଙ୍କୀଗଡ଼ର ରାଜା ଶୁକସେନଙ୍କ ପୁତ୍ର କୃତସେନ । ଏଥିରେ ଅଷ୍ଟାଙ୍ଗ ଯୋଗ କଥା ମଧ କୁହାଯାଇଛି । ଶରୀରରେ ଇଡ଼ା, ପିଙ୍ଗଳା ନାଡ଼ୀ ଚନ୍ଦ୍ର ଓ ସୂର୍ଯ୍ୟ ରୂପରେ ବିଦ୍ୟମାନ । ପ୍ରବାହିତ ହେଉଥିବା ପ୍ରାଣବାୟୁକୁ ସୁଷୁମ୍ନା ନାଡୀରେ ପ୍ରବେଶ କରାଇ ପରିଶେଷରେ 'ସହସ୍ରାର'ରେ ପହଞ୍ଚାଇବା ହେଉଛି ଅଷ୍ଟାଙ୍ଗ ଯୋଗର ଲକ୍ଷ୍ୟ । ଏହାଦ୍ୱାରା ଜୀବ ସହିତ ପରମର ଭେଟ ହୋଇଥାଏ । କବିଙ୍କ ଭାଷାରେ –

ଅମନେ ହେତୁ ରଖ ତୁହି । ଦେଖିବୁ କେମନ୍ତେ ଦିଶଇ ।।
ଯେ ରୂପ ଦେଖିବୁ ନୟନ । ସେଟି ଅନାଦି ଭଗବାନ ।।
ଅଲେଖ ଅବର୍ଣ୍ଣ ଅଟଇ । ଅବର୍ଣ୍ଣ ବର୍ଣ୍ଣ ସେ ନୁହଇ ।।

ଚବିଶ ଗୁରୁଙ୍କ ଠାରୁ ଶିକ୍ଷାପ୍ରାପ୍ତ ହେବାପାଇଁ ଗୋରେଖନାଥ କୃତସେନଙ୍କୁ ଅବଧୂତ ଦୀକ୍ଷା ଦେଇ ଉପଦେଶ ଦେଇଛନ୍ତି । ଏହି ଚବିଶ ଗୁରୁ ଚବିଶତତ୍ତ୍ୱ, ଯାହା ସନ୍ଥ ଦର୍ଶନରେ ଏକ ପ୍ରତୀକାତ୍ମକ ପ୍ରୟୋଗ । ଉଦାହରଣ ସ୍ୱରୂପ 'ସାଗର' ଯିଏ ଅବଧୂତଙ୍କର ପ୍ରଥମ ଗୁରୁ, ବିଶାଳତା ଓ ଗଭୀରତାର ପ୍ରତୀକ ସାଗର ଭଳି ସାଧକର ମନ ବିଶାଳ ତଥା ଗଭୀର ହେବା ବାଞ୍ଛନୀୟ ।

ଗ୍ରନ୍ଥର ପଞ୍ଚମ ଅଧ୍ୟାୟରେ ଅବଧୂତ ରୂପୀ କୃତସେନଙ୍କର ସିଦ୍ଧିର ପ୍ରମାଣ ବର୍ଣ୍ଣିତ । ଏଥିରେ ଷଡ଼ଚକ୍ର ସାଧନା କଥା କୁହାଯାଇଛି ଷଷ୍ଠ ଅଧ୍ୟାୟରେ । ବ୍ରହ୍ମଲୀଳା

ସମ୍ବନ୍ଧୀୟ ବର୍ଣ୍ଣନା ସହିତ ଜ୍ଞାନମାର୍ଗର ବିସ୍ତୃତ ବର୍ଣ୍ଣନା ରହିଛି। ଏଥିରେ ପିଣ୍ଡ ମଧ୍ୟରେ କିପରି ଷଡ଼ଚକ୍ର ବିଦ୍ୟମାନ ସେ ବିଷୟରେ କୁହାଯାଇଛି। ଏଥିରୁ ଅନୁମିତ ହୁଏ ପଞ୍ଚସଖାଙ୍କ ଜ୍ଞାନମିଶ୍ରା ଯୋଗରେ ଷଡ଼ଚକ୍ର ଜ୍ଞାନ ଏକ ସ୍ୱତନ୍ତ୍ର ସୃଷ୍ଟି ଯାହା ପତଞ୍ଜଳି ଯୋଗ ଦର୍ଶନ ତଥା ବୌଦ୍ଧ, ନାମ ଧର୍ମର ଯୋଗଠାରୁ ଭିନ୍ନ।

ସପ୍ତମ ଅଧ୍ୟାୟରେ 'ଦଶାକ୍ଷରୀ ମନ୍ତ୍ର', 'ଅଷ୍ଟଦଶାକ୍ଷରୀ ମନ୍ତ୍ର' ତଥା 'ମନ୍ତ୍ରରାଜ' ତତ୍ତ୍ୱ ବର୍ଣ୍ଣିତ। ମନ୍ତ୍ରଗ୍ରହଣର ପ୍ରୟୋଜନୀୟତା ଏବଂ ମନ୍ତ୍ର ଅବମାନନା କରୁଥିବା ବ୍ୟକ୍ତିର ଦୈବୀଦଣ୍ଡ ସଂପର୍କରେ ଏହି ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି। ଅଷ୍ଟମ ଅଧ୍ୟାୟରେ 'ହରାଦି', 'ରାମାଦି' ତତ୍ତ୍ୱ ବର୍ଣ୍ଣନା କରାଯାଇଥିବାବେଳେ ନବମ ଅଧ୍ୟାୟରେ ଓଡିଶୀ ଜ୍ଞାନମିଶ୍ରା ପ୍ରେମଭକ୍ତି ତତ୍ତ୍ୱ ଦେଖିବାକୁ ମିଳିଥାଏ। ଶ୍ରୀକୃଷ୍ଣଙ୍କ ସେବା କରିବା ନିମିତ୍ତ ଋଷିଗଣ ଗୋପୀରୂପରେ ଗୋପପୁରରେ ଜନ୍ମ ହୋଇଥିଲେ। ଶିଶୁ ଅନନ୍ତ ଏଠାରେ ରାଧା ଏବଂ କୃଷ୍ଣଙ୍କୁ ଏକଦେହୀ ଭାବରେ ବର୍ଣ୍ଣନା କରିଛନ୍ତି। ବୀଜତତ୍ତ୍ୱରେ ସେ ହେଉଛନ୍ତି କ୍ଲୀଂ ବୀଜ। ଏହି ଅଧ୍ୟାୟର ଶେଷଭାଗରେ ଗୁରୁଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରି ଶିଶୁ ଅନନ୍ତ ଲେଖିଛନ୍ତି:

ତୁମ୍ଭେ କରୁଣାମୟ ସିନ୍ଧୁ। ତାରିବ ଭବ ପରମାଦୁ।।

ଏ ଭବ ସଂସାର ବାହାନ। ଫିଟିଲା ମୋହର ବନ୍ଧନ।।

ଗୁରୁ ଏବଂ ବୈଷ୍ଣବଙ୍କ ଭଗବାନ ଶ୍ରୀକୃଷ୍ଣଙ୍କୁ ଶିଶୁଅନନ୍ତ ଏକ ଭାବରେ ଅନୁଭବ କରିଥିଲେ।

ଗ୍ରନ୍ଥର ଅନ୍ତିମ ତଥା ଶେଷ ଅଧ୍ୟାୟରେ 'ଶ୍ରୀକ୍ଷେତ୍ର ମହିମା' ବର୍ଣ୍ଣିତ। ଏହି କ୍ଷେତ୍ରର କଳ୍ପବଟ ଯୋଗମାୟା ସ୍ୱରୂପୀ ଏବଂ ସେହି ବଟର ଶୀର୍ଷ ଭାଗରେ ଅଛନ୍ତି ଭାବଗ୍ରାହୀ ନାରାୟଣ। ଶ୍ରୀଗୁରୁ କୃପାରୁ ଆତ୍ମଜ୍ଞାନ ପ୍ରାପ୍ତ ହୋଇଥିବାରୁ ଶିଶୁ ଅନନ୍ତ ଶେଷରେ ଲେଖିଛନ୍ତି:

ପରମ ପୁରୁଷ ସେ ଗୁରୁ। ତାରିଲେ ସଂସାର ମଧ୍ୟରୁ।
ଗୁରୁ ପରମ ମୁକ୍ତି ଦାତା। ଗୁରୁ ସେ ଅଖିଳ କରତା ।।
ଗୁରୁ ନିସେବି ଯେଉଁ ଜନ। ଭବରେ ଜନ୍ମ ପୁନଃପୁନଃ।।
ନିସ୍ତାର ଗତି ସେ ନୁହଇ। ଅନ୍ତେ ନରକେ ପଡ଼େ ଯାଇ।।

ନରକ ନୁହଇ ସେ ପାର । କରଇ ନରକ ଆହାର ।।
ଏ ମନ୍ତେ ଅତଯାତ ହୋଇ । ଜୀବ ଉଦ୍ଧରି ନ ପାରଇ ।।

ପରିଶେଷରେ ଏତିକି କୁହାଯାଇ ପାରେ ଯେ ମନକୁ ଆୟତ୍ତ କରି ହେତୁ ବା ଜ୍ଞାନ ସହାୟତାରେ ଜୀବ-ପରମର ମିଳନ କରାଇଲେ ମିଳିବ ପ୍ରେମାନନ୍ଦ ତଥା ନିଷ୍କାମ ଭକ୍ତି ।

ବର୍ତ୍ତମାନ କବିଙ୍କର କବିତ୍ୱ ବିଷୟରେ ଆଲୋଚନା କରିବା । ପୂର୍ବରୁ କୁହାଯାଇଛି ଯେ "ହେତୁ ଉଦୟ ଭାଗବତ" ବୋଧହୁଏ ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ ଅନୁପ୍ରେରଣାରେ ରଚିତ। ଏହା ଜ୍ଞାନମିଶ୍ରା ଭକ୍ତିକୁ ଜନସାଧାରଣଙ୍କ ନିକଟରେ ପରିବେଷଣ କରିଛି। ବହୁ ଓଡ଼ିଆଙ୍କର ନୈତିକ ଓ ଆଧ୍ୟାତ୍ମିକ ଜୀବନକୁ ପରିପୁଷ୍ଟ କରିଛି। କିନ୍ତୁ ବିଚାର କରାଯାଉ ଏହାର କାବ୍ୟିକ ମୂଲ୍ୟ ଓଡ଼ିଆ ସାହିତ୍ୟ ଇତିହାସରେ।

କବିତା ହେଉଛି ଛନ୍ଦୋବଦ୍ଧ ରଚନାର କଳା ବା କୌଶଳ। ଏହା କଥିତ ବା ଲିଖିତ ଭାଷାରେ ଉପଲବ୍ଧ ହୋଇପାରେ। ଏହାର ଉଦ୍ଦେଶ୍ୟ ପାଠକ ଭିତରେ ଏକ ଆବେଗିକ ବା ଭାବପ୍ରବଣ ପ୍ରତିକ୍ରିୟା ସୃଷ୍ଟି କରିବା ଯାହା କେବଳ ତଥ୍ୟ ପ୍ରଦାନ କରୁଥିବା ରଚନା କରିପାରେ ନାହିଁ। **କ୍ଲାଇବ୍ ସାମସନ୍** ନାମକ ସମାଲୋଚକଙ୍କ ମତରେ ଏହା ଶବ୍ଦମାନଙ୍କର ଏକ ଛନ୍ଦୋବଦ୍ଧ ରୂପ ଯାହା ପାଠକ ନିକଟରେ କବିର କାଳ୍ପନିକ, ଭାବପ୍ରବଣ ଓ ବୌଦ୍ଧିକ ଅନୁଭୂତିକୁ ପ୍ରକାଶ କରେ।

ସାମସନ୍‌ଙ୍କ ଏହି ମତରୁ ଜଣାଯାଏ ଯେ ପାଠକ ଏକ ରଚନାକୁ କବିତା ବୋଲି ଗ୍ରହଣ କରିବ ନାହିଁ ଯଦି ସେ ଏଥିରୁ କାଳ୍ପନିକ-ଆବେଗିକ-ବୌଦ୍ଧିକ ଅନୁଭୂତି ପାଏ ନାହିଁ। ସଫଳ କବିତାରେ ଥାଏ, ଲେଖକର ଶାବ୍ଦିକ ଦକ୍ଷତାର ସ୍ୱୀକୃତି ଏବଂ ତାର ଅନୁଭୂତିର ସଂପୂର୍ଣ୍ଣତା ଉପରେ ଦୃଢ଼ବିଶ୍ୱାସ। ତେଣୁ କବିକୁ ଛନ୍ଦୋବଦ୍ଧତା, ଶବ୍ଦ ସଂଯୋଜନ, ଶବ୍ଦ ଚୟନ ଓ ପ୍ରୟୋଗ, ବାକ୍ୟରୀତି, ଅନ୍ତର୍ନିହିତ ଅର୍ଥ ପ୍ରକାଶର ଋତୁରୀ ଏବଂ ଉପମା, ପ୍ରତୀକ ଭଳି କାବ୍ୟିକ ଅଳଙ୍କାରର ପ୍ରୟୋଗ କରିବାକୁ ପଡ଼ିଥାଏ। କବିତାର ଛାନ୍ଦୋବଦ୍ଧ ରୂପ ଆବେଗକୁ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଏହାକୁ ନିୟନ୍ତ୍ରଣରେ ରଖିଥାଏ।

ଏ ସବୁକୁ ଦୃଷ୍ଟିରେ ରଖି ଆମେ "ହେତୁ ହୃଦୟ ଭାଗବତ" ର କାବ୍ୟିକ ଗୁଣଗୁଡ଼ିକୁ ଅନୁଶୀଳନ କରିବା। ଗ୍ରନ୍ଥଟିର ମୁଖ୍ୟ ଆବେଗ ହେଉଛି ଜ୍ଞାନମିଶ୍ରା ଭକ୍ତି। କିନ୍ତୁ ତାହା ସହିତ ରହିଛି କାବ୍ୟିକ ସୌନ୍ଦର୍ଯ୍ୟ। ଆତ୍ମିକ ଦୃଷ୍ଟିରୁ ଏହା ଆମକୁ ଏକ ଆଧ୍ୟାତ୍ମିକ ଦର୍ଶନ କଥା କହେ ଯାହା ଭକ୍ତି ଓ ଜ୍ଞାନର ଏକ ସମ୍ମିଶ୍ରଣ। ଏହି ଭକ୍ତି ଈଶ୍ୱରଙ୍କ ପ୍ରତି ନିବେଦିତ। ଏହାର ଏକ ଅଦ୍ୱୈତବାଦୀ ଛାଞ୍ଚ ରହିଛି ଯାହା ଅନ୍ତର୍ଭୁକ୍ତ କରିଛି ବୌଦ୍ଧ, ନାଥ, ବୈଦିକ ସଂହିତା, ବ୍ରାହ୍ମଣ, ଉପନିଷଦ ଏବଂ ସ୍ମୃତି ଶାସ୍ତ୍ରକୁ । ଏହା କର୍ମ, ଜ୍ଞାନ, ଭକ୍ତି ଏବଂ ଯୋଗ –ଏହି ଚାରିଗୋଟି ଭାରତୀୟ ଦର୍ଶନରେ ଈଶ୍ୱରଙ୍କୁ ପାଇବାର ପଥକୁ ବ୍ୟାଖ୍ୟା କରିଛି। ପୁଣି ଏଥିରେ ଅଛି ନୈତିକତା।

ଏହା ଜ୍ଞାନମିଶ୍ରା ଭକ୍ତି ତତ୍ତ୍ୱକୁ ନେଇ ରଚିତ ଯାହାକୁ ଅଳ୍ପ ଲୋକ ବୁଝିପାରିବେ ଏବଂ ଉପଭୋଗ କରିପାରିବେ, ଯଦି ତାଙ୍କର ସ୍ୱତନ୍ତ୍ର ଜ୍ଞାନ ବା ଆଗ୍ରହ ଥିବ। ଏହା ଈଶ୍ୱରଙ୍କ ନିକଟରେ ସଂପୂର୍ଣ୍ଣ ଆତ୍ମସମର୍ପଣ ଉପରେ ପ୍ରାଧାନ୍ୟ ଦେଇଛି ଏବଂ ପାଠକକୁ ପ୍ରବର୍ତ୍ତାଇଛି ଈଶ୍ୱର ସମ୍ବନ୍ଧୀୟ ଗ୍ରନ୍ଥପାଠ, ତାଙ୍କର ନାମ ଜପ ଏବଂ ଈଶ୍ୱର ସମ୍ବନ୍ଧୀୟ ଶାସ୍ତ୍ରକୁ ଶ୍ରବଣ ଓ ମନନ କରିବା ପାଇଁ ଏବଂ ଯୋଗ ମାଧ୍ୟମରେ ତାଙ୍କ ସହିତ ମିଳିତ ହେବାପାଇଁ । ତେଣୁ ଶିଶୁ ଅନନ୍ତ ଲେଖିଛନ୍ତି:

ବେଳହୁଂ ଗୋବିନ୍ଦ ସୁମର। ତୋ ପଛେ ଗୋଡାଇଛି କାଳ।।
ସେ କାଳ ଘଉଡିଣ ତୁହି। ସତ ଶାନ୍ତିରେ ରଖ ଦେହୀ।।
ଭୂଲତା ମଧ୍ୟେ ହେତୁ ରଖ। ସକଳ କଳୁଷ ଉପେଖ।।

(*ଶିଶୁ ଅନନ୍ତ ଗ୍ରନ୍ଥାବଳୀ*, ପୃ ୧୫୯)

ଏହି ପଂକ୍ତି ଗୁଡ଼ିକରେ ଦୁର୍ବୋଧ୍ୟ ଚିନ୍ତା ରହିଛି କିନ୍ତୁ ପାଠକ ଏହି ପଂକ୍ତି ଗୁଡିକର ଅର୍ଥ ବୁଝିବା ପୂର୍ବରୁ ପ୍ରକାଶିତ ଭାବ ନିକଟରେ ପହଞ୍ଚିଯାଏ। ପାଠକର ଏକ କାଳ୍ପନିକ ଆବେଗାତ୍ମକ-ବୌଦ୍ଧିକ ଅନୁଭବ ଆସେ। ଏହା ସମ୍ଭବ ହୋଇ ପାରିଛି ଶାବ୍ଦିକ କୌଶଳ ଯୋଗୁଁ।

ଗ୍ରନ୍ଥଟିରେ ଗୁରୁଙ୍କ ଉପରେ ବିଶେଷ ପ୍ରାଧାନ୍ୟ ଦିଆଯାଇଛି, ଗୁରୁଙ୍କୁ ନିରାକାର, ପରଂବ୍ରହ୍ମ ଓ ନାରାୟଣଙ୍କ ସହ ତୁଳନା କରାଯାଇଛି:

ଶୁଣ ହୋ ମନ ମୋ ଉତ୍ତର। ଗୁରୁଟି ଆପେ ନିରାକର।।
ଗୁରୁ ପରମବ୍ରହ୍ମ ହୋଇ। ଗୁରୁଟି ବୈଷ୍ଣବ ଗୋସାଇଁ।।

ଗୁରୁ ସାକ୍ଷାତେ ନାରାୟଣ। ବେଦରେ ବ୍ରହ୍ମରୂପେ ପୁଣ।।
ବେଦରେ ବ୍ରହ୍ମ ରୂପେ ଥାଇ। ସକଳ ସର୍ଜନା କରଇ।।
ଗୁରୁ ବୈଷ୍ଣବ କୃଷ୍ଣ ଏକ। ଶୁଣ ହୋ ସୁଜ୍ଞାନୀ ବିବେକ।।
(*ଶିଶୁ ଅନନ୍ତ ଗ୍ରନ୍ଥାବଳୀ*, ପୃ-୧୮୬)

ଅତି ସରଳ ଭାଷାରେ ଶିଶୁ ଅନନ୍ତ ଈଶ୍ୱରପ୍ରାପ୍ତିର ସାଧନା ବତାଇଛନ୍ତି :

ଜୀବ ପରମ ଏକ କରି। ସାଧିବୁ ଅଜ୍ଞ ଅଜ୍ଞ କରି।।
ସାଧନା ଦୃଢ଼ କରି ତୁହି। ମନକୁ ନିମଗ୍ନେଣ ଥୋଇ।।
ଅମନ ହେତୁ ରଖ ତୁହି। ଦେଖିବୁ କେମନ୍ତ ଦିଶଇ।।
ଯେ ରୂପେ ଦେଖିବୁ ନୟନ। ସେଟି ଅନାଦି ଭଗବାନ।।
ଅଲେଖ ଅବର୍ଣ୍ଣ ଅଟଇ। ଅବର୍ଣ୍ଣ ବର୍ଣ୍ଣ ସେ ନୁହଇ ।।

ଆବେଗର ସଫଳ ପରିପ୍ରକାଶ ଘଟେ ଏବଂ କବିତାର ପ୍ରତିଷ୍ଠା ଆସେ। ଯେତେବେଳେ ଶୁଦ୍ଧ ସୌନ୍ଦର୍ଯ୍ୟାତ୍ମକ ଅନୁଭୂତିର ଉଦ୍ରେକ ହୁଏ ନିୟନ୍ତ୍ରିତ ଛନ୍ଦ, ଅଳଙ୍କାର, ସାଙ୍ଗୀତିକତା ପ୍ରଭୃତି ଦ୍ୱାରା ଶିଶୁ ଅନନ୍ତ ଏ ସବୁର ପ୍ରୟୋଗ କରିଛନ୍ତି। ତାଙ୍କର ଏ ସବୁ ପ୍ରୟୋଗର ଅନ୍ୟ ଏକ କାରଣ ହେଲା –ଗଭୀର ଦାର୍ଶନିକ ଦୃଷ୍ଟିକୋଣକୁ ପାଠକ ନିକଟରେ ପହଞ୍ଚାଇବା ଏବଂ ତାକୁ ବୋଧଗମ୍ୟ କରିବା। ବିଭିନ୍ନ ସତ୍ୟକୁ ସେ ସଂକ୍ଷିପ୍ତ ପରିପ୍ରକାଶ ଓ ଅଳ୍ପକଥନ ଦ୍ୱାରା ସ୍ୱତଃସିଦ୍ଧ କରି ଦେଇଛନ୍ତି। ଆମେ ଏଠାରେ କେତେକ ଉଦାହରଣ ଦେବା।

ବେଳହୁଁ ଗୋବିନ୍ଦ ସୁମର। ତୋ ପଛେ ଗୋଡ଼ାଉଛି କାଳ।
ଏ ଭବ ସଂସାର ସାଗର। ମୋହେ ଜଡ଼ିତ କଳେବର।
ଭ୍ରମର ଅଟଇ ନାସିକା। ବାସନା ବାରୁଥାଏ ଏକା।
ତୁଣ୍ଡ କବାଟ ଗଲା ଫିଟି। ଜାଣିଲେ ସର୍ବଜନ ସେଟି।
ଶ୍ରୀଗୁରୁ ନାମ ମୀନ ହୋଇ। ରହିଣ ଅଛି ଭବନଇ।

ଗ୍ରନ୍ଥଟିର ଏହିଭଳି ଅସଂଖ୍ୟ ପ୍ରବାଦ-ବାକ୍ୟ ରହିଛି। ଏଥିରେ ଅଛି ନୈତିକ ଉପଦେଶ ଏବଂ ଏ ସବୁ ପାଠକର ମନକୁ ଛୁଏଁ। ସେଗୁଡ଼ିକ ପ୍ରତି ମଧ୍ୟ ବିଦ୍ୱାନ ଓ ସାଧୁସନ୍ଥମାନେ ଆକୃଷ୍ଟ ହୋଇଥାନ୍ତି କାରଣ ସେଗୁଡ଼ିକରେ ଦାର୍ଶନିକ ସତ୍ୟମାନ

ରହିଛି। ଏହି ଗ୍ରନ୍ଥ ବହୁ ଓଡ଼ିଆଙ୍କର ନୈତିକ ଜୀବନକୁ ନିୟନ୍ତ୍ରିତ କରିବା ସଙ୍ଗେ ସଙ୍ଗେ ଭକ୍ତିଧର୍ମର ପ୍ରଚାର କରିଛି ଏହି ଆକର୍ଷଣୀୟ ମାଧ୍ୟମ ଦ୍ୱାରା।

ସାହିତ୍ୟିକ ଭାବ ପ୍ରକାଶ ପାଇଁ ଭାଷା ସର୍ବଦା ଏକ ଉତ୍କୃଷ୍ଟ ମାଧ୍ୟମ ହୋଇ ରହିଥାଏ। ଭାଷା ମନୋରମ ହେଲେ କବିତାର ଭାବ ସଫଳ ଭାବରେ ପ୍ରକାଶିତ ହୁଏ। ଶିଶୁ ଅନନ୍ତ ଏ ବିଷୟରେ ସଚେତନ ଥିଲେ। ପଞ୍ଚସଖାଙ୍କ ପୂର୍ବରୁ ସାରଳା ଦାସ ଓଡ଼ିଆ ମହାଭାରତ ରଚନା କରିଥିଲେ। ସେ କଥିତ ଓଡ଼ିଆ ଭାଷାକୁ ତାଙ୍କ ଗ୍ରନ୍ଥରେ ବ୍ୟବହାର କରିଥିଲେ। ତାଙ୍କ ପରି ଓ ଜଗନ୍ନାଥ ଦାସଙ୍କ ପରି ଶିଶୁ ଅନନ୍ତ ଓଡ଼ିଆ ଭାଷାକୁ ମାର୍ଜିତ କରିବାକୁ ଚେଷ୍ଟା କରିଥିଲେ। ଏହି ଭାଷାକୁ ସୁନ୍ଦର ଓ ରୁଚିସମ୍ପନ୍ନ କରିବାପାଇଁ ଏହା ଭିତରକୁ ନୂତନ ଶବ୍ଦମାନ ଆଣିଥିଲେ ଏବଂ ଏହାପାଇଁ ନୂତନ ଶବ୍ଦମାନ ସୃଷ୍ଟି କରିଥିଲେ। ତାଙ୍କ ଉଦ୍ଦେଶ୍ୟ ଥିଲା ଏହି ଭାଷାକୁ ଜଟିଳ ଜ୍ଞାନମିଶ୍ରା ଭକ୍ତି ତତ୍ତ୍ୱ ପ୍ରକାଶର ମାଧ୍ୟମ କରିବା। ଏହି ତତ୍ତ୍ୱ ପ୍ରକାଶ ପାଇଁ ସେ ସଂସ୍କୃତ ଭାଷା, ତଦ୍‌ଭବ ଶବ୍ଦ ଏବଂ କେତେକ ପ୍ରଚଳିତ ଓଡ଼ିଆ ଶବ୍ଦ ବ୍ୟବହାର କରିଥିଲେ। ଫଳରେ ଓଡ଼ିଆ ଭାଷା ରମଣୀୟ, ମାର୍ଜିତ ଓ ଶକ୍ତିଶାଳୀ ହୋଇଥିଲା। ତାଙ୍କ ଭାଷାର ଉତ୍କର୍ଷ ପ୍ରଦର୍ଶନ ପାଇଁ ଆମେ ଏଠାରେ କେତେକ ପଂକ୍ତି 'ଉଦ୍ଧୃତ' କରୁଛୁ-

ହରେ ଯେ କୃଷ୍ଣ ରାମଶ୍ୟାମ। ଏ ସମସ୍ତେ ହୋଇ ଚତୁର୍ଦ୍ଧାମ।।
ହରେ ଶିଷ୍ୟ ଯେ ଗୁରୁନାମ। କୃଷ୍ଣଟି ଜଗନ୍ନାଥ ନାମ।।
ଶ୍ୟାମ ଯେ ଭକ୍ତି ମୁକ୍ତି ପୁଣ। ମୁକ୍ତ ହୋଇଛି ବସ୍ତୁଗୁଣ।।
ହରେ ଯେ ବଳଭଦ୍ର ହୋଇ। କୃଷ୍ଣ ଜଗନ୍ନାଥ ଅଟଇ।
ରାମଟି ସୁଭଦ୍ରାକୁ କହି। ଶ୍ୟାମ ସୁଦର୍ଶନ ବୋଲାଇ।।
ଏମନ୍ତେ ଚତୁର୍ଦ୍ଧାଟି ଜାଣ। ଚତୁର୍ବିଧରେ ପରିମାଣ।।

(*ଶିଶୁ ଅନନ୍ତ ଗ୍ରନ୍ଥାବଳୀ*, ପୃ-୧୬୯)

ଏଠାରେ ଉଲ୍ଲେଖନୀୟ କଥା ହେଉଛି ଶିଶୁ ଅନନ୍ତଙ୍କର ମାର୍ଜିତ, ସୁନ୍ଦର, ଗମ୍ଭୀର ଓ ସାଙ୍ଗୀତିକ ଭାଷାର ବ୍ୟବହାର। ଏହି ମିତ୍ରାକ୍ଷର ଥିବା ବା ଚରଣମେଳ ଥିବା ସରଳ ଏବଂ ସାଙ୍ଗୀତିକ ଶବ୍ଦ ସବୁ ପାଠକର କର୍ଣ୍ଣରେ ପ୍ରତିଧ୍ୱନିତ ହୁଏ। ଏ ସବୁ

ବିଚାର କଲାବେଳେ ଆମେ ମନେରଖିବା ଉଚିତ୍ ଯେ ଶିଶୁ ଅନନ୍ତ ଷୋଡ଼ଶ ଶତାବ୍ଦୀର କବି ଥିଲେ, ଆଜିର ନୁହେଁ।

ଶିଶୁ ଅନନ୍ତଙ୍କର ଜଗନ୍ନାଥ ଦାସଙ୍କ ଭଳି କାବ୍ୟିକ ଶବ୍ଦ ନିର୍ବାଚନ ଓ ପ୍ରୟୋଗର ପଟାନ୍ତର ନାହିଁ। ସଂସ୍କୃତ ଶବ୍ଦ, ତତ୍‌ଭବ ଶବ୍ଦ ଓ କିଛି ଓଡ଼ିଆ ଶବ୍ଦ ପ୍ରୟୋଗ କରି ସେ ନୂତନ, ରୁଚିପୂର୍ଣ୍ଣ, ମାର୍ଜିତ ଏବଂ ଉଦାତ୍ତ ଶବ୍ଦ ନିର୍ବାଚନ କରିଛନ୍ତି ଯାହା ସୌନ୍ଦର୍ଯ୍ୟର ସହ ସ୍ପନ୍ଦିତ ହୁଏ। ଆମେ ନିମ୍ନଲିଖିତ ପଂକ୍ତି ଗୁଡ଼ିକରୁ ତାଙ୍କର ଶବ୍ଦ ନିର୍ବାଚନ ଓ ପ୍ରୟୋଗର ରସ ଆସ୍ୱାଦନ କରିପାରିବା।

ସେ ଆଦିମୂଳ ପଦ୍ମଲାଭ। ସଂସାର ଜନଙ୍କ ସୁଲଭ।
ଯେ ପାଦପଦ୍ମେ କରିଆଶ। ଯୋଜନ କରିବ ବିଶ୍ୱାସ।।
ଘୋର କଳ୍ମଷ ନାଶ ଯାଇ। ଅନ୍ତେଣ ବୈକୁଣ୍ଠେ ବସଇ।
ଏମନ୍ତ ହେତୁ ମନ ଆଗ। କହନ୍ତି ହୋଇ ଅନୁରାଗ।।
(*ଶିଶୁ ଅନନ୍ତ ଗ୍ରନ୍ଥାବଳୀ*, "ହେତୁ ଉଦୟ ଭାଗବତ", ଦଶମ ଅଧ୍ୟାୟ, ପୃ- ୨୧୭)

ଏହି ଆଠଗୋଟି ପଂକ୍ତିରେ ବ୍ୟବହୃତ ଛତିଶ ଶବ୍ଦ ମଧ୍ୟରୁ ବାରଟି ସଂସ୍କୃତ ଶବ୍ଦ, ତିନିଗୋଟି ଓଡିଆ ଶବ୍ଦ ଏବଂ ଅନ୍ୟ ସମସ୍ତ ଶବ୍ଦ ସଂସ୍କୃତ ଶବ୍ଦରୁ ଆସିଛି।

ଶିଶୁ ଅନନ୍ତ ଦାସ ନିଜ କବିତାକୁ ଛାନ୍ଦୋବଦ୍ଧ କରିବାପାଇଁ ଜଗନ୍ନାଥ ଦାସ ସୃଷ୍ଟ ନବାକ୍ଷରୀ ବୃତ୍ତକୁ ଗ୍ରହଣ କରିଛନ୍ତି। ଏହି ନବାକ୍ଷରୀ ବୃତ୍ତରେ ପ୍ରତ୍ୟେକ ପଂକ୍ତିରେ ନଅଟି ଅକ୍ଷର ଅଛି ଏବଂ ବୃତ୍ତଟି ଦୁଇଧାଡ଼ି ବିଶିଷ୍ଟ। ପ୍ରତ୍ୟେକ ଧାଡି ଶେଷରେ ମିଶ୍ରାକ୍ଷର ଅଛି। ଅଧିକାଂଶ ପଂକ୍ତିର ଦୁଇଟି ବିରାମ ଅଛି। ଗୋଟିଏ ପଞ୍ଚମ ଅକ୍ଷର ପରେ ପରେ ଏବଂ ଅନ୍ୟଟି ନବମ ଅକ୍ଷର ଶେଷରେ। କିନ୍ତୁ କେତେକ ପଂକ୍ତି ଏହି ଆଦର୍ଶକୁ ଅନୁସରଣ କରିନଥାନ୍ତି। ଏହି ପଂକ୍ତିଗୁଡ଼ିକ ଓଡିଆ ଦାଣ୍ଡିବୃତ୍ତର ସ୍ୱାଧୀନତାକୁ ପ୍ରୟୋଜନରେ ଲଗାନ୍ତି। ଏଠାରେ ବିରାମର ସଂଘଟନ ପାଠକର ଆବୃତ୍ତି ଉପରେ ନିର୍ଭରଶୀଳ। କାରଣ ପଂକ୍ତି ଭିତରେ ଥିବା ବିରାମ ପାଠକଠାରୁ ପାଠକକୁ ଭିନ୍ନ ହୋଇଥାଏ। ବିରାମର ଏହି ବିଭିନ୍ନତା ଏବଂ ଆବୃତ୍ତିର ସ୍ୱାଧୀନତା ନବାକ୍ଷରୀ ବୃତ୍ତର ନୀରସତାକୁ ଦୂରକରେ ଏବଂ ତାହା ପାଠକମାନଙ୍କର ଓ ଶ୍ରୋତୃବର୍ଗର ଶ୍ରବଣ କଳ୍ପନା

ପାଇଁ ଆକର୍ଷଣୀୟ ହୁଏ। ଆମେ ଏଠାରେ କେତେକ ପଂକ୍ତି ଉଦ୍ଧାର କରି ବିରାମର ଏହି ବିବିଧତାକୁ ଦର୍ଶାଇବା।

ଅପାନ। ଶ୍ୱେତବର୍ଣ୍ଣ ମୂର୍ତ୍ତି। ସାମ ଯେ ନିରାକାରଜ୍ୟୋତି।।
ସମାନ ରଙ୍ଗ । ବର୍ଣ୍ଣସାର। ଯଜୁ। ଯେ। ଜୀବ। ଆତ୍ମାଘର।।
ଉଦାନ। ହେମ। ବର୍ଣ୍ଣ ମୋହି। ଋକାରେ। ଅମୃତ। ଭାସଇ।।
ବ୍ୟାନ। ବର୍ଣ୍ଣ। ଦିଶେକଳା। ଅଥର୍ବ ବେଦ। ସର୍ବମେଳା।।

ଶିଶୁ ଅନନ୍ତ ଜଣେ ବଡ ସାଧକ ଥିଲେ। କିନ୍ତୁ ତାଙ୍କ "ହେତୁ ଉଦୟ ଭାଗବତ" ପ୍ରମାଣ କରେ ଯେ ସେ ମଧ୍ୟ ଜଣେ ସଫଳ କବି। ପୂର୍ବରୁ କୁହାଯାଇଛି ଯେ ଏହି ଗ୍ରନ୍ଥର ମୁଖ୍ୟ ଆବେଗ ହେଉଛି ଭକ୍ତି। ତେଣୁ ବହୁପରିମାଣରେ ଇନ୍ଦ୍ରିୟଭୋଗ୍ୟ ଅଳଙ୍କାର ପ୍ରୟୋଗ କରିବାପାଇଁ ତାଙ୍କର ଯଥେଷ୍ଟ ସ୍ୱାଧୀନତା ନଥିଲା। ସେ ମଧ୍ୟ ନିଜର କଳ୍ପନା ଶକ୍ତିର ସ୍ୱାଧୀନ ଉପଯୋଗ କରିବାପାଇଁ ସୁଯୋଗ ପାଇ ନଥିଲେ। ତଥାପି ତାଙ୍କ କବିତା ଏହାର ଆଙ୍ଗିକ ଓ ଆତ୍ମିକ ସୌନ୍ଦର୍ଯ୍ୟ ଦ୍ୱାରା ପାଠକମାନଙ୍କୁ ମନ୍ତ୍ର-ମୁଗ୍ଧ କରେ। ସଂପୂର୍ଣ୍ଣ ସମର୍ପଣଭାବ ନେଇ ଭକ୍ତ ଭଗବାନଙ୍କ ସହିତ କିପରି ମିଳିତ ହେବ ତାର ଉଦାହରଣ ଦେଇ ସେ ଇନ୍ଦ୍ରିୟଭୋଗ୍ୟ ବର୍ଣ୍ଣନା କରିଛନ୍ତି।

ମନକୁ ସ୍ତିରୀବେଶକରି । ହୋଇବୁ ନବୀନ କିଶୋରୀ।।
ଇଙ୍କାଟେ ସିନ୍ଦୂରର ଚିତା। ରୂପେଣ ଜଗଜ୍ଜନ ଜିତା।
ହସ୍ତରେ ବଳୟ କଙ୍କଣ। ପାଦେ ନୂପୁର ରୁଣଝୁଣ।।
ନାସାରେ ଖଞ୍ଜିବୁ ବସଣୀ। କଜ୍ଜ୍ୱଳ ନୟନରେ ପୁଣି।।
ଗଳାରେ ମୁକୁତାର ହାର। କର୍ଣ୍ଣେ ତାଡିକି ହୀରା ସାର।।
କର୍ଣ୍ଣରେ କର୍ଣ୍ଣଫୁଲ ଦେଇ। ବିଚିତ୍ର ରୂପ ମନମୋହି।।
ପିନ୍ଧିବ କଳାମେଘ ଶାଢ଼ୀ। ଲୋଟଣି ଛନ୍ଦେ ଜୁଡାଭିଡି।।
କର୍ପୂର ଚନ୍ଦନ ମିଶାଇ। ସର୍ବାଙ୍ଗେ ଲେପନ ଯେ ହୋଇ।।
ହସ୍ତରେ ମଦିରା ଘେନିଣ। ନବୀନ କିଶୋରୀ ହୋଇଣ।।

(*ଶିଶୁ ଅନନ୍ତ ଗ୍ରନ୍ଥାବଳୀ* "ହେତୁ ଉଦୟ ଭାଗବତ", ପଞ୍ଚମ ଅଧ୍ୟାୟ, ପୃ୧୯୨)

ଏହି ବର୍ଣ୍ଣନା ପଞ୍ଚ ଇନ୍ଦ୍ରିୟଙ୍କୁ ଆକର୍ଷିତ କରେ। ଇଂରାଜୀ ମେଟାଫିଜିକାଲ୍ କବି ଜନ୍ ଡନ୍‌ଙ୍କର ଧର୍ମନିଷ୍ଠ କବିତାରେ ଯେପରି ଉଭୟ ଭକ୍ତି ଓ ଇନ୍ଦ୍ରିୟ ଭୋଗ୍ୟତା ଦେଖିବାକୁ ମିଳେ ଏଠାରେ ସେହିଭଳି ଆମେ ଦେଖୁ। ଜନ୍ ଡନ୍ ତାଙ୍କର ଏକ ଧାର୍ମିକ କବିତାରେ ଲେଖିଥିଲେ। "God, I won't be chaste unlesss you ravish me". ଶିଶୁ ଅନନ୍ତଙ୍କ କବିତାରେ ମନକୁ ଏକ ଆକର୍ଷଣୀୟା ନାରୀ ରୂପରେ କଳ୍ପନା କରାଯାଇଛି। ସୌନ୍ଦର୍ଯ୍ୟ ଏଠାରେ ପ୍ରତୀକାତ୍ମକ। ଏହା ହେଉଛି ଭକ୍ତର ଈଶ୍ୱରଙ୍କ ପ୍ରତି ଚିରନ୍ତନ ଆକର୍ଷଣ। ତାର ସଂପୂର୍ଣ୍ଣ ସମର୍ପଣ ଭାବ ଆବଶ୍ୟକ ଈଶ୍ୱରଙ୍କ ସହିତ ମିଳିତ ହେବାପାଇଁ । ତେଣୁ ତା'ପରେ ସେ ଲେଖିଛନ୍ତି-

ଏମନ୍ତେ ବେଶ ହୋଇକରି। ପ୍ରବେଶ ହୋଇବ ଅର୍ଗଳି।।
ଯେବଣ ଠାରେଟି କବାଟ। ସେ ସ୍ଥାନେ ମାଇନାମେ ଘାଟ।।
ତହିଂରେ ମନକୁ ନିବେଶି। ଦେଖିବ ଜ୍ୟୋତିର୍ମୟ ରାଶି।।
ଜ୍ୟୋତିଅନ୍ତରେ ଦିବ୍ୟରୂପ। ଦେଖିବ ନୀଳ ଯେ ସ୍ୱରୂପ।।

(*ଶିଶୁ ଅନନ୍ତ ଗ୍ରନ୍ଥାବଳୀ*, ପୃ ୧୯୨)

ଶିଶୁ ଅନନ୍ତଙ୍କର କାବ୍ୟିକ ରୂପକଳ୍ପ ଗୁଡ଼ିକ ତାଙ୍କ ପାଣ୍ଡିତ୍ୟ ଓ ଜୈବିକ ବୋଧଶକ୍ତିର ପରିଚୟ ଦିଏ। ରୂପକଳ୍ପଗୁଡ଼ିକ ଯୁକ୍ତିଯୁକ୍ତ, ଆଦୌ କଳ୍ପନାପ୍ରସୂତ ନୁହେଁ। ସେଗୁଡ଼ିକ କବିତାର ସୌନ୍ଦର୍ଯ୍ୟ ବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ତାହାକୁ ବ୍ୟାଖ୍ୟା ମଧ୍ୟ କରିଥାଆନ୍ତି।

ଏହି ଯେ ଗୋପ ବୃନ୍ଦାବନ। ରାହାସ ସଦନର ସ୍ଥାନ।।
କାଳନ୍ଦୀ ତଟ ଯେ କଦମ୍ବ। ମୂଳରେ ହୋଇଛି ବିଶ୍ରାମ।।
ତେଣୁ ସିଂହା ଯେ ବଂଶୀ ବେତ। ଏହି ଚତୁର୍ଦ୍ଧା ବିଧିମତ।।
ଗୁଞ୍ଜ ରୁଞ୍ଜ ଯେ ଶିଖି ପୁଚ୍ଛ। ଶୋଭିଛି ପ୍ରତ୍ୟେକ୍ଷରେ ଦେଖ।।

(*ଶିଶୁ ଅନନ୍ତ ଗ୍ରନ୍ଥାବଳୀ*, ପୃ-୧୭୦)

ଅବଧୂତଙ୍କ ଚବିଶ ଗୁରୁ ହେଉଛନ୍ତି ପ୍ରତୀକାତ୍ମକ। ଉଦାହରଣ ସ୍ୱରୂପ 'ଉର୍ଣ୍ଣନାଭ'ବନ୍ଧନର ପ୍ରତୀକ।

ଏହି ଗ୍ରନ୍ଥରେ ରୂପକ ଓ ଉପମାର ବହୁଳ ବ୍ୟବହାର ଦେଖିବାକୁ ମିଳେ। ଚାରିଗୋଟ ପଂକ୍ତିରୁ ଆମେ ଏହାର ବ୍ୟବହାର ଦେଖିବା। କବି ଲେଖିଛନ୍ତି:

ଗୁରୁଟି ଆପେ ବ୍ରହ୍ମରାଶି। କାଳ ସ୍ୱରୂପ ତମଗ୍ରାସି।।
ଶ୍ରୀଗୁରୁ ଆଦିଶକ୍ତି ହୋଇ। ଆଦି ଅନାଦି ନାମ ବହି।।

ଏଠାରେ ବ୍ରହ୍ମରାଶି ଓ ଆଦିଶକ୍ତି ଗୋଟିଏ ଗୋଟିଏ ରୂପକ କିନ୍ତୁ ଗୁରୁ କାଳ ସ୍ୱରୂପ ତମଗ୍ରାସୀ ଏକ ଉପମା।

ଏହି ପୁସ୍ତକଟିର ଗାମ୍ଭୀର୍ଯ୍ୟ ଅଛି, ଅଛି ଉତ୍ସାହ, ଆନୁଷ୍ଠାନିକ ଗତିଶୀଳତା ଓ ଉଚ୍ଚ ନୈତିକ ତଥା ଆଧ୍ୟାତ୍ମିକ ସ୍ୱର। ଏହାର ଶୈଳୀ ମଧୁର, ସୂକ୍ଷ୍ମ, ରହସ୍ୟମୟ ଏବଂ ଉଲ୍ଲାସପୂର୍ଣ୍ଣ। ଏହାର କେତେକ ଅଭିବ୍ୟକ୍ତି ପ୍ରବାଦ ବାକ୍ୟ ସଦୃଶ।

ଏହି ଭାବରେ ଶିଶୁ ଅନନ୍ତଙ୍କ "ହେତୁ ଉଦୟ ଭାଗବତ" ଏକ ମୁଖ୍ୟ ସାହିତ୍ୟ କୃତି। ଉତ୍କଳ ବାଣୀଭଣ୍ଡାରରକୁ ଏହା ସମୃଦ୍ଧି କରିଛି । ପରମ୍ପରାକୁ ଭୀମ ଭୋଇ କିପରି ପରିବର୍ତ୍ତିତ କରିଛନ୍ତି ପ୍ରଶ୍ନ ଉଠିଲେ ପ୍ରଥମେ ଆସେ ଧର୍ମକଥା। ଶିଶୁ ଅନନ୍ତ ଥିଲେ ବୈଷ୍ଣବ ଯିଏ ଜ୍ଞାନମିଶ୍ରା ଭକ୍ତିରେ ବିଶ୍ୱାସ କରୁଥିଲେ। ବିଶ୍ୱାସ କରୁଥିଲେ ବିଷ୍ଣୁ ଆରାଧନାରେ ଏବଂ ଜଗନ୍ନାଥ ଆରାଧନାରେ। କିନ୍ତୁ ଭୀମ ଭୋଇ ଅଦ୍ୱୈତବାଦୀ ମହିମାଧର୍ମର ପ୍ରଚାର କରିଛନ୍ତି। ସେ ଈଶ୍ୱରଙ୍କୁ 'ଜ୍ୟୋତିରୂପ', 'ନିର୍ବେଦ', 'ଅଲେଖ' ବୋଲି ବିଚାର କରିଛନ୍ତି। ମହିମା ଧର୍ମର ସ୍ରଷ୍ଟା ମହିମା ଗୋସାଇଁ ତାଙ୍କ ଶିଷ୍ୟମାନଙ୍କୁ ଉପଦେଶ ଛଳରେ  କହିଥିଲେ ଯେଉଁ ଗୁରୁଙ୍କ ମହିମାରେ ଏହି ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟ ହେଉଅଛି, ତାହାଙ୍କର ମହିମା ଏତେ ଅଧିକ ଯେ ତାହା ଲେଖାଦ୍ୱାରା ଶେଷ କରାଯାଇପାରେ ନାହିଁ। ଅତଏବ ତାଙ୍କ ନାମ 'ଅଲେଖ'। ସେହି ଅଲେଖ ପ୍ରଭୁ ଶୂନ୍ୟରେ ବାସ କରନ୍ତି। ତାଙ୍କୁ ଆଶ୍ରୟ ଓ ଭକ୍ତିକଲେ ମନୁଷ୍ୟମାନେ ମୁକ୍ତି ଲାଭ କରିପାରିବେ।

ମହିମା ଗୋସାଇଁ ମହିମାଧର୍ମର ମୁଖ୍ୟ ପ୍ରଚାରକ ହୋଇନାହାନ୍ତି। ଭୀମଭୋଇ ଏହି ଧର୍ମ ଗ୍ରହଣ କରିବାପରେ ଏହାର ମୁଖ୍ୟ ପ୍ରଚାରକ ହୋଇଛନ୍ତି। ସାମୂହିକ ହିତପାଇଁ ସେହି ସନ୍ଥଙ୍କର ପ୍ରାଣ ସମର୍ପିତ ହୋଇଛି। ତାଙ୍କ ସମୟରେ ଅର୍ଥାତ୍ ଓଡିଶାରେ ନବଜାଗରଣ ସମୟରେ ପାଶ୍ଚାତ୍ୟ ଜଗତର ଚିନ୍ତାଚେତନା ତଥା ନୂତନ ସମାଜ

ବ୍ୟବସ୍ଥା ମଣିଷକୁ ବ୍ୟସ୍ତବିବ୍ରତ କରୁଥିଲା । ଅନ୍ୟ ଦିଗରେ ତତ୍‌କାଳୀନ ସାମାଜିକ ଜୀବନର କୁସଂସ୍କାର, ଅନ୍ଧବିଶ୍ୱାସ ଓ ବ୍ରାହ୍ମଣମାନଙ୍କର ଆଧିପତ୍ୟ ଓ କୁକାର୍ଯ୍ୟ ସମାଜ ବ୍ୟବସ୍ଥାର ସାମାଜିକ, ସାଂସ୍କୃତିକ ଓ ଧାର୍ମିକ ବିଶୁଦ୍ଧତାକୁ ନଷ୍ଟ କରିଦେଇଥିଲା । ଫଳରେ ଓଡ଼ିଶାର ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ସର୍ବୋପରି ଆଧାତ୍ମିକ କ୍ଷେତ୍ର ପ୍ରସାରିତ ହେବା ପରିବର୍ତ୍ତେ ସଂକୁଚିତ ହୋଇପଡ଼ିଥିଲା । ଏହି ସମୟରେ ମହିମାଧର୍ମ ଏକ ଆଧାତ୍ମିକ ବିପ୍ଳବ ହୋଇ ଠିଆହେଲା । ଏହି ଧର୍ମ ଜାତିଭେଦ, ଅନ୍ଧବିଶ୍ୱାସ, ଶ୍ରାଦ୍ଧକ୍ରିୟା ଓ ପିତୁଳା ପୂଜାକୁ ନିଷେଧ କଲା । ଏହି ଧର୍ମାନୁଯାୟୀ ଏକମାତ୍ର ଈଶ୍ୱରଙ୍କୁ ଯାହାଙ୍କ ନାମ ମହିମା ଅଲେଖ, ତାଙ୍କୁ ସେବା ଓ ଆରାଧନା କରାଯାଇପାରିବ । ଏହି ଧର୍ମ କେବଳ ନିରାକାର ବ୍ରହ୍ମଙ୍କ ଉପାସନା କଥା କହିଲା । ବ୍ରାହ୍ମଣ୍ୟ ଧର୍ମର ପ୍ରାଧାନ୍ୟକୁ ଦୂରେଇଦେଇ ସାମ୍ୟ ଓ ମୈତ୍ରୀ ଭାବସୃଷ୍ଟି କରିବା ଏହି ଧର୍ମର ମୂଳଲକ୍ଷ୍ୟ ଥିଲା । ଏହି ଧରଣୀ ଆମର ନିଜର ବାସସ୍ଥାନ ନୁହେଁ, ଶୂନ୍ୟ ଆମର ବାସସ୍ଥଳୀ ଏହି କଥା କହିଲା ମହିମା ଧର୍ମ । ଭୀମଭୋଇ ମଧ୍ୟ ଜ୍ଞାନମିଶ୍ରା ଧର୍ମ ପ୍ରଚାର କରିଥିଲେ କିନ୍ତୁ ପିତୁଳା ପୂଜାକୁ ମନା କରିଥିଲେ । ସେ ମଣିଷକୁ ଶୂନ୍ୟ ଦର୍ଶନରେ ଅନୁପ୍ରାଣିତ କରିବା ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ଭାବରେ ସଚେତନ କରୁଥିଲେ । ଶୂନ୍ୟ ଦର୍ଶନ ମହିମା ଧର୍ମର ମର୍ମବାଣୀ, ଆଧାତ୍ମିକତା ଏହାର ମୂଳବିନ୍ଦୁ । ଭୀମଭୋଇ ହେଉଛନ୍ତି ଏହି ଶୂନ୍ୟବାଦର ଜଣେ ସାଧକ ସନ୍ଥ ।

ଓଡିଆ ସନ୍ଥସାଧକ ପଞ୍ଚସଖାଗଣ ସର୍ବବ୍ୟାପକ ପରବ୍ରହ୍ମଙ୍କୁ ଶୂନ୍ୟପୁରୁଷ ରୂପେ ରୂପାୟିତ କରି ନିଜ ଶରୀର ମଧ୍ୟରେ ଅନୁଭବ କରିଥିଲେ । ଶିଶୁ ଅନନ୍ତଙ୍କ ମତରେ ସୃଷ୍ଟି କେବଳ ଶୂନ୍ୟରୁ ହିଁ ସମ୍ଭବ ହୋଇଛି । ଏହି ଶୂନ୍ୟ ପାଦପାଣି ରହିତ, କେବଳ ଜ୍ୟୋତିସ୍ୱରୂପ । ଅନାମରେ ତାର ବାସ ହେଲେ ମଧ୍ୟ ନାମ ତହିଁରୁ ସୃଷ୍ଟି ହୋଇଥାଏ ।

ପଞ୍ଚସଖାଙ୍କର ଆରାଧ୍ୟ ଶ୍ରୀଜଗନ୍ନାଥଙ୍କୁ ଶୂନ୍ୟର ପ୍ରତୀକ ଭାବରେ ପଞ୍ଚସଖା ସାଧକ ଗଣ ଗ୍ରହଣ କରିଛନ୍ତି । ସେମାନଙ୍କ ସାହିତ୍ୟରେ ମିଶିଗଲା କରୁଣା ଅର୍ଥାତ୍ କୃଷ୍ଣରୂପୀ ଜଗନ୍ନାଥଙ୍କ ସହିତ ମିଶିଗଲେ କରୁଣାରୂପୀ ରାଧା ଏବଂ ପ୍ରକଟ ହେଲା ନିତ୍ୟରାଧା କୃଷ୍ଣଙ୍କର ମିଳିତ ରୂପ, ବ୍ରହ୍ମାଣ୍ଡର ଉତ୍ପତ୍ତି ମୂଳରେ ଶୂନ୍ୟ ଏବଂ କରୁଣାର ମିଳନତତ୍ତ୍ୱ ପର୍ଯ୍ୟବସିତ ।

ବେଦ କହେ ଅନନ୍ତ ମହାଶୂନ୍ୟ ହିଁ ପରମବ୍ରହ୍ମ। 'ଭୀମଭୋଇ' 'ସ୍ତୁତିଚିନ୍ତାମଣି'ର ଷଷ୍ଠ ବୋଲିରେ କହିଛନ୍ତି: ଯେତେବେଳେ ପୃଥିବୀ ନଥିଲା, ଜଳ, ପବନ ପ୍ରଭୃତିର ରୂପରେଖ ନଥିଲା କେବଳ ଅଜନ୍ମ, ଅଜପ ନାମ ବହନ କରୁଥିଲା ମହାଶୂନ୍ୟ । ଏକ ଜ୍ୟୋତି ରହିଥିଲା। ସେହି ବ୍ରହ୍ମମୟ ଜ୍ୟୋତିକୁ ଅନୁଭବ କରିଥିଲେ ଭୀମଭୋଇ। ଏହିଭଳି ସେ ପଞ୍ଚସଖାଙ୍କ ଶୂନ୍ୟବାଦକୁ ନିଜର ପ୍ରତିଭା ବଳରେ ଆଂଶିକ ପରିବର୍ତ୍ତନ କରିଛନ୍ତି। ସେ 'ଜଗତ ଉଦ୍ଧାରଣ', 'ଆଦିକନ୍ଦ', ସେ 'ଅରୂପ' ("ସ୍ତୁତିଚିନ୍ତାମଣି", ଅଷ୍ଟାଦଶ ବୋଲି)।

ତେବେ ଭୀମଭୋଇ ପଞ୍ଚସଖାଙ୍କର ଜଗନ୍ନାଥଙ୍କୁ ସଂପୂର୍ଣ୍ଣ ଛାଡି ପାରିନହାନ୍ତି। ଯଦିଓ ମୂର୍ତ୍ତିପୂଜା ମହିମା ଧର୍ମରେ ନାହିଁ, ସେ ଲେଖିଛନ୍ତି:

ବେଦ ବଖାଣିଛି ଶାସ୍ତ୍ରରେ ଲିହିଛି ନିୟତ ପ୍ରମାଣ ସତ।
ନୀଳାଚଳ ପ୍ରଭୁ ବରାଦ କରନ୍ତେ ନୀଳଗିରି ଜଗନ୍ନାଥ।
ଅନୁସରି ବହୁଦୂରୁ ଆଶାକରି ହୃଦୟ ପଦ୍ମରେ ଚିନ୍ତି।
ମଉନରେ ବସି ନାମ ବୋଲାଇଲ ଦାରୁ ପ୍ରତିମା ମୁରତି।

(*ସ୍ତୁତି ଚିନ୍ତାମଣି* ଅଷ୍ଟମ ବୋଲି, ପୃ-୧୫)

ପୁଣି ପୁରାଣକୁ ମନେ ପକାଇ ସେ ଦଶମ ବୋଲିରେ ସେ ଲେଖିଛନ୍ତି:
ଦୈତ୍ୟ ଶଙ୍ଖାସୁର ବ୍ରହ୍ମାବେଦବର ବଳେ ନେଇଥିଲା ହରି,
ନଥିଲେ ଯେ କେହି ଉଦ୍ଧାରିଲେ ମହୀ ମତ୍ସ୍ୟ ଅବତାର ଧରି।

ହିନ୍ଦୁ ଧର୍ମଗ୍ରନ୍ଥ ଗୀତା ଓ ପୁରାଣମାନଙ୍କୁ ଭୀମଭୋଇ ଛାଡ଼ିପାରିନାହାନ୍ତି। ତେଣୁ ସେହି ଗ୍ରନ୍ଥ ଗୁଡ଼ିକ ବିଷୟରେ ସେ 'ସ୍ତୁତି ଚିନ୍ତାମଣି' ରେ ଉଲ୍ଲେଖ କରିଛନ୍ତି।

ଗୀତା ସାରସ୍ୱତ କରି ପଦ ଅର୍ଥ ଭୀମ ଅରକ୍ଷିତ ଭଣି
ଏ ଶାହାସ୍ତ୍ର ଆଦ୍ୟ ବିଭୁତି ବୃତ୍ତାନ୍ତ ନାମ ସ୍ତୁତିଚିନ୍ତାମଣି।

(ନବମ ବୋଲି, ୨୦)

ସେହିଭଳି ସେ ଦଶମବୋଲିରେ ଲେଖିଛନ୍ତି:
ସତ୍ୟ ଯୁଗେ ହରି ବଳି ରାଜ ପୁରୀ ଦାନେ ନାଶିଲ ବିଭୂତି।
ତ୍ରିବିକ୍ରମ ରୂପ ଜାଗତନାୟକ ବହି ବାମନ ମୂରତି।।

ଶୂନ୍ୟକୁ ସେ ଆଂଶିକ ଭାବରେ ପରିବର୍ତ୍ତନ କରିଛନ୍ତି ନିଜର ପ୍ରତିଭା ମାଧ୍ୟମରେ ଶୂନ୍ୟହିଁ ସ୍ରଷ୍ଟା। ତାହା ଅବର୍ଣ୍ଣନୀୟ ମଧୁବନ, ଯେଉଁଠି କି ମହିମାଧର୍ମର ଆସର ଲାଗିଛି । ଭୀମ ଭୋଇଙ୍କ ଶୂନ୍ୟ ଦର୍ଶନ ପରବର୍ତ୍ତୀ ପର୍ଯ୍ୟାୟରେ ସୀମ-ଅସୀମ, ରୂପ-ଅରୂପ, ଆତ୍ମା-ପରମାତ୍ମା, ଦେହ-ବିଦେହୀ ଓ ଭୌତିକ-ଆଧିଭୌତିକର ରୂପ ନେଇଛି। ଏହି ଅସୀମ, ଅରୁପ, ପରମାତ୍ମା, ବିଦେହୀ ଓ ଆଧିଭୌତିକତା ଶୂନ୍ୟଦର୍ଶନର ଅନ୍ୟ ନାମ। ଏହିଭଳି ଭାବରେ ସେ ଶୂନ୍ୟ ଦର୍ଶନକୁ ସ୍ୱଷ୍ଟ କରିଛନ୍ତି। ପଞ୍ଚସଖା ରଚନାବଳୀରେ ଶୂନ୍ୟ ଚେତନା ରହିଥିଲା । ସେମାନେ ସମସ୍ତେ ପରଂବ୍ରହ୍ମ, ନିରାକାର, ଅରୂପ, ବିଦେହୀ କଥା କହିଲାବେଳେ , ଭୀମଭୋଇଙ୍କ ରଚନାରେ ତାହା ମହାଶୂନ୍ୟ । ଏହି ଶୂନ୍ୟ-ଭାବ ହିଁ ତାଙ୍କ ଚିନ୍ତାଚେତନାରେ ମୁଖ୍ୟ ବିଭାଗ ଥିଲା ।

ଶୂନ୍ୟ ଦର୍ଶନରେ ବିଶ୍ୱାସୀ ସାଧୁସନ୍ଥ ପୁରୁଷମାନେ ପ୍ରତିମାପୂଜାର ଘୋର ବିରୋଧୀ ଥିଲେ । ଆତ୍ମା ବା ପିଣ୍ଡ ମଧ୍ୟ ଦେଇ ପରମାତ୍ମାଙ୍କୁ ଓ ବିଶ୍ୱବ୍ରହ୍ମାଣ୍ଡର ଠିକଣା ଜାଣିହୁଏ। ଭୀମଭୋଇ ଶୂନ୍ୟବାଦୀ ହୋଇଥିବାରୁ କହନ୍ତି ଯିଏ ପାଷାଣ, ସେ କେବେ ଆତ୍ମା ଓ ପିଣ୍ଡର ଅଧିକାରୀ ନୁହେଁ, ତେଣୁ ସେ ଜୀବନ୍ତ ନୁହେଁ। ସେ ନିର୍ଜୀବ, ମୂର୍ତ୍ତିମାନ ହେଉଛି ମୃତ। ତା ସହିତ ଭାବ ରଖି ହୁଏ ନାହିଁ। ଯିଏ ଆତ୍ମାକୁ, ପିଣ୍ଡକୁ ଜୀବନ ଦେଇଛି, ଜୀବନ୍ତ କରିଛି, ତାଙ୍କ ସହିତ ଭାବ ରଖିହେବ । ତେଣୁ ଭୀମଭୋଇ କହିଛନ୍ତି-

ମନୁଷ୍ୟ ହୋଇ ନିର୍ଜୀବ ସଂଗେ ଭାବ ଦେଖଟି କେଡ଼େ ଅଜ୍ଞାନ,
ଶୂନ୍ୟକୁ ଯେହୁ ପିଣ୍ଡପ୍ରାଣ ଦେଲା ନାହିଁ ଯହିଁ ତାକୁ ଅନୁମାନ ।

(ସ୍ତୁତିଚିନ୍ତାମଣି)

ଏହି ଶୂନ୍ୟପୁରୁଷ, ଅଲେଖ, ପରଂବ୍ରହ୍ମଙ୍କ ନିକଟରେ କେବଳ ନିଜକୁ ସମର୍ପଣ କରିବାକୁ ହେବ। କାରଣ ସମର୍ପଣଭାବ ହିଁ ଏହି ଦର୍ଶନର ପ୍ରାଣ ଓ ସୌରଭ। ପୁଣି ଶୂନ୍ୟପୁରୁଷ ପରଂବ୍ରହ୍ମଙ୍କ ନିକଟରେ ସଂପୂର୍ଣ୍ଣ ଭାବରେ ଆତ୍ମସମର୍ପଣ କରିବାର ପ୍ରସଙ୍ଗ 'ନାମଜପ' ରେ ଅଛି। ମହିମା ନାମକୁ ଜପ କରିବା ହିଁ ନାମଜପ ଶୂନ୍ୟ ପୁରୁଷଙ୍କୁ ଭେଟିବା ପାଇଁ ନାମ ଉଚ୍ଚାରଣ ହିଁ ସବୁକିଛି। ଏଥିପାଇଁ ପଞ୍ଚସଖା ଗୋଷ୍ଠୀ ରାମ, କୃଷ୍ଣ ଓ ରାଧାନାମକୁ ଗୁରୁତ୍ୱ ଆରୋପ କରୁଥିଲା ବେଳେ ସନ୍ଥକବି ଭୀମଭୋଇ ମହିମା ନାମକୁ ଗୁରୁତ୍ୱ ଦେଇଛନ୍ତି। ଏହି ମହିମା ନାମରେ ସନ୍ଥକବି ଭୀମଭୋଇ ନିର୍ଗୁଣ ଓ

ନିରାକାରଙ୍କ ସନ୍ଧାନ ପାଇଛନ୍ତି। ବେଦାନ୍ତ ଦର୍ଶନର ବ୍ରହ୍ମ ସାଙ୍ଗକୁ ବୌଦ୍ଧ ଧର୍ମର କରୁଣା ଏବଂ ନବଜାଗରଣର ମାନବବାଦ ତାଙ୍କ ଧର୍ମରେ ରହିଛି । ଭୀମଭୋଇ ମହିମାଧର୍ମୀ ହୋଇଥିବାରୁ ହିନ୍ଦୁଧର୍ମର ମୂର୍ତ୍ତିପୂଜା ଓ ରୀତନୀତିକୁ ପ୍ରତ୍ୟାଖ୍ୟାନ କରିଥିଲେ। ସେ କହୁଥିଲେ ଅଦ୍ୱିତୀୟ ବ୍ରହ୍ମଙ୍କ ଉପାସନା ହେଉଛି ପ୍ରକୃତି ଉପାସନା। ପଞ୍ଚସଖା ସନ୍ଥ କବିମାନେ ଥିଲେ ଉଭୟ ସାକାର ଓ ନିରାକାରଙ୍କ ଉପାସକ। ଭୀମଭୋଇ ଜାତି, ଧର୍ମ, ବର୍ଣ୍ଣ ଓ ପଦପଦବୀ ନିର୍ବିଶେଷରେ ମାନବସମାଜକୁ ଏକ ଧର୍ମସୂତ୍ରରେ ବାନ୍ଧିରଖିବାକୁ ପ୍ରୟାସ କରିଥିଲେ।

ନବଜାଗରଣର ବ୍ୟକ୍ତିବାଦ ଦ୍ୱାରା ପ୍ରଭାବିତ ବୋଇ ସେ ନିଜ ବିଷୟରେ ଲେଖିଥିଲେ:

କୁଲୁଥାଇ ବନେ ନିତି ପ୍ରତିଦିନେ ବସ୍ତାକୁ ସଙ୍ଗତେ ଘେନି
କ୍ଷୁଧା ତୃଷା କଲେ ଜୀବନ ବିକଳେ ପିଇଥାଇ ଝରପାଣି

ଆଉ ମଧ୍ୟ ଲେଖିଥିଲେ-

ଲୁହ ନୁହେଁ ରକ୍ତ ବୋହୁଥାଏ ମୋର ଶ୍ରୀହସ୍ତେ ଦିଅଇ ପୋଛି।
କେହି ନ ଜାଣନ୍ତି ଶ୍ରୀଗୁରୁ ଜାଣନ୍ତି ଯେତେ କଷ୍ଟ ପାଇଅଛି।।

ନବଜାଗରଣ ସମୟରେ ମାନବ ଧର୍ମ ବା ମାନବ ହିତବାଦ ଦ୍ୱାରା ପ୍ରଭାବିତ ହୋଇ ସେ ଲେଖିଥିଲେ ବିଶ୍ୱର କଲ୍ୟାଣ ପାଇଁ –

ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡିଥାଉ
ଜଗତ ଉଦ୍ଧାର ହେଉ।।

ବହୁ ପୂର୍ବରୁ ବୃହଦାରଣ୍ୟକ ଉପନିଷଦରେ କୁହାଯାଇଥିଲା:

ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ,
ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖ ଭାକ୍ ଭବେତ୍।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ।

ଏହି ଶାନ୍ତି ମନ୍ତ୍ରକୁ ପାଠକଲେ ପାଠକ ହୃଦୟରେ କରୁଣା ବା ଅନୁକମ୍ପା ଭାବ ସୃଷ୍ଟିହୁଏ ଏବଂ ତା ସହିତ ପ୍ରେମପୂର୍ଣ୍ଣ ଦୟାଭାବ ଜାଗ୍ରତ ହୁଏ। ଏହା ସମସ୍ତଙ୍କର ମଙ୍ଗଳ ସହିତ ସଂପୃକ୍ତ, କେବଳ ମଣିଷର ମଙ୍ଗଳ ନୁହେଁ, ସମସ୍ତ ସଚେତନ ପ୍ରାଣୀଙ୍କ ପାଇଁ ଉଦ୍ଦିଷ୍ଟ। ଏହା ମନକୁ ଶାନ୍ତି ଓ ଆନନ୍ଦ ଆଣିଦିଏ ଏବଂ ପାଠକ ନିଜକୁ ଅନ୍ୟଠାରୁ ଭିନ୍ନ ବୋଲି ବିଚାରେ ନାହିଁ। ଯଦିଓ ସବୁକିଛି କୁହାସରିଛି ପ୍ରକାଶ ଭଙ୍ଗୀରେ ଗୋଟିଏ ବିଷୟର ନୂତନତ୍ୱ ଥାଏ। ଭୀମଭୋଇଙ୍କ ବାଣୀ ସମସ୍ତଙ୍କ ହୃଦୟକୁ ଛୁଏଁ। ବାସ୍ତବିକ୍ ଏହି ପଂକ୍ତିଗୁଡ଼ିକ ଭାରତୀୟ ସାହିତ୍ୟରେ ଅମ୍ଳାନ ହୋଇ ରହିବ। ମହିମା ଧର୍ମର ଏହି ଉତ୍ସର୍ଗୀକୃତ ଭାବନା ଏହାର ଭୀମଭୋଇଙ୍କୁ ଯୁଗେ ଯୁଗେ ଅମର କରି ରଖିବ।

ଏଠାରେ କବି ଭୀମଭୋଇ ନିଜ ଜୀବନକୁ ନର୍କ-ନିକ୍ଷିପ୍ତ କରି ବିଶ୍ୱବାସୀଙ୍କୁ ବେଦନାମୁକ୍ତ କରିବାକୁ ଚାହିଛନ୍ତି। ସେ ଜଣେ ସନ୍ଥପୁରୁଷ। ବୁଦ୍ଧ, ଯୀଶୁଙ୍କ ଭଳି ସମଗ୍ର ମାନବଜାତି ପାଇଁ ତାଙ୍କର ଅପ୍ରମିତ କରୁଣା ଥିଲା। ସେ ସମଗ୍ର ଜୀବ ଜଗତର ମୁକ୍ତି ଚାହୁଁଥିଲେ। ପ୍ରାଚୀନ ଭକ୍ତି ପରମ୍ପରାର ସେ ଥିଲେ ଜଣେ ଶ୍ରେଷ୍ଠ ସାଧକ।

ତାଙ୍କ ଦ୍ୱାରା ଗୃହୀତ ଓ ପ୍ରଚାରିତ ମହିମାଧର୍ମ ଥିଲା ରୀତିନୀତି ଓ ଆଡମ୍ବରଶୂନ୍ୟ। ଏହି ଧର୍ମ ବୌଦ୍ଧଧର୍ମର ଅଷ୍ଟାଙ୍ଗ ମାର୍ଗପରି ସତ୍ୟ, ଅହିଂସା, ସାଧୁତା, ଧର୍ମ, ସଦାଚାର ଓ ବ୍ରହ୍ମଚର୍ଯ୍ୟ ଇତ୍ୟାଦି ସୁଗୁଣ ଉପରେ ପ୍ରାଧାନ୍ୟ ଦେଉଥିଲା ଏବଂ ସେହି ସୁଗୁଣ ଗୁଡ଼ିକ ମାଧ୍ୟମରେ ମନୁଷ୍ୟ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହେବ ବୋଲି ସେ କହୁଥିଲା। ଶୂନ୍ୟ ଓ ନିରାକାର ସାଧନା ମଧ୍ୟରେ ଏକ ଜ୍ୟୋତିର୍ମୟ ପୁରୁଷଙ୍କ ସ୍ଥିତି ରହିଛି ବୋଲି ଏହି ଧର୍ମାବଲମ୍ବୀମାନେ ବିଶ୍ୱାସ କରନ୍ତି। ସତ୍ୟ-ସାଧନା ହିଁ ଏହି ଧର୍ମର ମୂଳମନ୍ତ୍ର। ତେଣୁ ଏହାକୁ ମଧ୍ୟ ସତ୍ୟ-ଧର୍ମ କୁହାଯାଏ।

କବି ଅତ୍ୟନ୍ତ ସରଳ ଭାଷାରେ କହିଛନ୍ତି:

ବ୍ରହ୍ମ ମଧ୍ୟେ ସାର ଧର୍ମ ଧନୁର୍ଦ୍ଧର
କର୍ମ ଅଟେ ମହାବୀର
ଏକ ସ୍ଥାନେ ଥାଇ ସକଳ ଶରୀର
ପୂରି ଅଛି ତିନିପୁର।

ନାମ ସଂପର୍କରେ ପୁଣି ସେ କହିଛନ୍ତି:

ମୋଚି ହୋଇ ଚର୍ମ କାଟୁ ଥାଉ ପଛେ
ନାମେ ଆଶ୍ରିତ ହେଉ,
ତାହାର ବୃତ୍ତି ସେ କେମନ୍ତେ ଛାଡିବ
ରୋଜଗାର କରୁ ଥାଉ।
ହାଡିହୋଇ ଯେବେ ଦାଣ୍ଡ ପହଁରଇ
ବାଡି ଘରେ ପଛେ ଖଟୁ।
ଗୁରୁପଦ ତଳେ ଚିତ୍ତବୃତ୍ତି ରଖି
ଦୃଢ ଚିତ୍ତେ ନାମ ରଟୁ।

ମହିମାଧର୍ମ ନିଷ୍କ୍ରିୟ ଭକ୍ତିବାଦ ନୁହେଁ। ଏହା ଏକ ସକ୍ରିୟ ଓ ଶକ୍ତିଶାଳୀ କର୍ମବାଦ। ଭୀମଭୋଇଙ୍କ ଚିନ୍ତାଧାରା ଉଭୟ କର୍ମ ଓ ଧର୍ମର ଏକ ସମନ୍ୱୟ। କିନ୍ତୁ କର୍ମ ଓ ଧର୍ମରେ ସେ ଥିଲେ ସଂସ୍କାରବାଦୀ। ହିନ୍ଦୁ ଧର୍ମର ମୌଳିକତାର ଅଯୌକ୍ତିକତାକୁ ଉପଲବ୍ଧ କରି ସେ ଗାଇଛନ୍ତି:

ଅଚେତାରେ ସିନା ଜନ ପ୍ରାଣୀ ମାନେ କରୁଛନ୍ତି ଦେବପୂଜା
ପାଦେ ପଡି ରକ୍ଷାକର ବୋଲୁଛନ୍ତି ଦେବୁ ଖିରି, ପୁରି, ଖଜା।
ମୂର୍ତ୍ତି ସିନା ସେହି ଜୀବ ଆତ୍ମା ନାହିଁ କାହୁଁ ଯାଚିଦେବ ବର,
ବିଷ୍ଣୁ ନଟ କୂଟ ମାୟା ତୁ ନଜାଣି ଅଜ୍ଞାନରେ ମୂଢ ନର।
ଯେହୁଁ ଗଢିଛି ଆପଣା ପିଣ୍ଡ ପ୍ରାଣ ତାକୁ ସମର୍ପଣ ନାହିଁ।
ଦାରୁ ପ୍ରତିମା ମୂର୍ତ୍ତିକି ବୋଲୁଛନ୍ତି, ପ୍ରାଣକୁ ବଞ୍ଚାଅ ତୁହି।

ପୁଣି ନୀତି ସମ୍ବନ୍ଧି ଶାସକ-ଜୀବନ ପ୍ରତି ନିର୍ଦ୍ଦେଶ ଦେଇ କବି କହିଛନ୍ତି-

ରାଜାମାନେ ରାଜନୀତି କରୁଥାନ୍ତୁ
ଦଣ୍ଡ ସିଂହାସନେ ବସି
ଦୋଷକୁ ଚାହିଁ ବୁଝାମଣା କରନ୍ତୁ
ହୃଦୟେ ମହିମା ଘୋଷି।

ଦୋଷକୁ ଚାହିଁ ଦଣ୍ଡ ନ ଦେଲେ
କି ରୂପେ ଚଳିବ ପୃଥ୍ୱୀ
ରଇତ ପରଜା କି ରୂପେ ମାନିବେ
ବଣା ହୋଇଯିବ ମତି ।

ଶିଶୁ ଅନନ୍ତଙ୍କ ପରି ଭୀମଭୋଇ ଗୁରୁପରମ୍ପରାକୁ ଗ୍ରହଣ କରିଛନ୍ତି କିନ୍ତୁ ମହିମା ଧର୍ମରେ ମଣିଷ ଓ ଈଶ୍ୱରଙ୍କ ମଧ୍ୟରେ କୌଣସି ମଧ୍ୟସ୍ଥ ରହିବାର ବ୍ୟବସ୍ଥା ନଥିବାରୁ ସେ ଈଶ୍ୱର (ମହିମା)ଙ୍କୁ ଗୁରୁ ବୋଲି ଗ୍ରହଣ କରିଛନ୍ତି । 'ହେତୁ ଉଦୟ ଭାଗବତ'ରେ ଶିଶୁ ଅନନ୍ତ ଲେଖିଥିଲେ-

ଗୁରୁଟି ଆପେ ବ୍ରହ୍ମରାଶି । କାଳ ସ୍ୱରୂପେ ତମ ଗ୍ରାସି ।।
ଶ୍ରୀଗୁରୁ ଆଦିଶକ୍ତି ହୋଇ । ଆଦି ଅନାଦି ନାମ ବହି ।।
ଅନାଦି ଠାରୁ ଆଦି ହୋଇ । ଆଦି ଅନାଦି ନାମ ବହି ।।
ଅନାଦି ପରମ ଈଶ୍ୱର । ଆଦି ଶକତି କଳେବର ।।

(*ଶିଶୁ ଅନନ୍ତ ଗ୍ରନ୍ଥାବଳୀ*, "ହେତୁ ଉଦୟ ଭାଗବତ", ପ୍ରଥମ ଅଧ୍ୟାୟ ପୃ-୧୫୭)

କିନ୍ତୁ ଭୀମଭୋଇ ଈଶ୍ୱରଙ୍କୁ ଗୁରୁମାନି ଲେଖିଛନ୍ତି-

ଦୁଃଖ ସୁଖ କଥା ମନେକରି ଚିନ୍ତା ପ୍ରଭୁ ଛାମୁରେ ଜଣାଇ,
ଶରଣ ବିକଳେ ଗୁରୁପାଦତଳେ ଭୀମ ଅରକ୍ଷିତ କହି ।

("ସ୍ତୁତି ଚିନ୍ତାମଣି", ଦ୍ୱିତୀୟ ବୋଲି)

ଦ୍ୱାତ୍ରିଂଶ ବୋଲିରେ ଆରମ୍ଭରେ ସେ କହିଛନ୍ତି -

ଗୁରୁଦେବ ସ୍ୱାମୀ ମହିମା ସାଗର ପିଣ୍ଡପ୍ରାଣ ରକ୍ଷାକର,
ଶରଣ ପାଦ ପଦ୍ମରେ ଶତେବାର ଦୟାରେ ଉଦ୍ଧରି ଧର ।
ଅବଧୂତ ସ୍ୱାମୀ ଅଲେଖ ଅବର୍ଣ୍ଣ ଅରୂପ ଅନାମ ଦୀକ୍ଷା,
ହରତା କରତା ଜ୍ଞାନଗୁରୁ ଦାତା ଗତି ପତି ସ୍ୱାମୀ ଏକା ।

ଭୀମଭୋଇଙ୍କ କବିତାରେ ହିନ୍ଦୁ ପୁରାଣ, ଦର୍ଶନ, ସାହିତ୍ୟ ପ୍ରଭୃତିର ଗଭୀର ଆହରଣ ରହିଛି । କିନ୍ତୁ ସେ ସବୁକୁ ସେ ସଂପୂର୍ଣ୍ଣ ରୂପେ ମାନି ନେଇ ନାହାନ୍ତି । ସେ

ଥିଲେ ବିପ୍ଳବୀ । ସେ ବ୍ୟକ୍ତି ଗତ ଜୀବନର ଘାତ ପ୍ରତିଘାତରେ ଯେତିକି ଉଦ୍‌ବେଳିତ ଜାଗତିକ ସହାନୁଭୂତି ଓ କରୁଣା ବୋଧରେ ସେତିକି ବ୍ୟାକୁଳ । ଗୁରୁ ଓ ଈଶ୍ୱରଙ୍କ ପ୍ରତି ତାଙ୍କର ଗଭୀର ଆନୁଗତ୍ୟ ରହିଛି । କବିତ୍ୱ ପ୍ରତି ମଧ୍ୟ ତାଙ୍କର ତୀବ୍ର ଆକର୍ଷଣ ରହିଛି ।

ଭୀମଭୋଇଙ୍କ "ସ୍ତୁତି ଚିନ୍ତାମଣି" ରେ ବାରମ୍ବାର ଆଧ୍ୟାତ୍ମିକ, ସାମାଜିକ ଓ ମନସ୍ତାତ୍ତ୍ୱିକ କ୍ଲେଶ ସବୁ ଏକାଥରେ ଜୋଡ଼ି ହୋଇ ରହିଥାନ୍ତି । କବି ଜୀବ, ଚାତକ ଓ 'ଦରିଦ୍ର ପ୍ରାଣୀ' ଭାବରେ ଅନେକକାଳ କୃପା ପାଇଁ ଅପେକ୍ଷା କରିବାପରେ ନିରାଶ ହୋଇ ପଡ଼ିଛନ୍ତି । 'ପୂର୍ଣ୍ଣମୀ ଶଶୀ' ପରି ତାଙ୍କର ଏତେବଡ ପ୍ରଭୁ ରହିଥିଲାବେଳେ ତାଙ୍କର ଭୃତ୍ୟକୁ ଜଣେ 'ଖଣ୍ଟଚୋର', ପରି 'ହଟହଟା' ଓ 'ନାରଖାର' କରୁଛନ୍ତି । ଅନେକ ଦିନର ବୁଭୁକ୍ଷା ମେଣ୍ଟାଇବା ପାଇଁ ସେ ଭାତ, ପାଣି ଓ ଧନ ଲୋଡ଼ିଛନ୍ତି । ରୂପକ ଛଳରେ ଏଠାରେ ଏକ ଭିନ୍ନ ସ୍ତରର କ୍ଷୁଧା ତୃଷା ସୂଚିତ ହେଉଥିଲେ ମଧ୍ୟ କବିଙ୍କ ବ୍ୟକ୍ତିଗତ ଜୀବନର ଉତ୍କଟ ଦାରିଦ୍ର୍ୟର ବାସ୍ତବତାର ଧ୍ୱନି ଏଠାରେ ଶୁଣାଯାଏ ।

ଜଗତର ମୌଳିକ ଅସମାନତା ଓ ଅନ୍ୟାୟ ପ୍ରତି ବାରମ୍ବାର ଦୃଷ୍ଟି ଆକର୍ଷଣ କରି ଭୀମଭୋଇ କହିଛନ୍ତି:

ମୋ ମୋ ଅଙ୍ଗ ସିନା ତୁମ୍ଭେ ବଞ୍ଚାଇଛ ମାୟାରୁ କାୟାକୁ ଏଡ଼ି,
ମୋର ପିଣ୍ଡ ପ୍ରାଣ କେତେକାଳ ଥିବ ଯେସନ ସିନ୍ଧୁ ଲହଡି ।

ଲକ୍ଷ୍ୟ କରିବାର କଥା ଯେ ବ୍ୟକ୍ତିଗତ କ୍ଲେଶ ପ୍ରସଙ୍ଗରେ ଭକ୍ତ ଭୀମଭୋଇଙ୍କ ସହନଶୀଳତାର ପରିସୀମା ଖୁବ୍ ବ୍ୟାପକ । କିନ୍ତୁ ଜଗତର ଦୁଃଖ ପ୍ରସଙ୍ଗରେ ସେହି ପରିସୀମା ଖୁବ୍ ସଂକୁଚିତ ।

ଅନ୍ୟର ପୀଡ଼ା ଅସହନୀୟ ବୋଧ ହେବାରୁ ତାଙ୍କର ଯେଉଁ ବୈପ୍ଳବିକ ବିଦ୍ରୋହୀ ମନୋଭାବ ସୃଷ୍ଟି ହୋଇଛି, ତାହାର ଏକ ଉଦାହରଣ ହେଉଛି:

ବସି ଥାଇ କୂଳ ମହାନଦୀ ଜଳ ଛୁଇଁ ଅଛି ସତ୍ୟ କରି,
ଧର୍ମକୁ ଲଘି ସୁରାପାନ କରିବି ହରିବି ବ୍ରାହ୍ମଣ ସ୍ତିରୀ ।
ପ୍ରାଣୀଙ୍କ କଷଣ ଭେଦୁଅଛି ମନ ଜୀବନକୁ ମୋର ବାଧେ,
ଭୀମ ଅରକ୍ଷିତ କରିଦଣ୍ଡବତ କାରଣ ମାଗୁଛି ପାଦେ ।

କବିଙ୍କର ଉତ୍‌କ୍ଷିପ୍ତ, ଉଦ୍‌ବେଳିତ ଓ ଧୈର୍ଯ୍ୟହୀନ ଅବସ୍ଥା ଏଠାରେ ଲକ୍ଷ୍ୟଣୀୟ। ନିଜକଥା କହିବାକୁ ଯାଇ ଅତ୍ୟନ୍ତ ମାର୍ମିକଭାବେ ସେ ପ୍ରକାଶ କରିଛନ୍ତି ସମସ୍ତ ପ୍ରାଣୀଙ୍କ ଅପ୍ରମିତ ଦୁଃଖ। ତାହାର ପ୍ରତିକାର ପାଇଁ ସେ ଅନୁନୟ କରିବେ। ପ୍ରାର୍ଥନା କରିବେ ଓ ବିଦ୍ରୋହ ମଧ୍ୟ କରିବେ। ନିଜର ଯାହାକିଛି ପତନ ହେଉ ସେ ସହିବେ କେବଳ ଯଦି 'ଜଗତ' ଉଦ୍ଧାର ପାଇବ। ଏଥିରେ ଅଛି ଗଭୀର ମାନବିକତା, ବାସ୍ତବତାରୁ ଉତ୍ପନ୍ନ ବେଦନାବୋଧ, କରୁଣାବୋଧ ଓ ବିଦ୍ରୋହୀଭାବ, ଏକ ଗଭୀର ଭକ୍ତି ଭାବନା ଓ ଦାର୍ଶନିକତା ସେଗୁଡ଼ିକ ସହିତ ଘନିଷ୍ଠ ଭାବରେ ଜଡ଼ିତ ହୋଇ ରହିଛି।

ତ୍ରିଂଶ ବୋଲିରେ ତାଙ୍କର ଅନ୍ୟ ଏକ ବେଦନା ପ୍ରକାଶିତ ହୋଇଛି। ସପ୍ତବିଂଶ ବୋଲିର 'ମୁଁ ଯେ ମୁର୍ଖ କବି' କହିବାର ବିନମ୍ରତା ବଦଳରେ ଏଠାରେ ଏକ ସଚେତନ, ପ୍ରଗାଢ଼ କାବ୍ୟ-ଆକାଂକ୍ଷା ରହିଛି। ପୂର୍ବରୁ ସେ ବିଶ୍ୱସ୍ରଷ୍ଟା ଯୁଗଳଙ୍କ ସନ୍ତାନଭାବେ ନିଜର ଜନ୍ମଗତ ସୃଷ୍ଟି ପ୍ରତିଭା ବିଷୟରେ ଘୋଷଣା କରିଥିଲେ। 'ଜନମ ଲଭିଛି କବିକୃତ କଳାଧରି' ବୋଲି କହିଥିଲେ। ଅଥଚ ଦ୍ୱିତୀୟ ପଦରେ ସେହି ସଚେତନତା ହିଁ ନିର୍ଦ୍ଦିଷ୍ଟ ଭାବେ ଉପସ୍ଥିତ ସୃଷ୍ଟି ମୁହୂର୍ତ୍ତରେ ଏକ ମନସ୍ତାତ୍ତ୍ୱିକ ଅନ୍ତରାୟ ନେଇ ଆସିଛି- 'ଏଠାରୁ ଏଣିକି ନ ଦିଶୁଛି ପଦ'। ଏ ଅବସ୍ଥାରେ ସେ ଗୁରୁଙ୍କ ଚରଣରେ ସମସ୍ତ କାମନା, ବାସନା ଓ କଳ୍ପନା ଅର୍ପଣ କରି ଦେଇଛନ୍ତି (ପଦ ୩)। ଚତୁର୍ଥ ପଦରେ ସେ ନିଜ କାବ୍ୟ ପ୍ରତିଭାର ପରିସ୍ଫୁରଣ ପାଇଁ ପ୍ରାର୍ଥନା କରିଛନ୍ତି।

ସେଇ ଧରଣର କାବ୍ୟ-ଗୌରବ ତାଙ୍କର ରହିଥିଲେ ସେ ଯେ ଅନ୍ୟ ସମସ୍ତ ଦୁଃଖ ସ୍ୱୀକାର କରିବାକୁ ପ୍ରସ୍ତୁତ (ପଞ୍ଚମ ପଦ) ଏବଂ କେବଳ ସୃଷ୍ଟିଶୀଳ ଚେତନା ଜରିଆରେ ସମ୍ଭବପର ହେଉଥିବା ଭକ୍ତିର 'ସୁଧା ମଧୁରସ' ପାନ କରିବାର ଯେଉଁ ଉତ୍କଣ୍ଠା (ଷଷ୍ଠପଦ) ତାହା ସେ ବର୍ଣ୍ଣନା କରିଛନ୍ତି। ତା ପରେ ସେ ଆଧ୍ୟାତ୍ମିକତାର ମୁଖ୍ୟ ପ୍ରସଙ୍ଗକୁ ଫେରି ଆସିଛନ୍ତି (ପଦ ୭-୧୨)। ସେ ଅନନ୍ତ, ଅରୂପ ଓ ଶୂନ୍ୟପୁରୁଷଙ୍କ ପ୍ରତି ତାଙ୍କର ଆନୁଗତ୍ୟ ବର୍ଣ୍ଣନା କରିଛନ୍ତି।

ତାଙ୍କର ଗଭୀର ଆତ୍ମସଚେତନତା ବିଷୟରେ ଏକ ଉଦାହରଣ ରହିଛି ତ୍ରୟୋବିଂଶ ବୋଲିରେ। ସକଳ ବିଶ୍ୱପ୍ରତି ଆକୁଳ ନିବେଦନ ଜଣାଇବାପରେ ସେଠାରେ ସେ ତାଙ୍କ ପ୍ରତି ନ୍ୟାୟ କରିବା ପାଇଁ ନିବେଦନ କରିଛନ୍ତି ଏବଂ ଭାବାବେଗ ସହିତ କହିଛନ୍ତି:

ବୁଝିଦେଲେ ବୁଝ ଏ ମୋର କି ଆୟ ଆୟ ନହେଲେ ଛାଡିବି ଦେହ,
ତିନିପୁର ସଭାମଣ୍ଡଳରେ ଯେତେ କବି ହତ୍ୟା ଦୋଷ ବହ।

ଭୀମଭୋଇଙ୍କ ଭକ୍ତି-କବି ବ୍ୟକ୍ତିତ୍ୱ ଏବଂ ତାଙ୍କ କବିତାର କାବ୍ୟପୁରୁଷ ଏକ ଓ ଅଭିନ୍ନ, ତାଙ୍କ କବିତା ସିଧାସଳଖ ଭାବରେ ତାଙ୍କ ଜୀବନର ଗାଥା। ସାଧାରଣ ଲୋକଙ୍କ କଥିତ ଭାଷା ସେ ସର୍ବଦା ଗଣ ଉଦ୍ଦେଶ୍ୟରେ ଓ ଗଣ ଉପଯୁକ୍ତ ଶୈଳୀରେ ରଚନା କରୁଥିଲେ। ତାଙ୍କ କବିତାରେ ଦର୍ଶନ ଅଛି ଆଳଙ୍କାରିତା ମଧ୍ୟ ଅଛି। ଦୁର୍ବିସହ ମାନସିକ କ୍ଳେଶ ଓ ବିକ୍ଷୋଭ ଅଛି। ଭୀମଭୋଇ କଦାପି ଭୁଲିନଥିଲେ ସେ ଗୋଟିଏ ଆତ୍ମା ହେବା ସଙ୍ଗେ ସଙ୍ଗେ ଗୋଟିଏ ଶରୀର ଓ ଗୋଟିଏ ମନ, ଯାହା ସାମାଜିକ-ଐତିହାସିକ ତାଡନାର ଶରବ୍ୟ ହୋଇଥିଲା। ଭକ୍ତି ଓ ଦର୍ଶନତତ୍ତ୍ୱର ଆବେଗ ମଧ୍ୟରେ ସେ କେବେହେଲେ 'ଏକଖଣ୍ଡ ହାଡ ବୁନ୍ଦାଏ, ରୁଧିର ଏବଂ ଫୁଟେ ମାଉଁସକୁ' ଭୁଲି ପାରିନଥିଲେ। ଜୀବନର ଯେତେସବୁ ଯନ୍ତ୍ରଣା, ସମାଜ ଓ ବିଶ୍ୱ ନିଧାନର ଯେତେସବୁ ଅନ୍ୟାୟ ସେହି ପ୍ରସଙ୍ଗରେ ତାଙ୍କର ସବୁ ସାଲିସବିହୀନ କ୍ରୋଧ ସତ୍ତ୍ୱେ ଗୁରୁ ଈଶ୍ୱର ଅଲେଖ ଏବଂ ଅରୂପ ପ୍ରତି ତାଙ୍କ ନିଷ୍ଠା ଓ ଆନୁଗତ୍ୟକୁ କେବେହେଲେ ଭୁଲିଗଲେ ନାହିଁ। ମାଟିକୁ ଜାବୋଡି ଧରିଲେ ଏବଂ ତା ସହିତ ଆତ୍ମାକୁ ମଧ୍ୟ ଜାବୋଡି ଧରିଲେ। ସାମାଜିକ ଓ ଆଧ୍ୟାତ୍ମିକ ବିଷୟ ବସ୍ତୁ-ଉଭୟକୁ ସମଭାବରେ ଗୁରୁତ୍ୱପୂର୍ଣ୍ଣ ବୋଲି ଭାବିଲେ। ଉଚ୍ଚାଙ୍ଗ ସାହିତ୍ୟ ଓ ଦର୍ଶନରୁ ଅନେକ ଉପାଦାନ ତାଙ୍କ କବିତାରେ ସଂଯୋଜିତ କଲେ ଏବଂ ସାଧାରଣ ଜୀବନର ଭାଷା ଓ ଭାବକୁ ତହିଁରେ ସିଧା ସଳଖ ଯୋଡିଲେ। ସାହିତ୍ୟ, ପୁରାଣ, ଲୋକସାହିତ୍ୟ ସବୁକିଛିକୁ ମିଶ୍ରଣ କରି ସୃଷ୍ଟି କଲେ ଭୀମଭୋଇ ସାହିତ୍ୟ ଯାହା ଅନନ୍ୟ ଓ ଅସାଧାରଣ। ଭୀମଭୋଇଙ୍କ ପକ୍ଷରେ କବିତା ଭଗବତ ଚିନ୍ତାର ବାହନ ମାତ୍ର ଥିଲା ଏବଂ ସେହି କାର୍ଯ୍ୟରେ ସେ ଅସାଧାରଣ ସଫଳତା ହାସଲ କରିଛନ୍ତି। ଜଗନ୍ନାଥ ଦାସଙ୍କ ପ୍ରାଞ୍ଜଳତା ଓ ସ୍ୱଚ୍ଛତା, ଦୀନକୃଷ୍ଣଙ୍କ ଆବେଗ ଓ ଉଚ୍ଛ୍ୱାସ ଏବଂ ସାରଳାଙ୍କ ସହଜ ମନୋହାରିତା ଓ ଉଦ୍ଦାମ ପ୍ରାଣବନ୍ତତାର ସୁମଧୁର ସମନ୍ୱୟ ତାଙ୍କର କବିତା। ସତ୍ୟ, ଶାନ୍ତି ଓ ଅହିଂସାର ସେ ଥିଲେ ପୂଜାରୀ। ସେ ଲେଖିଛନ୍ତି।

ସତ୍ୟରେ ମରିବି ସତ୍ୟରେ ତରିବି ଏହି ଆଜ୍ଞା ମୋତେ ହେଉ,
କହେ ଭୀମଭୋଇ ଏ ମୃତ୍ୟୁ ମଣ୍ଡଳେ ଯଶ ଅପଯଶ ଥାଉ।

ତାଙ୍କ କବିତାରେ ଭକ୍ତି ଓ ଜ୍ଞାନର ସମ୍ମିଶ୍ରଣ ହୋଉଛି, ତାଙ୍କର ଭକ୍ତି ଅଲେଖ ମହିମାଙ୍କ ପ୍ରତି ନିବେଦିତ। ସେ ଥିଲେ ଅଦ୍ୱୈତବାଦୀ ଓ ନୈତିକ ଯାହା ତାଙ୍କୁ ଅନ୍ତର୍ଭୁକ୍ତ କରିଛି ବୌଦ୍ଧ, ନାଥ ଓ ବୈଦିକ ସଂସ୍କୃତି ସହିତ। ତାଙ୍କ ପାଖରେ ପଞ୍ଚସଖାଙ୍କର ଜ୍ଞାନମିଶ୍ରା ଭକ୍ତି ଧର୍ମ ନାହିଁ। ଅଛି ଆତ୍ମ ସମର୍ପଣ। ଅଲେଖଙ୍କ ନିକଟରେ ନାମଜପ ଓ ସେବା ପାଇଁ ସେ ଉପଦେଶ ଦେଇଛନ୍ତି। ତାଙ୍କ କବିତାରେ ଗୁରୁଙ୍କ ଉପରେ ପ୍ରାଧାନ୍ୟ ଦିଆଯାଇଛି। ତାଙ୍କ ଗୁରୁ ହେଲେ ମହିମା ଅଲେଖ। ଅତି ସରଳ ଭାଷାରେ ମହିମାଙ୍କ ସ୍ତୁତି କରାଯାଇଛି ତାଙ୍କ "ସ୍ତୁତି ଚିନ୍ତାମଣି"ରେ । ବିଭିନ୍ନ ସତ୍ୟକୁ ସେ ସ୍ୱତଃସିଦ୍ଧ କରି ଦେଇଛନ୍ତି ସଂକ୍ଷିପ୍ତ ପରିପ୍ରକାଶ ଓ ଅଳ୍ପକଥା ମାଧ୍ୟମରେ ଏହାର ଉଦାହରଣ ହେଉଛି।

ପୁରୁଷ ଥାଇ ସ୍ତିରୀରତ୍ନ ନହେଲେ ଗୃହେ ଥିବାର କି ସୁଖ।

xxxxxxx

ଅକଳନା ବ୍ରହ୍ମ ଅନ୍ତ ନୋହେ ନାମ ଅଜପା ଅଣ ଅକ୍ଷର।

xxxxxxx

କାମିନୀ ଆରତ କାମବଶେ ରତ ଢମାଳିଆ ପଣେସମ

xxxxxxx

ଜନ୍ମହେଲେ ମୃତ୍ୟୁ ମୃତ୍ୟୁଠାରୁ ଜନ୍ମ ବେତ ପରକାର ଅଛି

xxxxxxx

ଆୟରେ ଆନନ୍ଦ ବ୍ୟୟରେ ଆନନ୍ଦ ବେତଠାରେ ସମାସମ।

xxxxxxx

ଆସୁଅଛି ଏକା ଯାଉଅଛି ଏକା କେହି ନୁହନ୍ତି କାହାର।

ଏଗୁଡ଼ିକ ପ୍ରବାଦ ବାକ୍ୟଭଳି। ଏଗୁଡ଼ିକରେ ଅଛି ନୈତିକ ଉପଦେଶ ଓ ଦାର୍ଶନିକ ସତ୍ୟମାନ। ଗ୍ରନ୍ଥଟିର ଭାଷା ମନୋରମ। ସରଳ ଓ କଥିତ ଭାଷା ବ୍ୟବହୃତ ହୋଇଛି ସାରାଗ୍ରନ୍ଥରେ। ସାରଳା ଓ ଜଗନ୍ନାଥ ଦାସ ବ୍ୟବହାର କରିଥିବା କଥିତ ଭାଷାର ପ୍ରୟୋଗ କରାଯାଇଛି ଯଥା 'କଞ୍ଚା', 'ଦରପଚା' 'କଷା' 'ଆମ୍ବିଳ', 'ଭୁଜା', 'ଖଜା' ପ୍ରଭୃତି । ଭକ୍ତିରସ ଗ୍ରନ୍ଥଟିର ମୁଖ୍ୟ ରସ। କୋଡିଏ ଅକ୍ଷର ବିଶିଷ୍ଟ ପଦ କିନ୍ତୁ

ମିଶ୍ରାକ୍ଷରର କବିତା ଅଛି ଗ୍ରନ୍ଥଟିରେ। ଇନ୍ଦ୍ରିୟଭୋଗ୍ୟ ପଂକ୍ତିମା ରହିଛି ଯଥା-'ଦିବସକେ ଘରିଥର ରତିକଲେ ମନ ତେବେ ନୁହେ ବୋଧ'। କବିଙ୍କ କଳ୍ପନା ଶକ୍ତିର ପରିପ୍ରକାଶ ପାଇଁ ଗ୍ରନ୍ଥଟିରେ ସୁଯୋଗ ନାହିଁ କାରଣ ଏହା ମୁଖ୍ୟତଃ ଭକ୍ତି କବିତା ତଥାପି ରୂପକଳ୍ପ ଓ ଉପମାମାନ ରହିଛି ଯେଉଁଥିରେ କବିଙ୍କ କଳ୍ପନା ପ୍ରବଣତାକୁ ଜାଣି ହୁଏ । ଯଥା-

କଫ କାଶ ଶେଳକ୍ଷମା ଯେ ଶରଦ ଗରମ ଲସମ ରୂପେ।
ଶିଶିର ହେମ ପରାଏ ହୋଇ ଅଙ୍ଗେ ପୀଡା।
(ଅଥବା) ମଦାଙ୍ଗ ଲତା ପରାଏ ମହାପାପ ସର୍ବାଙ୍ଗ ଶରୀରେ ରହି।
ଦିବସ-ରଜନୀ ପୀଡ଼ା କରୁଅଛି ବଇରି ପରାୟ ହୋଇ।।

କବିଙ୍କର ପାଣ୍ଡିତ୍ୟ, ଜୈବିକ ବୋଧଶକ୍ତି ରହିଛି। ବିଭିନ୍ନ ପୁରାଣର ସୂଚନା କବିଙ୍କର ବୋଧଶକ୍ତିର ପରିଚୟ ଦିଏ। କବିଙ୍କର ନବଦ୍ୱାର ସଂପର୍କିତ ଧାରଣା ଓ 'ବ୍ରହ୍ମ ଆନନ୍ଦ' ମଧ ତାଙ୍କର ପାଣ୍ଡିତ୍ୟର ପରିଘୟକ।

ଗ୍ରନ୍ଥଟିରେ ଅଳଙ୍କାର ମଧ୍ୟ ପ୍ରୟୋଗ କରାଯାଇଛି। ହୃଦୟକୁ ପଦ୍ମ କୁହାଯାଇଛି, 'ଅମର ବ୍ରହ୍ମ'ର ପ୍ରୟୋଗ କରାଯାଇଛି। ନାମବ୍ରହ୍ମ ମଧ ଏକ ରୂପକ। ଏହାର ବର୍ଣ୍ଣନା କବିତା ପୁସ୍ତକରେ ଅଛି। କବିତାରେ ଛନ୍ଦୋବଦ୍ଧତା ଥିବାରୁ ତାହା ସାଙ୍ଗୀତିକ ହୋଇ ଶ୍ରୁତିମଧୁର ହୋଇପାରିଛି। ଅନେକ ନୀତିଶିକ୍ଷା ଦିଆଯାଇଛି ଗ୍ରନ୍ଥଟିରେ। ମହିମା ଭକ୍ତ ପରଦାରା ଗମନ କରିବନାହିଁ, ଚୋରିକରିବ ନାହିଁ, ଖଚୁଆ ହେବନାହିଁ, ହିଂସା କରିବନାହିଁ।

ସ୍ତୁତି ଚିନ୍ତାମଣି ଏକ ସଫଳ ଓ ମହାନ୍ କବିତା ଗ୍ରନ୍ଥ।

**ସହାୟକ ଗ୍ରନ୍ଥାବଳୀ :**

୧. ‘ହେତୁ ଉଦୟ ଭାଗବତ’ ମହାପୁରୁଷ ଶିଶୁ ଅନନ୍ତ ଦାସ ଗ୍ରନ୍ଥାବଳୀ, ଡଃ ନିରଞ୍ଜନ ସାହୁ, ଓଡ଼ିଶା ବୁକ୍ ଏମ୍ପୋରିଅମ୍, ବାଲୁବଜାର, କଟକ (୨୦୨୦)।

୨. ‘ସ୍ତୁତି ଚିନ୍ତାମଣି’ ଭୀମଭୋଇ ଗ୍ରନ୍ଥାବଳୀ, ସଂ- କରୁଣାକର ସାହୁ, ଧର୍ମଗ୍ରନ୍ଥ ଷ୍ଟୋର, କଟକ।

୩. ‘ମହାପୁରୁଷ ବଳରାମ ଦାସଙ୍କ ଅଣାକାର ବ୍ରହ୍ମ ସଂହିତା’- ଧର୍ମଗ୍ରନ୍ଥ ଷ୍ଟୋର, କଟକ।

୪. ‘ଆଦି ଅନ୍ତ ଗୀତା’- ଧର୍ମଗ୍ରନ୍ଥଷ୍ଟୋର, କଟକ (୨୦୦୩)।

୫. ‘ପଞ୍ଚସଖା ଓଡ଼ିଆ ସାହିତ୍ୟ’- ଦେବେନ୍ଦ୍ର ମହାନ୍ତି ଫ୍ରେଣ୍ଡସ୍ ପବ୍ଲିଶର୍ସ- କଟକ (୨୦୧୯)।

୬. ‘କୋଣାର୍କ’- ପଞ୍ଚସଖା ବିଶେଷାଂକ, (୨୦୦୪) ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର, ସଂପାଦନା-ଡଃ ବଂଶୀଧର ମହାନ୍ତି।

୭. ‘ସନ୍ଥ ଭକ୍ତି ସାହିତ୍ୟ’- ଚିତ୍ତରଞ୍ଜନ ଦାସ (୧୯୮୨) ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର,

୮. ‘ପଞ୍ଚସଖା ଧର୍ମ ସାହିତ୍ୟ’, ଡଃ ସୁରେନ୍ଦ୍ର ମହାରଣା (୨୦୧୬) ଓଡ଼ିଶା ବୁକ୍ ଷ୍ଟୋର, କଟକ

୯. ‘ଶିଶୁ ଅନନ୍ତ ଦାସ’, (୨୦୧୮) ଡଃ ବାବାଜୀ ଚରଣ ପଟ୍ଟନାୟକ, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

୧୦. ‘ପଞ୍ଚସଖା’, ଗୋକୁଳ ଚନ୍ଦ୍ର ପଣ୍ଡା (୨୦୧୯) ସାରଦା ପବ୍ଲିକେସନ, କଟକ

୧୧. Sunya Purusa (2005) Baudha Vaishnavision of Odisha, Dr. Tandra Pattnaik, D.K., Print World, New Delhi.

# ଶୂନ୍ୟବାଦ : ବଳରାମ ଦାସ ଓ ଭୀମଭୋଇ

ପ୍ରଦୀପ କୁମାର ପଣ୍ଡା

ପଞ୍ଚସଖା ପରମ୍ପରା ଓ ସନ୍ଥକବି ଭୀମଭୋଇଙ୍କ କାବ୍ୟଧାରାରେ ଯଦି କିଛି ସମ୍ବନ୍ଧ ଥାଏ ତେବେ ତାହା ଶୂନ୍ୟବାଦୀ ଜ୍ଞାନାଦର୍ଶର ସମ୍ବନ୍ଧ । ସମଗ୍ର ଭାରତବର୍ଷର ଆଧ୍ୟାତ୍ମିକ ଓ ସାହିତ୍ୟିକ ପରିମଣ୍ଡଳରେ ଶୂନ୍ୟବାଦର ଯେଉଁ ସୁଦୃଢ ବହୁଦର୍ଶୀ ଭିତ୍ତି ରହିଛି, ତା'ର ପ୍ରେକ୍ଷାପଟରେ ଓଡିଆ ଭକ୍ତିସାହିତ୍ୟର ନିର୍ଣ୍ଣାୟନ ଓ ଭୀମଭୋଇଙ୍କ ଅବିଶ୍ୱସନୀୟ ପ୍ରତିଭାର ମୂଲ୍ୟାୟନ ଏ ଆଲେଖର ଲକ୍ଷ୍ୟ ।

ପଞ୍ଚସଖା ନାମରେ ଯେଉଁ ଏକ ଗୋଷ୍ଠୀର ଆଦର୍ଶକୁ ଆମ ସାହିତ୍ୟ ଇତିହାସରେ ଆମେ ନିର୍ଣ୍ଣିତ କରୁ ସେମାନେ ପ୍ରକୃତରେ ଏକ ଗୋଷ୍ଠୀ ଥିଲେ ନା ନାହିଁ, ତାହା ଏକ ପ୍ରଶ୍ନ । ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଅନନ୍ତ ଦାସ ପଞ୍ଚସଖା ନାମରେ ପରିଚିତ । ଏମାନେ ସମସ୍ତେ ଚୈତନ୍ୟଙ୍କ ସମସାମୟିକ ଓ ତାଙ୍କ ସଖା ଥିଲେ ବୋଲି ଅନୁମାନ କରାଯାଇଥାଏ । ଏ ପାଞ୍ଚଜଣ ପରସ୍ପରର ସଖା ଥିଲେ ନା ଗୋଟିଏ ଚେତନାବୃକ୍ଷର ପାଞ୍ଚୋଟି ଶାଖା ଥିଲେ ଓ ତେଣୁ ସେମାନେ ପଞ୍ଚସଖା ନା ପଞ୍ଚଶାଖା, ଏ ପ୍ରଶ୍ନବି ସମ୍ପୂର୍ଣ୍ଣ ଅମୂଳକ ନୁହେଁ । ଏମାନେ ସମସ୍ତେ ସମସାମୟିକ ଥିଲେ ବୋଲି ଥିବା ଅବଧାରଣାଟି ମଧ୍ୟ କେବଳ ଅନୁମାନ ସାପେକ୍ଷ । କାରଣ ଏମାନଙ୍କର ଜନ୍ମ ଓ ଜନ୍ମସ୍ଥାନ ନିରୂପଣ ଅବିସମ୍ବାଦିତ ନୁହେଁ । (ଓଡିଆ ସାହିତ୍ୟର ମଧ୍ୟ ପର୍ବ: ସୁରେନ୍ଦ୍ରମହାନ୍ତି)

ଏ ତାଳବ୍ୟ ଓ ଦନ୍ତ୍ୟରସନ୍ଦିଗ୍ଧ ଅବବୋଧରୁ ତଥାପି ଆମେ ମୁକୁଳି ଆସି ପାରିଛୁ ବୋଲି ମୋର ହୃଦ୍‌ବୋଧ ହୁଏ ନାହିଁ । ତେବେ ଗୋଟିଏ ଦୃଷ୍ଟିକୋଣରୁ ଏମାନଙ୍କ ସାଂସ୍କୃତିକ ସଖ୍ୟତା ଥିବା କଥାରେ ମୋର ଦ୍ୱିମତ

ନାହିଁ; ଯେ ଚେତନାର ଭୂମିରେ ଏମାନଙ୍କର ବ୍ରହ୍ମବୋଧ ଓ ଆଧ୍ୟାତ୍ମିକ ବିଚାରର ଏକ ସଙ୍ଗଠନ ଥିଲା, ଯଦିଓ ତିଳକଧାରଣର ଜପସାଧନା ଯାଏଁ ଏମାନେ ଥିଲେ ପରସ୍ପର ଭିନ୍ନ । ପ୍ରତାପରୁଦ୍ର ଦେବଙ୍କ ରାଜ ପୃଷ୍ଟପୋଷକତାରେ ଗୌଡୀୟ ବୈଷ୍ଣବଧର୍ମ ପ୍ରତିପାଳିତ ହେଉଥିବାରୁ ସମୟ ଓ ପରିସ୍ଥିତିର ତାଡନାରେ ଏ ପଞ୍ଚସଖା ବାହାରେ ବୈଷ୍ଣବ ରୂପେ ପରିଚିତି ପ୍ରଦର୍ଶନ କରୁଥିଲେ ହେଁ ଅନ୍ତରରେଏମାନେ ସମସ୍ତେ ଥିଲେ ଶୂନ୍ୟବାଦୀ । ଶୂନ୍ୟ ଜଗନ୍ନାଥଙ୍କ ରାଜାନୁଗ୍ରହରେ ବୈଷ୍ଣବ ପରିଧାନ ପିନ୍ଧାଇଲା ପରି ବାହ୍ୟରୂପରେଏମାନେ ଦିଶୁଥିଲେ ସିନା ବୈଷ୍ଣବ; କିନ୍ତୁ ଥିଲେ ପ୍ରଚ୍ଛନ୍ନ ବୌଦ୍ଧ ।

ଏ ପଞ୍ଚସଖାଙ୍କ ମଧ୍ୟରେ ବୟୋଜ୍ୟେଷ୍ଠତାରେ ବଳରାମ ଓ ଅଚ୍ୟୁତାନନ୍ଦଙ୍କ ନେଇ ମଧ୍ୟ ଦ୍ୱନ୍ଦ୍ୱ ରହିଛି । କିନ୍ତୁ କୃତି ଓ କିର୍ତ୍ତୀରେ ବଳରାମ ନିଶ୍ଚିତ ଅଗ୍ରଗଣ୍ୟ । ସମଯୁଗରେ ଥିଲେ ଦୁଇଜଣ ସାରସ୍ୱତ ସାଧକ । ଜଣେ ଜଗମୋହନ ରାମାୟଣର ସ୍ରଷ୍ଟା ଓ ଆର ଜଣକ ପ୍ରେମଭକ୍ତିର ଉପାସକ ମତ୍ତ ବଳରାମ । ରାମାୟଣ, ମହାଭାରତ, ଚଣ୍ଡୀ ପୁରାଣ, ଲକ୍ଷ୍ମୀ ପୁରାଣ. କୁଲାଳ ପୁରାଣ, ବ୍ରହ୍ମାଣ୍ଡଭୂଗୋଳ, ଶରୀରଭୂଗୋଳ ଆଦି ତ୍ରିଂଶାଧିକ ଗ୍ରନ୍ଥର ପ୍ରଣେତା ହେଉଛନ୍ତି ବଳରାମ ଦାସ ।

ବଳରାମ ଦାସ ଓ ସନ୍ଥକବି ଭୀମଭୋଇଙ୍କ ସମୟକାଳର ପାଖାପାଖି ଚାରିଶହ ବର୍ଷ ବ୍ୟବଧାନ; କିନ୍ତୁ ଭାବବଳୟରେ ଓ ବହ୍ମସାଧନାରେ ଦୁହିଁଙ୍କ କାବ୍ୟାତ୍ମର ଦୂରତ୍ୱ କ୍ୱଚିତ୍ । ଉଭୟେ ଥିଲେ ଅସବର୍ଣ୍ଣ ଓ ତଥାକଥିତ ସବର୍ଣ୍ଣ ଧର୍ମାଚାରୀ ପଣ୍ଡିତ ତଥା ସ୍ୱରାଜ୍ୟର ରାଜନ୍ୟ ଛାମୁଙ୍କର ଦ୍ୱାରା ନିର୍ଯ୍ୟାତିତ ଓ ଲାଞ୍ଛିତ । "ଲକ୍ଷ୍ମୀଙ୍କ ଅଭିଶାପରେ ସମଗରା ପାଟ ମଧ୍ୟରେ ଅପନ୍ତରାରେ ପଡି ବଳରାମ ମରିଥିଲେ ବୋଲି ଯେଉଁ କିମ୍ବଦନ୍ତୀ ଅଛି ସେଥିରୁ ସହଜିଆ ପ୍ରେମଭକ୍ତିର ତତ୍କାଳୀନ ପୀଠ ପୁରୀରୁ ସେ ନିର୍ବାସିତ ହୋଇଥିବା କଥା ସ୍ପଷ୍ଟ ସୂଚିତହୁଏ ।" (ସୁରେନ୍ଦ୍ରମହାନ୍ତି)

ଭୀମଭୋଇ ମଧ୍ୟ ତଦ୍‌ରୂପ ସବର୍ଣ୍ଣ ଓ ରାଜନ୍ୟଙ୍କ ନିର୍ଯ୍ୟାତନାରେ କାରାଗାର ଭୋଗିଥିଲେ ଓ ବାଲ୍ୟାବସ୍ଥାରୁ ଗ୍ରାମରୁ ଗ୍ରାମ ତଡାଖାଇ ଭୋଗିଥିଲେ ଅସହ୍ୟ କଷଣ । ବଳରାମ ଗାଇଲେ –

"ହରିହୋ ! ତୋତେ ଆଶ୍ରା କରି କ୍ଷେତ୍ରେ ରହିଲି
ତୋତେ ଆଶ୍ରା କରି ଫଳ ପାଇଲି,
ହରି ତୁ ବିଶ୍ୱାସଘାତକତା କଲୁ ।
ହରି ହୋ ! ନୃପତିହାତେ ବନ୍ଧାଇଲୁ ମୋତେ
କାଳିଆ ଦାସ ନ ଯାଇ ପରତେ । (ଭାବସମୁଦ୍ର)

ଭୀମଙ୍କୁ ଶୁଣନ୍ତୁ –

କିରସ୍ତାନ ବୋଲି ଦେଉଛନ୍ତି ଗାଳି ନିନ୍ଦା କରୁଛନ୍ତି ଲୋକ,
ଅଲେଖ ଅଲେଖ ବୋଲିବାରୁ ସ୍ୱାମୀ ଦେଉଛ ଦୁର୍ଦ୍ଦଣ୍ଡ ଦୁଃଖ ।
ବସନ ପ୍ରାୟେ ଘୋଡାଇଛି କାୟେ କଳଙ୍କ ପାପ ବକଳ,
ସତ୍ୟଧର୍ମ ସତ୍ୟଧର୍ମ ବୋଲିବାରୁ ନିନ୍ଦୁ ଅଛନ୍ତି ସକଳ ।

X XXXX

ଲୁହ ନାହିଁ ରକ୍ତ ବହୁଥାଇ ମୋର ଶ୍ରୀହସ୍ତେ ନିଅଛି ପୋଛି
କେହି ନ ଜାଣନ୍ତି ଶ୍ରୀଗୁରୁ ଜାଣନ୍ତି ଯେତେ କଷ୍ଟ ପାଇଅଛି ।
(ଦ୍ୱାବିଂଶବୋଲି . ସ୍ତୁତିଚିନ୍ତାମଣି)

ଯାତନାରେ କେବଳ ନୁହେଁ, ସମକାଳର ସାମାଜିକ ଓ ଧାର୍ମିକ ବ୍ୟବସ୍ଥା ବିରୁଦ୍ଧରେ ସାରସ୍ୱତ ବିପ୍ଲବରେ ମଧ୍ୟ ଉଭୟ କବି ଥିଲେ ସମାଞ୍ଜସ । ବଳରାମଙ୍କ ସାହିତ୍ୟକୃତିରେ ବିପ୍ଲବର ସ୍ୱରକୁ ସଦୃଷ୍ଟାନ୍ତ ଉଲ୍ଲେଖ କରିଛନ୍ତି ସୁରେନ୍ଦ୍ରମହାନ୍ତି । "ବ୍ରାହ୍ମଣସଂସ୍କୃତି ଓ ରକ୍ଷଣଶୀଳତା ପୁଣି ବର୍ଣ୍ଣାଶ୍ରମର ସ୍ପର୍ଦ୍ଧା ମଧ୍ୟରେ ବନ୍ଧା ପଡିଥିବା 'ବ୍ରହ୍ମବିଦ୍ୟା'କୁ ତଥାକଥିତ ପଣ୍ଡିତଙ୍କ ବଜ୍ରମୁଷ୍ଟି ମଧ୍ୟରୁ ଉଦ୍ଧାରକରି , 'ବାଉରୀ'ମାନଙ୍କୁ ସୁଦ୍ଧା ସେଥିରେ ଅଧିକାର ଦେବା ଷୋଡଶ ଶତାବ୍ଦୀର ସମାଜରେ କି ବୌଦ୍ଧିକ ଦୁଃସାହସ ଥିଲା ! " ମୁକ୍ତିମଣ୍ଡପରେ 'ବ୍ରହ୍ମବିଦ୍ୟାର ଆଲୋଚନା ଚାଲିଥିଲା ବେଳେ ସେଠାରେ ଶୂଦ୍ର ବଳରାମଙ୍କୁ ଦେଖିପାରି, ବ୍ରାହ୍ମଣମାନେ ଅଭିଯୋଗକଲେ –

"ଅବଧାନ ମହାରୁଦ୍ର ମଣିମା ଭୋ ଦେବ,
ବ୍ରହ୍ମ କ୍ଷତ୍ରି ବୈଶ୍ୟ ଶୂଦ୍ର ଚାରିଜାତି ସୁଲଭ,

ଶୂଦ୍ର ହୋଇ ଯେବେ କରେ ବ୍ରହ୍ମ କର୍ମ ସଂଜ୍ଞା
ତାହାକୁ ଉଚିତ ଦଣ୍ଡ ହୁଅଇ ଯେ ଆଜ୍ଞା" ।

ଏହାର ଉତ୍ତରରେ ଅଭିଯୁକ୍ତ ବଳରାମ କହିଥିଲେ –

"ଏ ଯେବେ ବ୍ରହ୍ମବିଦ୍ୟାକୁଛନ୍ତି ଗୋପ୍ୟକରି,
କାଲି ଦେବାର୍ଚ୍ଚନ ବେଳେ କହିବା ବାଉରୀ" ।

(ଓଡ଼ିଆ ସାହିତ୍ୟର ମଧ୍ୟ ପର୍ବ)

ଏଣେ ଊନବିଂଶ ଶତାବ୍ଦୀର ଆଉ ଜଣେ ସାରସ୍ୱତ ବିଦ୍ରୋହୀ ଭୀମ ଭୋଇ ଗାଇଲେ–

"ଏ ପଟେ ଜଗନ୍ନାଥ ଅଛି । ପ୍ରତିମା ମିଛରେ ପୂଜୁଛି ।
ମୁର୍ତ୍ତି ପ୍ରତିମା ଶୁଷ୍କକାଠ । ସେ ପୁଣି ନେବ କି ବୈକୁଣ୍ଠ ॥
ମିଥ୍ୟାରେ ଭୁଲିମରେ ପ୍ରାଣୀ । ଘଟେ ପ୍ରତିମାକୁ ନ ଚିହ୍ନି ।
ତୁ ପରା ଅଟୁ ଜଗନ୍ନାଥ । ତୋ ଶକ୍ତି ତୋତେ ନାହିଁ ଅନ୍ତ ॥"

(ଶ୍ରୁତି ନିଷେଧଗୀତା, ଦ୍ୱିତୀୟ ଅଧ୍ୟାୟ)

ଏ ତ ଗଲା ବ୍ୟକ୍ତିସତ୍ତାର ବିଦ୍ରୋହର କଥା; କିନ୍ତୁ ଏ ବିସ୍ମୟକାରୀ ସନ୍ଥ ସାରସ୍ୱତ ସ୍ରଷ୍ଟାଦ୍ୱୟଙ୍କ ସୃଷ୍ଟିତ୍ୱ ଅବଧାରଣା, ବ୍ରହ୍ମ ନିରୂପଣ, ଶରୀରତତ୍ତ୍ୱ ଓ ସାଧନାରେ ଥିଲା ଅପୂର୍ବ ସାମ୍ୟ । ପରମ ପରୁଷଙ୍କ ପ୍ରତି ପ୍ରେମ, ଅନୁରକ୍ତି, ଭକ୍ତିର ନିବିଡତା ଯେତିକି ନିରଞ୍ଜନ, ନିରୁପାଧି, ଅନିର୍ବଚନୀୟ, ବ୍ରହ୍ମଙ୍କ ପ୍ରତି ଏମାନଙ୍କ ନିବିଷ୍ଟତା ସେତିକି। ଉଭୟେ ଥିଲେ ଶୂନ୍ୟ ଉପାସକ । ବଳରାମଙ୍କ ଶୂନ୍ୟବାଦ ଯେତିକି ବୌଦ୍ଧ, ସେତିକି ଉପନିଷଦୀୟ । ଭୀମଙ୍କ ଶୂନ୍ୟ ଆରାଧନା ମଧ୍ୟ ସମଭାବିତ । ଜଣକର ଆରାଧ ହୁଏତରାମ ଓ ଅନ୍ୟ ଜଣକର ମହିମା; କିନ୍ତୁ ଉଭୟଙ୍କର ଚିରାୟତ ଅନ୍ୱେଷା ଶୂନ୍ୟବ୍ରହ୍ମ ।

"ଭାରତୀୟ ପରମ୍ପରାରେ ଜ୍ଞାନର ଚୂଡ଼ାନ୍ତ ହେଉଛି ଉପନିଷଦ୍ ଓ ଭକ୍ତିର ଚରମ ଉଦାହରଣ ହେଉଛି ଶ୍ରୀମଦ୍ ଭାଗବତ । (ଦର୍ଶନ ଓ ନିବେଦନ – ମଧୁସୂଦନ ପତି) ଆଲୋଚ୍ୟ ବଳରାମ ଦାସ ଓ ଭୀମ ଭୋଇ ଜ୍ଞାନର ଚୂଡ଼ାନ୍ତ ଓ ଭକ୍ତିର ଚରମକୁ ସ୍ପର୍ଶ କରିଥିବା ଅନେକ ଉଦ୍ଧୃତିରୁ ଆମେ ଅନୁଭବ କରିପାରିବା । ବଳରାମଙ୍କ ଶାସ୍ତ୍ରଜ୍ଞାନ ଓ ପାଣ୍ଡିତ୍ୟରେ ତଦ୍‌ସାମୟିକ ଅନେକ

ପଣ୍ଡିତ ଏପରିକି ଚୈତନ୍ୟ ଚକିତ ଓ ନିସ୍ତବ୍ଧ ହୋଇଥିବାର କିମ୍ବଦନ୍ତୀ ଶୁଣିବାକୁ ମିଳେ । ଏଣେ ଭୀମ ଭୋଇ ଅନ୍ଧ, କନ୍ଧ, ଅପଣ୍ଡିତ, ଅଜ୍ଞାନ, ଅରକ୍ଷିତ ଆଦି ଅନେକ ବିଶେଷଣରେ ନିଜର ଦୈନ୍ୟ ପ୍ରକାଶ କରିଥିଲେ ହେଁ ତାଙ୍କର ଶାସ୍ତ୍ରଜ୍ଞାନ ଓ ସ୍ମୃତିଶକ୍ତିକୁ ଅସ୍ୱୀକାର କରିବାର ଆମର ଉପାୟ ନାହିଁ ।

ବୈଦିକ ପୁରୁଷସୂକ୍ତରେ ମହାଜାଗତିକ ଆଧ୍ୟାତ୍ମିକଏକତ୍ୱର ବର୍ଣ୍ଣନା ଶୁଣନ୍ତୁ । "ସର୍ବବ୍ୟାପୀ ପୁରୁଷ, ସହସ୍ରଶିର, ସହସ୍ରଚକ୍ଷୁ, ସହସ୍ରବାହୁ, ସହସ୍ର ଅଙ୍ଗପ୍ରତ୍ୟଙ୍ଗ । ସର୍ବତ୍ର, ସର୍ବଦା ଅଧିଷ୍ଠିତ..ଯାହାବି ଥିଲା ଅଛି ଓ ରହିବ ସେ ସବୁ ପୁରୁଷ । ବିଶ୍ୱ ତାଙ୍କର ଏକ ଅଂଶମାତ୍ର । ଦୃଶ୍ୟମାନ ଜଗତ ବାହାରେ ମଧ୍ୟ ଅସୀମରୂପେ ଏହା ବିସ୍ତାରିତ ।" ପୁଣି ଋଗ୍‌ବେଦର ନାରଦୀୟ ସୂକ୍ତରୁ ଶୁଣନ୍ତୁ । "ସେହି ଅପହଞ୍ଚ ଗଭୀରତାକୁ ଭେଦି କେହି ତାକୁ ଗମି ପାରୁ ନଥିଲେ । ତା'ଭିତରେ ବିଭେଦ ନଥିବାରୁ ନଥିଲାମୃତ୍ୟୁ, ନଥିଲା ଅମୃତତ୍ୱ, ନଥିଲା ଦିନ, ନଥିଲା ରାତ୍ରି । କେବଳ ଥିଲା ଏକ ଉପସ୍ଥିତି, ନିଜରଗୌରବ ଓ ଗାରିମାରେ ସ୍ପଂଦିତ ହେଉଥିଲା, ନିବିଡ ଅନ୍ଧକାର ତାକୁ ଅଭିଭୂତ କରି ରଖିଥିଲା।"

ଦେଖନ୍ତୁ, ସେ ସର୍ବବ୍ୟାପୀ ପୁରୁଷକୁ କଳ୍ପନାରେ କେମିତି ପ୍ରତ୍ୟକ୍ଷ କରୁଛନ୍ତି ବଳରାମ ଦାସ । ଅପୂର୍ବ ଗଦ୍ୟଛନ୍ଦରେ ରଚିତ ଗୁପ୍ତଗୀତା ବା ବ୍ରହ୍ମଗୀତାରେ ବର୍ଣ୍ଣୁଛନ୍ତି – "ଗତି ଚତୁର୍ଥ ବୋଲନ୍ତେ ଚାରିବେଦ ଚାରିଗତି । ଚାରିବେଦଙ୍କ ସ୍ଥାନ କହିଂ । ମୁଖରେ ସାମବେଦ ବସଇଂ । ନାସାରେ ଋକ୍‌ବେଦ ବସେଂ । କର୍ଣ୍ଣରେ ଯଦୁର୍ବେଦ ବସଇଂ । ଯେ ଚାରିବେଦଙ୍କ ଶିରରେ ନିରାକାରଙ୍କ ସ୍ଥାନ । ସେଠାରେ ଶିଶୁବେଦ ବସଇଂ । ଜିହ୍ୱାରେ ଉଂକାର ବେଦ ବସଇଂ । ଯେମନ୍ତେ ଛଡ ବେଦ ଭେଦ । ଯେ ମୁଖାରବିନ୍ଦକୁ ରତ୍ନସିଂହାସନ କହିଂ । କାଉରୀ ମଣ୍ଡଳ କହିଂ । ନୀଳ ସୁଂନ୍ଦର ପର୍ବତ ବୋଲି । କପାଳ ଚାରି ପାଖକୁ ଗୋଲ ହାଟ ବୋଲି । ସେ ହାଟତରେ ପରୀକ୍ଷା ବ୍ରହ୍ମ ।" (ବ୍ରହ୍ମଗୀତା, ପ,ପୃ ୧)

ଏଣେ ଭୀମଭୋଇ ଭେଟିଲେ ଅରୁପାନନ୍ଦଙ୍କୁ ଏହି ରୂପରେ –

"ଅନାଦି ମଣ୍ଡଳରୁସର୍ବେ ସଞ୍ଚରି
ରୂପ ଅରୂପ ନାମ ବ୍ରହ୍ମଙ୍କ ଧରି,

ଊର୍ମ ଧୂର୍ମ ଜ୍ୟୋତି ଜ୍ୱାଳା କେହି ନଥିଲେ
ଅରୁପାନନ୍ଦ ସ୍ୱାମୀଙ୍କ ଆଜ୍ଞାରେ ହେଲେ ।
ଠୁଳ ଶୂନ୍ୟରୁ ଜନ୍ମହେଲା ଦିଗ ଆକାଶ
ଆକାଶରୁ ଜନ୍ମିଲା ପବନ ଅଣଅଁାସ
ଅଣଅଁାସରୁ ଜନ୍ମହେଲା ଅଗ୍ନିହୁତାଶ
ହୁତାଶନରୁ ଜଳ ବୁନ୍ଦେ ହେଲା ପ୍ରକାଶ ।
ଜଳରୁ ଜ୍ୟୋତିରୂପ ବର୍ଣ୍ଣ ହୋଇଲା ଦୃଶ୍ୟ
ଜ୍ୟୋତି ରୂପରୁ ଜନ୍ମ ହେଲା ଭୂତଭବିଷ୍ୟ
ଭବିଷ୍ୟରୁ କାମନା କଳ୍ପନା ହେଲା ଜାତ
ତହିଁ ଉତ୍ତାରୁ ଧରିତ୍ରୀ ବସୁନ୍ଧରା । ”

ବୈଦିକ ଋଷିମାନଙ୍କ କଣ୍ଠରୁ ସ୍ଫୁରିଆସିଥିବା ଏ ଚେତନାର ଖିଅ କେମିତି ଲମ୍ବି ଆସିଛି ଭୀମଙ୍କ ଭଜନ ଯାଏଁ ଲକ୍ଷ୍ୟ କରନ୍ତୁ । ବାଟରେ କେତେ କେତେ କଣ୍ଠି; ଜୈନ, ବୌଦ୍ଧ, ଅଦ୍ୱୈତ ଶଙ୍କର, ରାମାନୁଜାଚାର୍ଯ୍ୟଙ୍କ ବିଶିଷ୍ଟାଦ୍ୱୈତ, ମାଧ୍ୱାଚାର୍ଯ୍ୟଙ୍କ ଦ୍ୱୈତ, ରାମାନନ୍ଦ, ଶୂନ୍ୟ ପ୍ରସରି ଆସିଛି ଶବର ଜଗନ୍ନାଥ ଓ ମହିମା ଗୋସାଇଁଙ୍କ ଆତ୍ମାକୁ । ଆପାତ ଦୃଷ୍ଟିରେ ସହସ୍ର ବର୍ଷର ଏ ବ୍ରହ୍ମାନ୍ୱେଷା ବାହ୍ୟ ରୂପରେ କେତେ କେତେ ମାର୍ଗ ତିଆରି କରିଛି, କିନ୍ତୁ ଆତ୍ମୋପଲବ୍ଧିର ଐକ୍ୟତାନ ମନ୍ତ୍ରାୟିତ ହୋଇ ବ୍ରହ୍ମଙ୍କୁ କିରିଛି ଆହୁରି ପରିପୁର୍ଣ୍ଣ ।

ଶଙ୍କରଙ୍କ ଦୃଷ୍ଟିରେ ରୂପର ପ୍ରତ୍ୟକ୍ଷ ବାସ୍ତବତା ହେଉଛି ଆତ୍ମନ୍ ବା ବ୍ରହ୍ମ ଯାହା ସ୍ୱରୂପ ଜ୍ଞାନର ଶୁଦ୍ଧ ଚୈତନ୍ୟ ।

ଉପରେ ଭିନ୍ନାଭିନ୍ନ ଓ ଭିତରେ ଅଭିନ୍ନ ଏ ଶୂନ୍ୟ ଦର୍ଶନକୁ ସନ୍ଥ ବଳରାମ ଓ ସନ୍ଥକବି ଭୀମଭୋଇ ଆଦୌ ପରସ୍ପର ବିରୋଧୀ ବୋଲି ଅନୁଭବ ନ କରି ଏକତ୍ର ଗ୍ରାସି ପାରିଥିଲେ ବୋଲି ସେ ଦୁହେଁ ବି ଥିଲେ ଅଭିନ୍ନ । ଏମାନଙ୍କ ସାରସ୍ୱତ ସୃଷ୍ଟି ସାଧନାରେ ଓ ବ୍ୟାପକତଃ ସଂସ୍କୃତିରେ ପୂରି ରହିଥିଲା ସନ୍ଥତ୍ୱ ।

ବଳରାମ ରାମାୟଣ ଲେଖିଛନ୍ତି, ମହାଭାରତ ଲେଖିଛନ୍ତି, ପୁରୁଣା ପୁରାଣମାନଙ୍କୁ ନବ କଳେବର ଦେଇଛନ୍ତି, ଗୀତା, ସଂହିତା ଓ ବ୍ୟାଖ୍ୟା ଗ୍ରନ୍ଥ ବି

ଲେଖିଛନ୍ତି । ଲେଖିଛନ୍ତି ସ୍ତୁତି, ଜଣାଣ, ଭଜନ । ତଦ୍‌ରୂପ ଭୀମ ଭୋଇ । ଅଧ୍ୟାତ୍ମର ଚୂଡାନ୍ତକୁ ସ୍ପର୍ଶ କରିଥିଲା ତାଙ୍କର ଭାବବଳୟ ବୋଲି ସେମାନେ ମଣିଷ-ମଣିଷ, ଜାତି-ଜାତି, ଜୀବ ପରମ ଭିତରେ ଦେଖି ନଥିଲେ ଭେଦ । ମନୁଗୀତାରେ ବଳରାମ କହୁଛନ୍ତି –

"ଛପନକୋଟି ଜୀବକୁ ଏକତ୍ୱ ମଣିମୁଁ, ସ୍ୱାଦ କି ଅସ୍ୱାଦ ଭଲମନ୍ଦ ନ ମଣିମୁଁ ।

ଅସଙ୍ଗତ ସଙ୍ଗତ କରିବୁ ଏକ କଥା, ଆତ୍ମାଙ୍କାନେ ସମସ୍ତଙ୍କୁ କରିବୁ ଏକତା ।

ସବୁଠାରେ ତୋହ ପ୍ରାୟେ ଆତ୍ମା ଘେନ, ସବୁଠାରେ ପଶ ମିଶ ନକର ଅଭିନ୍ନ ।"

ଆଜ୍ଞାଧୀନ ସାରସ୍ୱତ ସଖ୍ୟତାରେ ଭୀମ ଗାଉଛନ୍ତି–

"ଠୁଳ ଶୂନ୍ୟ ଠାରୁ ତହିଁ ଉପରକୁ ଦେଖିଲଇଁ ନାହିଁ କିଛି,
ଅବିକାର ବ୍ରହ୍ମ ଅନାମ ଅରୂପ ସିନ୍ଧୁ ପ୍ରାୟେ ପୂରିଅଛି ।
କିବା ଦୁଷ୍ଟ ସନ୍ଥ, ସେବକ ସାମନ୍ତ, କୀଟ ପତଙ୍ଗରେ ପୂରି
ତୁମ୍ଭେ ପୂରି ଅଛ କାହିଁ ଊଣା ନାହିଁ ସର୍ବ ଘଟେ ସମସରି । "

(ସ୍ତୁତିଚିନ୍ତାମଣି –୨୭)

ସାମାଜିକ ସଂସ୍କାରର ଦ୍ୱାହିରେ ଏ ଦୁଇ ସନ୍ଥଙ୍କୁ ଅବ୍ରାହ୍ମଣ, ଶୂଦ୍ରମୁନି, ଭଣ୍ଡ, କିରସ୍ତାନ ବୋଲି, ବିଧର୍ମୀ ବୋଲି ତଥାକଥିତ ଧର୍ମାଚାରୀମାନେ ଗାଳି ଦେଲେ ସିନା, ନାନା ପ୍ରତିଘାତକୁ କପାଳରେ ଆଉଁଷି ଏ ଦୁଇ ସନ୍ଥ ଓଡିଆ ସାହିତ୍ୟର ଗାରିମାକୁ ସର୍ବଭାରତୀୟ ଗୌରବ ଭାବରେ ବିଶ୍ୱମଣ୍ଡିତ କରିଗଲେ, ଏଥିରେ ଦ୍ୱିରୁକ୍ତି ନାହିଁ ।

# ଊନବିଂଶ ଶତାବ୍ଦୀ ଓଡ଼ିଶାର ବିସ୍ମୟ : ସନ୍ଥ କବି ଭୀମଭୋଇ

ବିଜୟାନନ୍ଦ ସିଂହ

ଊନବିଂଶ ଶତାବ୍ଦୀର ଓଡ଼ିଶା ଥିଲା ଅନ୍ଧକାରାଚ୍ଛନ୍ନ । ଓଡ଼ିଶାର ରାଜନୈତିକ, ସାମାଜିକ, ସାଂସ୍କୃତିକ ଜଗତରେ ଭରି ରହିଥିଲା ଅମା ଅନ୍ଧକାର । ସବୁ ଦିଗରୁ ଓଡ଼ିଶା ଥିଲା ଅବହେଳିତ । କୁସଂସ୍କାର ଓ ଧର୍ମବ୍ୟବସ୍ଥା, ମଣିଷସମାଜ ତଥାକଥିତ ବିଧି ଓ ବ୍ୟବସ୍ଥା ଭିତରେ ବାନ୍ଧି ହୋଇ ରହିଥିଲା । ଏହା କେବଳ ଓଡ଼ିଶାରେ ପରିଲକ୍ଷିତ ହେଉଥିଲା ତାହା ନୁହେଁ ଏହା ଥିଲା ସମକାଳର ଭାରତୀୟ ସାମାଜିକ ବ୍ୟବସ୍ଥା । ଧର୍ମ ନାମରେ ନାନା ଅତ୍ୟାଚାର, ଶୋଷଣ ଓ କଷଣର ସମ୍ମୁଖୀନ ହେଉଥିଲା ସାଧାରଣ ମଣିଷ । ପାଶ୍ଚାତ୍ୟ ଶିକ୍ଷା ଓ ଆଧୁନିକ ବିଜ୍ଞାନରୁ ଓଡ଼ିଶା ଥିଲା ବହୁ ଦୂରରେ । ଧର୍ମ, ବିଶେଷ ଭାବରେ ହିନ୍ଦୁ ଧର୍ମର ପାରମ୍ପରିକ ବିଚାରଧାରା ଭିତରେ ଜନସମାଜ ସନ୍ତୁଳିତ ହେଉଥିଲେ କହିଲେ ସତ୍ୟର ଅପଳାପ ହେବ ନାହିଁ । ସବୁଠାରୁ ବିଡ଼ମ୍ବନାର ବିଷୟ – ମଣିଷମାନଙ୍କ ମଧ୍ୟରେ ପ୍ରତିବାଦ କରିବାର ସାହସ ବା ଶକ୍ତି ନ ଥିଲା । ନିରବରେ ସକଳ ଅତ୍ୟାଚାର, ଅନ୍ୟାୟକୁ ମୁଣ୍ଡପାତି ସହିନେଉଥିଲେ ମଣିଷମାନେ । ଆର୍ଥିକ ଅନଟନ ଓ ଦାରିଦ୍ର୍ୟର ସୁଯୋଗ ନେଇ ଖ୍ରୀଷ୍ଟିୟାନମାନେ ଧର୍ମାନ୍ତରୀକରଣ କରିବାକୁ ଉତ୍ସାହିତ ହେଲେ ।

ଇଂରେଜମାନେ ଓଡ଼ିଶା ଅଧିକାର କଲେ ୧୮୦୩ରେ । ଇଂରେଜମାନେ ୧୮୧୭ରେ ଦୁର୍ଦ୍ଦଶ ପାଇକମାନଙ୍କ ପରାକ୍ରମ ଦେଖି ଭୟଭୀତ ହୋଇପଡ଼ିଥିଲେ । ଦୀର୍ଘ ଆଠ ବର୍ଷ ପାଇକ ସଂଗ୍ରାମ ଓ ସଂଘର୍ଷ ଇଂରେଜମାନଙ୍କୁ ସଚେତନ କରାଇଥିଲା । ନିର୍ଭୀକ ଓଡ଼ିଆମାନଙ୍କ ସ୍ୱାଭିମାନ ଓ ସାହସ ଦେଖି ଇଂରେଜମାନେ ତାଙ୍କ ଶାସନ ବ୍ୟବସ୍ଥା ପ୍ରଣାଳୀରେ ଯଥେଷ୍ଟ ପରିବର୍ତ୍ତନ କରିଥିଲେ । ଏହିପରି ଏକ ପରସ୍ଥିତି ପରିବେଶ ମଧ୍ୟରେ ଆବିର୍ଭୂତ ହୁଅନ୍ତି ଊନବିଂଶ ଶତାବ୍ଦୀର ବିସ୍ମୟ ଭୀମଭୋଇ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଥିଲା ପ୍ରସ୍ତୁତି ଓ ସଂକଳ୍ପର ସମୟ । ଏହି ଶତାବ୍ଦୀର ଦ୍ୱିତୀୟ ପର୍ଯ୍ୟାୟରୁ ଜଗନ୍ ମୋହନ ଲାଲ (୧୮୩୮), ଫକୀରମୋହନ ସେନାପତି (୧୮୪୩), ମଧୁସୂଦନ ଦାସ (୧୮୪୮), ରାଧାନାଥ ରାୟ (୧୮୪୮), ବିଶ୍ୱନାଥ କର (୧୮୬୪), ଗୋପବନ୍ଧୁ ଦାସ (୧୮୭୭) ପ୍ରମୁଖ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ । ଏହି ବରପୁତ୍ରମାନଙ୍କ ସ୍ୱୀୟ ସାଧନା ଓଡ଼ିଶାକୁ ନବୀକରଣ କରାଇବାରେ ଯଥେଷ୍ଟ ସହାୟକ ହୋଇଥିଲା । ଏହି କାଳଖଣ୍ଡରେ ଭାରତୀୟ ଜାତୀୟ ଜୀବନରେ ଆବିର୍ଭୁତ ହୋଇଥିଲେ ବିପ୍ଳବୀ ଭୀମଭୋଇ (୧୮୫୦-୧୮୯୫)।

ଊନବିଂଶ ଶତାବ୍ଦୀ ଓଡ଼ିଶାରେ ଭୀମଭୋଇଙ୍କ ଆବିର୍ଭାବ ଓ ସାଧନା ବିସ୍ମୟକର । ତାଙ୍କ ଜନ୍ମ ଯେପରି ଚର୍ଚ୍ଚାର ପରିଧିରେ ସେହିପରି କର୍ମଧାରା ମଧ୍ୟ ଆଶ୍ଚର୍ଯ୍ୟର ବଳୟରେ। ସୀମିତ ଜୀବନ କାଳରେ ସ୍ୱକୀୟ ନିଷ୍ଠା, ଆଦର୍ଶବାଦ ଓ ସଂକଳ୍ପରୁ ନାନା ପ୍ରତିବନ୍ଧକ ସତ୍ତ୍ୱେ ସେ ବିଚ୍ୟୁତ ହୋଇନାହାନ୍ତି । ଭୀମଙ୍କ ଜୀବନଧାରା ସେଥିପାଇଁ ବିଶ୍ୱରେ ଚର୍ଚ୍ଚିତ । ତତ୍କାଳୀନ ସାମାଜିକ ବ୍ୟବସ୍ଥା ବିଚାରଧାରା, ଅନୁନ୍ନତ ବଣଜଙ୍ଗଲ ଭରା ଅଂଚଳ ଏପରିକି ଓଡ଼ିଶାର ସମ୍ବଲପୁର ଜିଲ୍ଲାର ରେଢ଼ାଖାଲ ପ୍ରଭୃତିରେ ଭୀମଭୋଇ ପ୍ରତିବାଦର ସ୍ୱରକୁ ଶାଣିତ କରିଛନ୍ତି । ପାରମ୍ପରିକ ଶିକ୍ଷା ଓ ବ୍ୟବସ୍ଥାରୁ ବହୁ ଦୂରରେ ଥିବା ଭୀମଭୋଇ ମାନବିକ ଅଧିକାର ଓ ସ୍ୱାଭିମାନ ପାଇଁ ସଂଘର୍ଷ କରିଛନ୍ତି । ସେସମୟର ଭାରତବର୍ଷରେ ଏହା ଏକ ଚମକପ୍ରଦ ଅଧ୍ୟାୟ ଥିଲା ନିଶ୍ଚୟ । ଅନୁନ୍ନତ ଓଡ଼ିଶାରେ ତୀବ୍ର ପ୍ରତିବାଦ, ମାନବବାଦ ଓ ବିପ୍ଳବବାଦର ପୁରୋଧା ଥିଲେ ଭୀମଭୋଇ।

ମାନବିକ ଶକ୍ତି ଓ ଅଧିକାରକୁ ସାବ୍ୟସ୍ତ କରିବାର ଅନ୍ୟତମ ସୂତ୍ରଧର ଭୀମଭୋଇ। ଶବ୍ଦ ଓ କର୍ମ ଭିତରେ ଅପୂର୍ବ ସମନ୍ୱୟ ସ୍ଥାପିତ ହୋଇଥିଲା ଭୀମଭୋଇଙ୍କ ମହନୀୟ ବ୍ୟକ୍ତିତ୍ୱରେ।

ସ୍ୱାଧୀନତା ପରାହତ ହେଲେ ମଣିଷ ସ୍ୱଭାବତଃ ପ୍ରତିବାଦ କରେ । ଭୀମଭୋଇଙ୍କ ଜୀବନ ଓ କର୍ମ ଏବେ ମଧ୍ୟ ଉତ୍କୃଷ୍ଟ ଗବେଷଣାର ଅପେକ୍ଷାରେ। ଆଧୁନିକ ସଭ୍ୟତାଠାରୁ ବହୁ ଦୂରରେ ଅବସ୍ଥିତ ରେଢ଼ାଖୋଲ ଗ୍ରାମର ଏଇ ବନବାସୀ ଦରିଦ୍ର ନିରକ୍ଷର, କନ୍ଧ ମଣିଷଟିର ଅର୍ନ୍ତଚେତନାରେ ଯୁଗପରିବର୍ତ୍ତନର ଏହି ଆହ୍ୱାନ ତାଙ୍କ ଅଜାଣତରେ ଆସି ବାଜିଥିଲା । ତାଙ୍କର ସ୍ତୁତି ଚିନ୍ତାମଣି ଓ ଅନ୍ୟାନ୍ୟ କବିତା ଗୁଡ଼ିକରେ ଏହି କ୍ରୁଦ୍ଧ ବିକ୍ଷୁବ୍‌ଧ ବିପ୍ଳବାତ୍ମକ ବାର୍ତ୍ତା ନାନା ଛନ୍ଦରେ ପ୍ରକାଶିତ । ଅଥଚ ନିରକ୍ଷର ଭୀମଭୋଇଙ୍କ କାନରେ ନିତ୍‌ସେ, କାର୍ଲମାର୍କସ୍ ଓ ସ୍ୱାମୀ ବିବେକାନନ୍ଦଙ୍କର ନାମମାତ୍ର ବି ପଡ଼ିନଥିଲା । ତଥାପି ତାଙ୍କ ଅନ୍ତର ସେହିପରି ଭାବରେ ହେଉଥିଲା ପୃଥିବୀ ଓ ଏ ମଣିଷ ପାଇଁ ଆଲୋଡ଼ିତ । ତାଙ୍କ ନିଜ ଦେଶ ଓ ସମାଜରେ ସେ ଯେଉଁ ଅବିଚାର, ଅସାମ୍ୟ, ଅସଙ୍ଗତି, ଅଧର୍ମ, ମିଥ୍ୟାଚାର, ପୀଡ଼ନ ଓ ଦୁଃଖ ଯନ୍ତ୍ରଣା ଦେଖୁଥିଲେ ସେଥିରେ ତାଙ୍କର ହୃଦୟ କ୍ରୋଧ, କରୁଣାରେ ମଜ୍ଜି ହୋଇ ଯାଉଥିଲା । ସେ କ୍ରୋଧରେ ପାଗଳପ୍ରାୟ ହୋଇଥିଲେ ଏବଂ ଏହି ଅସତ୍ ଯୁଗର ସମାପ୍ତି ଖୁବ୍ ଶୀଘ୍ର ହେଉ ବୋଲି ବ୍ୟାକୁଳ ପ୍ରାର୍ଥନା ଜଣାଉଥିଲେ । ସେ ଯେଉଁ ପରିବର୍ତ୍ତନ ଚାହୁଁଥିଲେ ତାହା ଏକ ନୂତନ ଅଧ୍ୟାତ୍ମ ମାର୍ଗରେ ସମ୍ଭବ ହେବ ବୋଲି ତାଙ୍କ ଦୃଢ଼ ବିଶ୍ୱାସ ଥିଲା ।" (କ୍ରୁଦ୍ଧ ବିପ୍ଳବୀ ସନ୍ଥକବି - ମହାପାତ୍ର ନୀଳମଣି ସାହୁ, ମହିମାମୟ ସନ୍ଥକବି ଭୀମଭୋଇ।)

ମଣିଷ ମୁକ୍ତ, ମଣିଷ ସ୍ୱାଧୀନ। ମୁକ୍ତ ବିହଙ୍ଗ ପରି ମଣିଷ ସ୍ୱାଧୀନ ଜୀବନଯାପନରେ ପ୍ରୟାସୀ। କିନ୍ତୁ ତଥାକଥିତ ସାମାଜିକ ବିଧିବ୍ୟବସ୍ଥା, ମଣିଷକୁ ପଙ୍ଗୁ କରିଦିଏ - ମଣିଷ ମନରୁ ଆତ୍ମ ବିଶ୍ୱାସକୁ ଛଡ଼େଇ ନିଏ । ତେଣୁ ଭୀମଭୋଇ ମଣିଷ ମନରେ ଆତ୍ମବିଶ୍ୱାସ ଭରିଦେବା ପାଇଁ ଲେଖିଛନ୍ତି ରାଶି

ରାଶି ଭଜନ, ଗୀତ ଓ ସଂଗୀତ । ଯାହା ମାନବାତ୍ମାର ମୁକ୍ତି ପାଇଁ ଉତ୍କୃଷ୍ଟ ସଂଗୀତ । ସ୍ତୁତି ଚିନ୍ତାମଣି, ମହିମାବିନୋଦ, ନିର୍ବେଦ ସାଧନ, ଶ୍ରୁତି ନିଷେଧ ଗୀତା, ଅଷ୍ଟକବିହାରୀ ଗୀତା, ଆଦିଅନ୍ତ ଗୀତା, ବ୍ରହ୍ମନିରୂପଣ ଗୀତ, ବ୍ରହ୍ମସଂଯୁକ୍ତ ଗୀତା, ଶିଶୁବେଦ, ମନୁସଭାମଣ୍ଡଳ ଇତ୍ୟାଦି । ଭୀମଭୋଇ ମଣିଷର ମଂଜକୁ ଚିହ୍ନିଥିଲେ । ସତ୍ୟ ହିଁ ମଣିଷର ବାସ୍ତବ ଭିତ୍ତିଭୂମି ବୋଲି ବୁଝିଥିଲେ । ସତ୍ୟରକ୍ଷା ପାଇଁ ସେ ସମଗ୍ର ଜୀବନକୁ ନିବେଦିତ କରିଛନ୍ତି । ଏଥିପାଇଁ ସେ କୃଚ୍ଛ୍ରସାଧନା ବି କରିଛନ୍ତି ।ସମୟର ଅବକ୍ଷୟ ଓ ସମାଜର ଅଧୋପତନକୁ ସେ ଲକ୍ଷ୍ୟ କରିଛନ୍ତି ବ୍ରହ୍ମମୟ ଚିତ୍ତରେ –

"ବୁଡ଼ିଗଲା ସତ୍ୟ ଧର୍ମ ହେଲା ଅସମୟ
କି ପ୍ରକାରେ ପ୍ରାଣୀମାନେ ତରିଯିବେ କହ
ଏ ନିମନ୍ତେ ଶ୍ରୀଛାମୁରେ ଲଗାଇଛି ଭରସା
ଏତେବେଳେ ଏ ବ୍ରହ୍ମାଣ୍ଡେ ନାହିଁ ଆଉ ପୁଣ୍ୟ
ମିଥ୍ୟା ପାତକରେ ସବୁ ହୋଇଗଲା ଶୂନ୍ୟ ।" (ବ୍ରହ୍ମ ନିରୂପଣ ଗୀତା)

ଭୀମଭୋଇ ଥିଲେ ମାନବାଦୀ, ଜୀବନବାଦୀ । ମଣିଷ ହିଁ ହେଉଛି ଦୁର୍ଲଭ । ମଣିଷର ବିକଳ୍ପ ନାହିଁ । ମଣିଷ ଜୀବନ ହିଁ ଅମୃତ ସୋପାନ । ଜୀବନ ବଂଚିବା ହେଉଛି ସର୍ବଶ୍ରେଷ୍ଠ ସୁଖ । ଆତ୍ମା ଓ ପରମାତ୍ମା ସବୁଠିଁ ମାନବିକତାର ସ୍ପନ୍ଦନ। ଭୀମଭୋଇ ହିଁ ମୂଳରୁ ବୁଝିଥିଲେ –

"ଦୁର୍ଲଭ ଜନମ ପିଣ୍ଡ ସବୁଠାରୁ ସୁଖ
ଜନ୍ମ ମରଣଟି ଏ ଦେହକୁ ବଡ଼ ଦୁଃଖ ।"
(ବ୍ରହ୍ମନିରୂପଣ ଗୀତା)

ଜୀବର ଆନନ୍ଦ କାମନା ହିଁ କବିଙ୍କର ଏକମାତ୍ର ଲକ୍ଷ୍ୟ । ଭୀମଭୋଇଙ୍କ ଜୀବନଦର୍ଶନ ଥିଲା ମଣିଷର ଉନ୍ନତି ଓ ମଙ୍ଗଳ ବିଧାନ । ଭୀମଭୋଇ ଜୀବନର ସକଳ ସତ୍ୟକୁ ହିଁ ବଖାଣିଛନ୍ତି । ସତ୍ୟପ୍ରିୟ ମଣିଷଟି ପାଖରେ ସବୁ ଅସ୍ତ୍ର, ଶସ୍ତ୍ର, ପଶୁବଳ ପରାଜୟ ବରଣ କରେ । ମାନବ ଜାତିର ଇତିହାସ ହିଁ ତା'ର ପ୍ରମାଣ ।

ଶତାବ୍ଦୀ ଶତାବ୍ଦୀର ପୃଥିବୀରେ ସତ୍ୟର ହିଁ ଜୟଗାନ ହୋଇଛି । ଅସତ୍ୟ ନିନ୍ଦିତ ହୋଇଛି । ଇତିହାସ ସତ୍ୟର ପୃଷ୍ଠପୋଷକତା ପ୍ରଦାନ କରିଛି । ଭୀମଭୋଇ ଥିଲେ ସତ୍ୟର ରୂପକାର ।

ସତ୍ୟରେ ମରିବି ସତ୍ୟରେ ତରିବି ଏହି ଆଜ୍ଞା ମୋର ହେଉ
କହେ ଭୀମଭୋଇ ଏ ମୃତ୍ୟୁମଣ୍ଡଳେ ନାଶ ଅପଯଶ ଥାଉ ।
(ସ୍ତୁତି ଚିନ୍ତାମଣି)

କବି ଜଗତକୁ ନିବିଡ଼ ଭାବେ ଦର୍ଶନ କରିଥିଲେ । ସେ ଓଡ଼ିଶାର କେଉଁ ଏକ ଅଖ୍ୟାତ ପଲ୍ଲୀରେ ରହୁଥିଲେ ସିନା କିନ୍ତୁ ସେ ଉପଲବ୍ଧି କରୁଥିଲେ ବିଶ୍ୱକୁ । ବିଶ୍ୱର ସୁଖ ଦୁଃଖ, ଦ୍ରଷ୍ଟା, ସ୍ରଷ୍ଟା ସମଗ୍ର ଐଶ୍ୱରିକ ସତ୍ତାର ଅଧିକାରୀ ମଣିଷ । ନିବିଡ଼ ଉପଲବ୍ଧି ଓ ଅନୁଭବ ହିଁ ସ୍ୱତଃପ୍ରବୃତ୍ତ ଶବ୍ଦଶୈଳୀ ନିର୍ମାଣ କରେ । ସତ୍ୟନିଷ୍ଠ ମଣିଷ ହିଁ ସତ୍ୟକୁ ଦର୍ଶନ କରିପାରେ - କବି ଭୀମଭୋଇ ଏହାର ସଂକେତ ଦେଇଛନ୍ତି -

ସ୍ଥାବରୁ ଜଙ୍ଗମ କୀଟରୁ ପତଙ୍ଗ ଚାହିଁଦେଲେ ଅନୁସରି
ସକଳ ଘଟରେ ପୂରି ସମାନରେ ନୋହେ ବଡ଼ ସାନ କରି ।
(ସ୍ତୁତି ଚିନ୍ତାମଣି)

ସତ୍ୟ ପଥ ହିଁ ଜୀବନର ମୁକ୍ତି ପଥ । ସତ୍ୟ ବିନା ମୁକ୍ତି ନାହିଁ । ଭାରତୀୟ ସଂସ୍କୃତି ଓ ପରମ୍ପରା ହିଁ ଏହି ସତ୍ୟ ଆଧାରିତ । ସତ୍ୟରେ ଜୀବନ ଜିଇଁଲେ ଜୀବନ ଲକ୍ଷ୍ୟସ୍ଥଳରେ ପହଞ୍ଚିବ - Bhima Bhoi on the other hand speaks mostly in a confessional voice and his poetry springs from an urge to seek both personal salvation and the redemption of man in society from a cruel destiny. (Saint poet Bhima Bhoi : An Assessment - Sitakanta Mohapatra)

ଭୀମଭୋଇ ଥିଲେ ମୂଲ୍ୟବୋଧଭିତ୍ତିକ ଜୀବନର ପ୍ରଖ୍ୟାପକ । କାରଣ ସେ ବୁଝିଥିଲେ ମଣିଷ ଜୀବନ ହେଉଛି ମୂଲ୍ୟବୋଧଭିତ୍ତିକ । ସେଥିପାଇଁ ସବୁ

ପ୍ରାଣୀମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଜୀବନ ବଂଚୁଛି ମଣିଷ। କିନ୍ତୁ ଯେଉଁମାନେ ମନୁଷ୍ୟତ୍ୱ ହରାନ୍ତି ସେମାନେ ରକ୍ତମାଂସଧାରୀ ଶରୀର ଧାରଣ କଲେ ମଧ୍ୟ ସେମାନେ ଅସଲ ମଣିଷ ନୁହଁନ୍ତି । କବି ଭୀମଭୋଇ ଥିଲେ ବାସ୍ତବରେ ଯୁଗଚେତନାର ଅପୂର୍ବ ଭାଷ୍ୟକାର । ସେ ଊନବିଂଶ ଶତାବ୍ଦୀର ଓଡ଼ିଶାରେ ଦେଖିପାରିଥିଲେ ମଣିଷର ଅଧୋଗତି, ମାନବକୃତ ବିପର୍ଯ୍ୟୟ ସର୍ବୋପରି ସମାଜର ଅଧଃପତନ । ଭୀମଭୋଇ କେବଳ ନୀରବଦ୍ରଷ୍ଟା ହୋଇ ସାମାଜିକ ଅଧୋଗତିକୁ କେବଳ ଦେଖି ନଥିଲେ – ଏହାର ନିରାକରଣ ପାଇଁ ସକଳ ଦୁଃଖଯନ୍ତ୍ରଣାରେ ମଧ୍ୟ ସତ୍ୟକୁ ପ୍ରସ୍ଫୁଟିତ କରିବା ପାଇଁ ଚେଷ୍ଟା କରିଥିଲେ।

"ପାପ ପଙ୍କେ ମନ ବୁଡ଼ି ଅନୁକ୍ଷଣ ନାହିଁ ସଦଜ୍ଞାନ ଗତି
ନର ଦେହ ବହିକେ ପାରିବ କହି ପ୍ରଭୁଙ୍କ ମହିମାରୀତି ।
ଅଣରୂପ ଶବ୍ଦ ନାହିଁ ବର୍ଣ୍ଣଭେଦ କେହୁ ମୁଖେ ବଖାଣିବ
ନିରାମିଷ ନିଅଇଁଠା ସେହୁ ପଦ ଓଲଟଇ ନାହିଁ ଜିଭ । "

(ସ୍ତୁତି ଚିନ୍ତାମଣି)

ସନ୍ଥକବି ଭୀମଭୋଇଙ୍କ ସମଗ୍ର କାବ୍ୟକୃତି – ଆମ ହୃଦୟର ସ୍ୱଚ୍ଛ ପ୍ରତିବିମ୍ବ । କବି ଭୀମଭୋଇ ନିର୍ଦ୍ଦିଷ୍ଟ ଧର୍ମ, ବିଚାର ବା ବାଦ ମଧ୍ୟରେ ସୀମିତ ନଥିଲେ। ସେ ଉପଲବ୍ଧି କରିଥିବା ଯାବତୀୟ ଉପଲବ୍ଧି ଓ ଅନୁଭବକୁ ଶବ୍ଦରୂପ ଦେଇ ଯାଇଛନ୍ତି । ସତ୍ୟ ଓ ପ୍ରେମ ହିଁ ଏହି ପୃଥିବୀର ମୂଳ ଭିତ୍ତିଭୂମି । ଗଭୀର ଭାବରେ ପ୍ରେମ କରିପାରିଥିଲେ ସବୁ କଥାକୁ ଦେଖିହେବ– ଜାଣିହେବ ବୁଝିହେବ – ତାହା ଭୀମଭୋଇ ପ୍ରମାଣ କରିଥିଲେ –

ପ୍ରାଣୀଙ୍କ କଷଣ ଭେଦୁଅଛି ମନ ଜୀବନକୁ ମୋର ବାଧେ
ଭୀମ ଅରକ୍ଷିତ କରି ଦଣ୍ଡବତ କାରଣ ମାଗୁଛି ପଦେ ।

× × ×

ଏକ ଖଣ୍ଡ ହାଡ଼ ବୁନ୍ଦାଏ ରୁଧିର ପୁଟେ ମାଉଁସ ଜାଣଇ
ତେଣୁ କରି ସିନା ପ୍ରାଣୀଙ୍କ ବିକଳ ସହି ନ ପାରିବି ମୁହିଁ।

ଏକା ଖଡ଼ଗରେ ଦଶ ପାଞ୍ଚ ମୁଣ୍ଡ ଛିଡ଼ଇ ଭାରତ ଯୁଦ୍ଧେ
ଆରେକ ଅଙ୍ଗକୁ ପାଦେ ପ୍ରହାରିଲେ ଏ ଅଙ୍ଗକୁ ମୋର ବାଧେ ।
(ସ୍ତୁତି ଚିନ୍ତାମଣି)

ଏହିପରି ସତ୍ୟର ସ୍ୱୀକାରୋକ୍ତି ଓ ବାସ୍ତବ ଭାବରେ ରୂପାୟନ କରିବାରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଭାରତବର୍ଷରେ ଭୀମଭୋଇ ହିଁ ଶ୍ରେଷ୍ଠ ରୂପକାର । ଦୋଷକୁ ସ୍ୱୀକାର କରିବା ପୁଣି ଦୋଷ ପାଇଁ ଦଣ୍ଡକୁ ଗ୍ରହଣ କରିବାରେ ଭୀମଭୋଇ ମଧ୍ୟ ପଥପ୍ରଦର୍ଶକ । ସେ ତେଣୁ ଲେଖିଛନ୍ତି –

"ଆତ୍ମା ଭଗତିରେ ଦୋଷାଦୋଷ ହେଲେ ବଜ୍ର ପଡୁ ମୋ ମୁଣ୍ଡକୁ
କହେ ଭୀମଭୋଇ ବ୍ରହ୍ମଶାପ ଦେଇ ଜାଳିଦିଅ ମୋ ପିଣ୍ଡକୁ ।"
(ସ୍ତୁତି ଚିନ୍ତାମଣି)

ଭୀମଭୋଇ ଥିଲେ ସତ୍ୟମୟ । ଜୀବନର ସକଳ କଥାକୁ ନିଷ୍କପଟ ଭାବରେ ବର୍ଣ୍ଣନା କରିବା ସହଜ ନୁହେଁ । ଯେଉଁମାନେ ସଫଳ ମଣିଷ, ନିର୍ବିକାର, ସ୍ଥିତପ୍ରଜ୍ଞ ମଣିଷ ସେମାନେ ସତ୍ୟକଥାକୁ ସ୍ପଷ୍ଟ ଓ ନିର୍ଭୀକ ଭାବରେ ବ୍ୟକ୍ତ କରିବା ପାଇଁ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ । ଜୀବନର ଯଥାର୍ଥ ବାର୍ତ୍ତା ସ୍ତୁତି ଚିନ୍ତାମଣିରେ ଯେପରି ପ୍ରତିଫଳିତ ଆମ ବିଚାରରେ ଊନବିଂଶ ଶତାବ୍ଦୀର ଭାରତୀୟ ସାହିତ୍ୟରେ ତାହା ବିରଳ ବୋଲି କୁହାଯାଇପାରେ । ନବଜାଗରଣ ବା ରେନେଁସାର ଆମ ଜାତୀୟ ଜୀବନରେ ପ୍ରଭାବ ବିସ୍ତାର ପୂର୍ବରୁ ସେ ଲେଖିଥିଲେ ଜୀବନ ଓ ଜଗତର ଆତ୍ମକଥନ । ଯେଉ କଥନ ଥିଲା ଦୁଃଖ, ଯନ୍ତ୍ରଣାସିକ୍ତ ଜୀବନଲିପି । ଯନ୍ତ୍ରଣା ଭିତରେ ଆତ୍ମାର କଥା ସତ୍ୟପୂର୍ଣ୍ଣ ଶବ୍ଦରେ ଆତ୍ମପ୍ରକାଶ କରିଛି ।

"ବଖାଣରେ ଦୁଃଖ ଅଧିକରେ ଶୋକ ହୃଦରୁ ଉଠୁଛି କୋହ
ପଞ୍ଚଭୂତ ଆତ୍ମା ନିତ୍ୟେ କାନ୍ଦୁଅଛି କ୍ଷଣେ ସୁସ୍ଥ ନାହିଁ ଦେହ
ମନେମନେ ଗୁଣି ଦିବସ ରଜନୀ ସନ୍ତାପରେ ହୋଇ ଘାରି

ଆହାରେ ଦାରୁଣ ଦଇବ ବିଧାତା ମୋତେ କଲୁ ଏତେ ସରି
ମାୟା ମୋହେ ନିତ୍ୟେ ପକାଉଛୁ ମୋତେ କିରୂପେ ହୋଇବି ପାରି
ଦିବାନିଶି ମୋତେ ରୋଦନ ମାଡୁଛି ବେନି ନେତ୍ରୁଁ ବହେ ବାରି ।"
(ସ୍ତୁତି ଚିନ୍ତାମଣି)

ଭୀମଭୋଇ ଆତ୍ମାର କଥା କହିବା ପାଇଁ ଯାଇ ସ୍ୱକୀୟ ପରିଚୟ ଓ ବ୍ୟକ୍ତିଗତ ଜୀବନର କଥା କହିଛନ୍ତି – ଯାହା ପାଠକ ପ୍ରାଣକୁ ଉଦ୍‌ବେଳିତ କରେ । କବିଙ୍କ ବର୍ଣ୍ଣନା ଶୈଳୀ ରସପୂର୍ଣ୍ଣ ଯାହା ଉଦ୍‌ବେଳିତ କରେ –

"ଏହି ପିଣ୍ଡପ୍ରାଣ ବହି ସହିଥାଇ ଦୁଃଖସୁଖ ଯଥା ଅର୍ଥ
ତହିଁ ଉତ୍ତାରୁ ଦିବସ ବହିଗଲା ହୋଇଲା ବରଷ ସାତ
କ୍ଷୁଧାତୃଷା କଲେ ଭାଳଇ ବିକଳେ ଦଗଧି ହୁଅଇ କାଏ
ଅତି ଦୁଃଖେ ମୁହିଁ ଦିନ ବଞ୍ଚୁଅଛି କସ୍ତୁରୀ ଜୀବନ ପ୍ରାଏ
ଗର୍ଭଧାରୀ ପିତା ଛାଡ଼ିଗଲେ ମୋତେ ଜନ୍ମରୁ ନିସାଖା ହୋଇ
ସୁସ୍ୱେଷ୍ଟ ଭୋଜନ ସୁଖଭୋଗ ବାଞ୍ଛିଲେ କାହିଁରୁ ପାଇବି ମୁହିଁ ।
(ସ୍ତୁତି ଚିନ୍ତାମଣି)

କବି ଭୀମଭୋଇଙ୍କ କାବ୍ୟ-କବିତା ତାଙ୍କ ସମକାଳର ଜୀବନ ଓ ଜଗତର କଥା । ଏଥିରେ ଅଛି ଜୀବନ ବୋଧ । ଯାହା ସମକାଳୀନ ସାହିତ୍ୟର ବୈଶିଷ୍ଟ୍ୟ । ଓଡ଼ିଆ ସାହିତ୍ୟରେ ଆଧୁନିକତାର ପ୍ରବେଶ ପୂର୍ବରୁ ସାହିତ୍ୟରେ ବା କାବ୍ୟକବିତାରେ ଜୀବନ ସନ୍ଦେଶ ସହ ସଂସ୍କାର ପ୍ରବଣତା ପ୍ରକାଶ କରିବାରେ ଭୀମଭୋଇଙ୍କ କୃତିତ୍ୱ ଅବର୍ଣ୍ଣନୀୟ । ଭୀମଭୋଇଙ୍କ ସାରସ୍ୱତ ଶୈଳୀ- ଅନନ୍ୟ ଶୈଳୀ। ଏହି ଶୈଳୀ ନୂତନତାର ବାହକ। ନିଜକୁ ସ୍ୱଷ୍ଟ ସତ୍ୟନିଷ୍ଠ ଭାବେ ଉନ୍ମୁକ୍ତ କରିପାରିଲେ ତାହାର ଆବେଦନ ଚିରନ୍ତନ ଓ କାଳଜୟୀ – ତାହା ଭୀମଭୋଇ ସାହିତ୍ୟରେ ପ୍ରମାଣିତ- "ଭୀମଭୋଇଙ୍କର ଶୈଳୀ ଏକ ଅନ୍ୟ ଶୈଳୀ, ତାହା ସନ୍ଥ-ଶୈଳୀ । ନିଜେ ଉନ୍ମୋଚିତ ହୋଇପାରିଲେ ଯେ ଭିତରର ଯାବତୀୟ ଅବ୍ୟକ୍ତଗୁଡ଼ାକ ସତେ ଅବା କାହାର ପ୍ରେରଣା ସ୍ୱର୍ଶଲାଭ କରି ଜୀବନ ମଧ୍ୟ ଦେଇ, କବିତା ମଧ୍ୟ ଦେଇ

ଓ ସଖ୍ୟ ମଧ୍ୟ ଦେଇ ବ୍ୟକ୍ତ ହୋଇ ଯାଆନ୍ତି, ଆପଣାର ଭାଷାକୁ ଆପେ ଅତ୍ୟନ୍ତ ସାବଲୀଳ ଭାବରେ ପାଇ ଯାଆନ୍ତି, ପୃଥିବୀର ପ୍ରାୟ ସବୁ ସନ୍ଥଙ୍କ ପରି କବି ଭୀମଭୋଇ ତାହାର ମଧ୍ୟ ଗୋଟିଏ ଉଦାହରଣ । ଭୀମଭୋଇ ଯାହା କିଛି ଲେଖିଛନ୍ତି, ତାହା ପାଣ୍ଡିତ୍ୟରୁ ନୁହେଁ, ତାହା ଏକ ମୂଳଭୂତ ସହଜତା ଏବଂ ମୂଳଭୂତ ପରିଚୟ ମଧ୍ୟରୁ ପ୍ରସରି ଆସିଛି ଏବଂ ପାଠକ ହିସାବରେ ଆମ ସମସ୍ତଙ୍କୁ ଏତେ ନିବିଡ଼ ଭାବରେ ସ୍ପର୍ଶ କରିପାରୁଛି । ଭୀମଭୋଇ ଲେଖିଲା ବେଳେ ଶବ୍ଦଗୁଡ଼ାକ ବାଛି ନାହାନ୍ତି – ତାଙ୍କର ଅନୁରାଗ ଅନୁସାରେ ତାଙ୍କର ଶବ୍ଦଗୁଡ଼ାକ ସତେ ଅବା ବଳେ ବଳେ ତାଙ୍କ ପାଖରେ ଆସି ପହଞ୍ଚି ଯାଇଛନ୍ତି ।" ('ମହିମା ଧର୍ମର କବି ଭୀମଭୋଇ' – ଚିତ୍ତ ରଂଜନ ଦାସ)

କବି ଭୀମଭୋଇଙ୍କ ଉକ୍ତି ମଧ୍ୟ ଏଠାରେ ପ୍ରଣିଧାନଯୋଗ୍ୟ –

"ଶ୍ରୀ ଗୁରୁକୃପାରେ ମୋର ଗୋ କବିପଣ
ବାଳେକ ବୟସ ବୁଦ୍ଧି ମୋ ନାହିଁ ଜ୍ଞାନ।"

(ଆଦ୍ୟଅନ୍ତ ଗୀତା)

ସନ୍ଥକବି ଭୀମଭୋଇଙ୍କ ଜୀବନ ଓ ସାଧନା ମାନବଜାତି ପାଇଁ ଉତ୍କୃଷ୍ଟ ଉଦାହରଣ । ଉତ୍ସର୍ଗୀକୃତ ସମର୍ପିତ ଜୀବନ ଯେ ଅସାଧ୍ୟ ସାଧନ କରିପାରେ ତାହା ବିଶ୍ୱକବି ଭୀମଭୋଇ ପ୍ରମାଣ କରିଛନ୍ତି। ବାସ୍ତବରେ ଭୀମଭୋଇ ଥିଲେ ଊନବିଂଶ ଶତାବ୍ଦୀ ଓଡ଼ିଶାର ବିସ୍ମୟ ।

–୦–

# ଲେଖକ ପରିଚିତି

**ବୈଷ୍ଣବ ଚରଣ ସାମଲ (୧୯୩୯):** ଓଡ଼ିଆ ଭାଷା ଓ ସାହିତ୍ୟର ଜଣେ ପ୍ରତିଷ୍ଠିତ ବ୍ୟକ୍ତିତ୍ୱ । ସେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରୁ ପ୍ରଫେସର ଭାବେ ଅବସରପ୍ରାପ୍ତ । ତାଙ୍କର ପ୍ରଥମ ପୁସ୍ତକ 'କଳାସଂସ୍କୃତି ଓ ସାହିତ୍ୟ' ୧୯୭୧ ମସିହାରେ ଜଗନ୍ନାଥ ରଥ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ ହୋଇଥିଲା । ସେ ଆଠଟି ଶିଶୁସାହିତ୍ୟ ପୁସ୍ତକ, ନଅଟି ରମ୍ୟ ରଚନା ଓ ସାତଟି କବିତା ପୁସ୍ତକ ରଚନା କରିଛନ୍ତି । ୨୦୦୨ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଓ ୨୦୧୪ରେ ବିଷୁବ ସାହିତ୍ୟ ପୁରସ୍କାର ପାଇଛନ୍ତି ।

**ମଧୁସୂଦନ ପତି (୧୯୪୧) :** ତୁଳନାତ୍ମକ ଓ ସମୀକ୍ଷାତ୍ମକ ଭାଷା ସାହିତ୍ୟରେ ତାଙ୍କର ଅଗ୍ରଣୀ ଭୂମିକା ଥିଲା । ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ କାର୍ଯ୍ୟରତ ଥିଲେ । ଇଂରାଜୀ ଭାଷା ସାହିତ୍ୟରେ ଅନେକ ଗବେଷଣାରତ ଛାତ୍ରଙ୍କ ମାର୍ଗଦର୍ଶକ ହୋଇଥିଲେ । ସେ ୧୨ରୁ ଅଧିକ ସମାଲୋଚନା ଧର୍ମୀ ପୁସ୍ତକ ଇଂରାଜୀ ଓ ଓଡ଼ିଆ ଭାଷାରେ ରଚନା କରିଛନ୍ତି । ଅତିବଡି ଜଗନ୍ନାଥ ଦାସ ସମ୍ମାନରେ ଓଡ଼ିଶା ସାହିତ୍ୟ ଏକାଡେମୀ ୨୦୧୫ ମସିହାରେ ତାଙ୍କୁ ସମ୍ମାନିତ କରିଥିଲେ । ଗଙ୍ଗାଧର ମେହେରଙ୍କ 'ତପସ୍ୱିନୀ'କୁ ସେ ଇଂରାଜୀ ଭାଷାରେ ଅନୁବାଦ କରିଥିଲେ ।

**ଆଦିକନ୍ଦ ସାହୁ (୧୯୪୬):** କାଳଜୟୀ କବି ଭୀମ ଭୋଇଙ୍କର ଅନୁରକ୍ତ ଆଦିକନ୍ଦ ସାହୁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରୁ ପ୍ରଫେସର ଭାବରେ ସେବା ନିବୃତ୍ତ । ସ୍ୱଭାବ କବି ଗଙ୍ଗାଧର ମେହେର ଓ ସନ୍ଥକବି ଭୀମ ଭୋଇଙ୍କର ସାହିତ୍ୟ-କୃତି ପ୍ରତି ରୁଚି ରଖିଥିବା ଆଗ ଧାଡ଼ିର ଲେଖକମାନଙ୍କ ମଧ୍ୟରୁ ପ୍ରଫେସର ସାହୁ ଅନ୍ୟତମ । ପାଶ୍ଚାତ୍ୟ ଦେଶର ଅସ୍ତିତ୍ୱବାଦର ତତ୍ତ୍ୱ ଓ ମୂଲ୍ୟବୋଧ ଉପରେ ଆଗ୍ରହ ଓ ଭାବାବେଗ ତାଙ୍କର ଲେଖା ଗୁଡ଼ିକରେ ପରିଷ୍କାର ଭାବରେ ପରିସ୍ଫୁଟିତ ହୋଇଥାଏ ।

**ଅଧ୍ୟାପକ ବିଶ୍ୱରଞ୍ଜନ (୧୯୪୭) :** ସାରା ଓଡ଼ିଶାରେ ଜଣେ ସୁପରିଚିତ ବ୍ୟକ୍ତିତ୍ୱ । ସେ ବୃତ୍ତିରେ ରାଜନୀତି ବିଜ୍ଞାନରେ ଅଧ୍ୟାପନା କରୁଥିଲେ ମାତ୍ର ନିଶା ଥିଲା ସାହିତ୍ୟ ରଚନା । ଆଦ୍ୟଯୌବନରେ ଅନେକ ପ୍ରେମ କବିତା ଲେଖି ସଂକଳନ କରିଛନ୍ତି ଏବଂ ପରବର୍ତ୍ତୀ କାଳରେ କ୍ଷୁଦ୍ର ଗଳ୍ପ ରଚନା କରି ପାଠକୀୟ ଆଦୃତି ଲାଭ କରିଛନ୍ତି ।

ଜଣେ ସ୍ତମ୍ଭକାର ଭାବରେ 'ତୀର ଓ ତରଙ୍ଗ' ଇତ୍ୟାଦି ଲେଖି ସାଧାରଣ ଜନତାଙ୍କୁ ଅନେକ ସଚେତନତାର ବାର୍ତ୍ତା ଦେଇଛନ୍ତି । ତାଙ୍କର ରଚିତ ପୁସ୍ତକ ଗୁଡିକ ମଧ୍ୟରେ 'ଜୀବନ ଚମ୍ପୂ', 'ରାତି ପାହିଲେ ପୁରୀ', 'ତଥାପି ଆଲୋକ', 'ରେ ଆତ୍ମନ୍! ନିଦ୍ରା ପରିହରି', 'ଚିତ୍ତରୁ ଚୈତନ୍ୟ' ଓ 'ନଦୀର ତ୍ରିରଙ୍ଗ' ଇତ୍ୟାଦି ଅନ୍ୟତମ ।

**ବିଜୟ କୁମାର ନନ୍ଦ (୧୯୫୦) :** ଇଂରାଜୀ ବିଭାଗରେ ରାଜ୍ୟରେ ବିଭିନ୍ନ ସରକାରୀ କଲେଜରେ ଯଥା ସାମନ୍ତ ଚନ୍ଦ୍ର ଶେଖର କଲେଜ, ପୁରୀ ଓ ରେଭେନ୍ସା କଲେଜ ଇତ୍ୟାଦିରେ ଅଧ୍ୟାପନା କରି ପରିଶେଷରେ ଅନୁଗୁଳ ସ୍ୱୟଂଶାସିତ କଲେଜର ଅଧ୍ୟକ୍ଷଭାବରେ ସେବା ନିବୃତ୍ତ ହୋଇଛନ୍ତି । ଓଡ଼ିଆ ଓ ଇଂରାଜୀ ଭାଷା ସାହିତ୍ୟରେ ତାଙ୍କର ଅନେକ ଗୁଡ଼ିଏ ଉପାଦେୟ ପୁସ୍ତକ ଅଛି । ତନ୍ମଧ୍ୟରୁ ଓଡ଼ିଆରେ 'ସାହିତ୍ୟ ଓ ସଂସ୍କୃତି', ଇଂରାଜୀରେ "J.B. Pattnaik : The Leader Extraordinaire", କେନ୍ଦ୍ର ସାହିତ୍ୟ ଅକାଦେମୀର Monograph Seriesରେ 'Sachi Routray', 'Biswanath Kar' ଓ 'Bidyutprava Devi' ଇତ୍ୟାଦି ରଚନାମାନ ରହିଛି । ତାଙ୍କର ଅନେକ ପ୍ରବନ୍ଧ ଜାତୀୟ ଓ ଆନ୍ତର୍ଜାତିକ ପତ୍ରପତ୍ରିକାରେ ପ୍ରକାଶିତ ।

**ସତ୍ୟାନନ୍ଦ ସ୍ୱାଇଁ (୧୯୫୨) :** ଇଂରାଜୀ ବିଭାଗର ରିଡ଼ର ଭାବରେ ଓଡ଼ିଶାର ବେସରକାରୀ କଲେଜରୁ ଶିକ୍ଷା ଦାନରେ ସେବା ନିବୃତ୍ତ । ଭାରତୀୟ ଇଂରାଜୀ ଭାଷା ସାହିତ୍ୟରେ ବିଶେଷ ଭାବରେ ରବୀନ୍ଦ୍ରନାଥ ଠାକୁରଙ୍କର ଉପନ୍ୟାସରେ ନାରୀଚରିତ୍ର ଓ ମୂଲ୍ୟବୋଧ ଉପରେ ତାଙ୍କର ଗବେଷଣା । ତାଙ୍କର ଅନେକ ଉପାଦେୟ ପୁସ୍ତକ ମଧ୍ୟରୁ 'Mahima Papers', 'Mahima Concept of Salvation', "ଜଗତଉଦ୍ଧାର ହେଉ : ଭୀମ ଭୋଇଙ୍କର କୃତି" ଇତ୍ୟାଦି ପୁସ୍ତକ ଉଲ୍ଲେଖଯୋଗ୍ୟ । ଭୀମ ଭୋଇଙ୍କ 'ସ୍ତୁତି ଚିନ୍ତାମଣି'କୁ ସେ ଇଂରାଜୀରେ ଅନୁବାଦ କରିଛନ୍ତି ଯାହା ୨୦୨୦ ମସିହାରେ ଓଡ଼ିଶା ସାହିତ୍ୟ ଅକାଡ଼େମୀ ଦ୍ୱାରା ପ୍ରକାଶିତ । ମହିମା ଧର୍ମ ଓ ଭୀମ ଭୋଇଙ୍କ ପ୍ରତି ସେ ଏକ ସମର୍ପିତ ବ୍ୟକ୍ତିତ୍ୱ ।

**ଶରତ ଚନ୍ଦ୍ର ପାଣିଗ୍ରାହୀ (୧୯୫୩):** ଉତ୍କଳ ବିଶ୍ୱବିଦ୍ୟାଳୟ ଦର୍ଶନଶାସ୍ତ୍ର ବିଭାଗରୁ ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଭାବରେ କାର୍ଯ୍ୟନିର୍ବାହ କରି ସେବାନିବୃତ୍ତ । ସଂପ୍ରତି କିସ୍ ମାନିତ ବିଶ୍ୱବିଦ୍ୟାଳୟରେ Emeritus Professor ଭାବରେ କାର୍ଯ୍ୟରତ । ତାଙ୍କର ଅନେକ ରଚନା ମଧ୍ୟରେ ଅଛି 'The Philosophy of Bhima Bhoi

and Mahima Dharma', 'ନାନକ', 'କବୀର', 'ଗୌତମବୁଦ୍ଧ', 'ମହାବୀର ଜୈନ', 'ଉପନିଷଦ ଦର୍ଶନ' ଓ 'The Concept of Yoga in Bhagabat Gita' ।

**ଦେବନ୍ଦ୍ର କୁମାର ଦାଶ (୧୯୫୪) :** ତାଙ୍କର ଅଧ୍ୟୟନ ସମ୍ବଲପୁର ବିଶ୍ୱବିଦ୍ୟାଳୟ, ବିଶ୍ୱଭାରତୀରେ ଓ ଗବେଷଣା ଶାନ୍ତିନିକେତନରେ। ଓଡ଼ିଶାର ବିଭିନ୍ନ କଲେଜରେ ଅଧ୍ୟାପନା କରି ଓଡ଼ିଆ ପ୍ରାଧ୍ୟାପକ ଭାବରେ ସେବା ନିବୃତ୍ତ। ମୋଟା ମୋଟି ୨୫ରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରିଛନ୍ତି ଓ ତାଙ୍କର ସାହିତ୍ୟ କୃତି ପାଇଁ ଅନେକ ପୁରସ୍କାର ପାଇଛନ୍ତି। ତାଙ୍କ ଲେଖାଗୁଡ଼ିକ ମଧ୍ୟରୁ 'ଗୋଟିଏ ଫୁଲ ଫୁଟିବାର କାହାଣୀ', 'ଗଙ୍ଗାଧର: କବିତା ଓ କବିଆତ୍ମା', 'ଫକିର ମୋହନ ଗ୍ରନ୍ଥାବଳୀ' (୩ ଖଣ୍ଡ), 'ମଧୁସୂଦନ ଦାସ ସଂକଳନ' ଓ 'ମଧୁସୂଦନ ଗ୍ରନ୍ଥାବଳୀ' ଇତ୍ୟାଦି ଅନ୍ୟତମ। ସେ ଜଣେ ଆଗଧାଡ଼ିର ସମାଲୋଚକ ଭାବରେ ସାହିତ୍ୟ ଜଗତରେ ଖ୍ୟାତି ଅର୍ଜନ କରିଛନ୍ତି।

**ବସନ୍ତ କୁମାର ପଣ୍ଡା (୧୯୫୫) :** ଓଡ଼ିଆସାହିତ୍ୟର ଜଣେ ସମାଲୋଚକ, ଅନୁବାଦକ ଓ ଭାଷାବିତ୍ ଭାବରେ ସୁପରିଚିତ। ଭୁବନେଶ୍ୱରସ୍ଥିତ ରିଜିଓନାଲ କଲେଜରୁ ଓଡ଼ିଆ ଭାଷାର ପ୍ରଫେସର ଭାବରେ କାର୍ଯ୍ୟ କରି ସେବା ନିବୃତ୍ତ ହେଲାପରେ କିସ୍ ବିଶ୍ୱବିଦ୍ୟାଳୟରେ ଗୋପବନ୍ଧୁ ରିସର୍ଚ୍ଚ ଚେୟାର ପ୍ରଫେସର ଭାବରେ କାର୍ଯ୍ୟ ନିର୍ବାହ କରିଥିଲେ। ସଂପ୍ରତି ଭାରତ ସରକାରଙ୍କର ସେ ଉତ୍କର୍ଷ ଶାସ୍ତ୍ରୀୟ ଭାଷା ସାହିତ୍ୟ ପ୍ରତିଷ୍ଠାନର ନିର୍ଦ୍ଦେଶକ ଭାବରେ କାର୍ଯ୍ୟରତ।

**ପ୍ରଦୀପ କୁମାର ପଣ୍ଡା (୧୯୫୫):** ସେ ପେଷାରେ ଅଧ୍ୟାପନା କରୁଥିଲେ ମଧ୍ୟ ନିଶାରେ କବିତା ଲେଖୁଥିଲେ। ଓଡ଼ିଆ ସାହିତ୍ୟରେ ଆଧୁନିକ କବିଭାବରେ ସୁପରିଚିତ। ୨୦୦୬ ମସିହାରେ ତାଙ୍କର କବିତା ସଂକଳନ 'କାକପଦ' ପ୍ରକାଶିତ ହୋଇଥିଲା ୨୦୧୬ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତାଙ୍କର 'ପୂର୍ଣ୍ଣାନନ୍ଦ ଦାନୀଙ୍କ ନିର୍ବାଚିତ ଗଳ୍ପ' ପୁସ୍ତକ ପ୍ରକାଶନ କରିଛନ୍ତି। ତାଙ୍କର ସଦ୍ୟତମ କବିତା ସଂକଳନ 'ଯଦି ସେ ଈଶ୍ୱର ହୋଇଥାନ୍ତେ' ୨୦୨୨ ମସିହାରେ ମୁକ୍ତିଲାଭ କରିଛି। ସଂପ୍ରତି ସେ ଗଙ୍ଗାଧର ମେହେର ବିଶ୍ୱବିଦ୍ୟାଳୟରେ ଭୀମ ଭୋଇ ଗବେଷଣା ଚେୟାର ପ୍ରଫେସର ଭାବରେ ଅବସ୍ଥାପିତ।

**ହରିଶ୍ଚନ୍ଦ୍ର ସାହୁ (୧୯୫୮):** ସେ ସଂପ୍ରତି କିସ୍ ମାନିତ ବିଶ୍ୱବିଦ୍ୟାଳୟରେ ଭୀମ ଭୋଇ ଗବେଷଣା ଚେୟାର ପ୍ରଫେସର ଭାବରେ କାର୍ଯ୍ୟରତ । ଦର୍ଶନ ଶାସ୍ତ୍ରରେ ସେ ଅନେକ ଉପାଦେୟ ପୁସ୍ତକ ଲେଛନ୍ତି । କିସ୍ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ଦୁଇ ଗୋଟି ଇଂରାଜୀ ସଂକଳନ 'The Philosophy of Bhima Bhoi and Mahima Dharma' ଓ 'The Philosophical Reflections on Bhima Bhoi and Mahima Dharma' ଭୀମ ଭୋଇଙ୍କ ଦର୍ଶନ, ସାହିତ୍ୟ କୃତି ଓ ତତ୍କାଳୀନ ସାମାଜିକ ବ୍ୟବସ୍ଥା ଉପରେ ଆଧାରିତ ।

**ବିଜୟାନନ୍ଦ ସିଂହ (୧୯୫୯) :** ଗବେଷକ, ସାହିତ୍ୟ ସମାଲୋଚକ ଓ ସାରସ୍ୱତ ସଂଗଠକ ଭାବରେ ପରିଚିତ । ସଂପ୍ରତି କିସ୍ ମାନିତ ବିଶ୍ୱବିଦ୍ୟାଳୟରେ ଗୋପବନ୍ଧୁ ଦାସ ଗବେଷଣା ଚେୟାରର ପ୍ରଫେସର ଭାବରେ ଅବସ୍ଥାପିତ ଓ କେନ୍ଦ୍ର ସାହିତ୍ୟ ଅକାଡ଼େମୀର ଓଡ଼ିଆ ଭାଷାର ଆବାହକ ଭାବରେ କାର୍ଯ୍ୟରତ । ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ପାଇଁ ତାଙ୍କର ଜୀବନ ଉତ୍ସର୍ଗୀକୃତ ।

**କେଦାର ମିଶ୍ର (୧୯୭୨):** ସେ ସମକାଳୀନ ଓଡ଼ିଆ କବିତାର ଏକ ପ୍ରତିଷ୍ଠିତ ଓ ପ୍ରଭାବଶାଳୀ ସ୍ୱର । କବିତା ସହିତ ଗଦ୍ୟ ରଚନା, ଗବେଷଣା, କଳାସମୀକ୍ଷା ଓ ସାମ୍ବାଦିକତା କ୍ଷେତ୍ରରେ ତାଙ୍କର ଉଲ୍ଲେଖନୀୟ ଅବଦାନ ରହିଛି । ୧୯୮୭ରେ ତାଙ୍କର ପ୍ରଥମ କବିତା ପ୍ରକାଶିତ ହୋଇଥିଲା । ତାଙ୍କର କବିତା ସଂକଳନ : 'ଶବ୍ଦକୁ ଋରିପାଦ', 'ଆଶାସୂକ୍ତ', 'ଶୂନ୍ୟ ଅଭିସାର', ଗଦ୍ୟ ସଂକଳନ ମଧ୍ୟରେ 'ବାଗ୍ ବିଶେଷ', 'ଶେଷ ସ୍ପର୍ଶ' ଇତ୍ୟାଦି ପାଠକୀୟ ଆଦୃତି ଲାଭ କରିଛି । ଇଂରାଜୀ ରଚନା ମଧ୍ୟରେ 'Bhima Bhoi : Verses From the Void', 'Folk Dance of Odisha' ଇତ୍ୟାଦି ପାଠକଙ୍କ ଦ୍ୱାରା ପ୍ରଶଂସିତ । ଅନେକ ପୁରସ୍କାର ଓ ସମ୍ମାନର ସେ ଅଧିକାରୀ ।

–୦–

ସନ୍ଥକବି ଭୀମ ଭୋଇ ଦିବ୍ୟଦ୍ରଷ୍ଟା । ନିରାକାର ମହିମା ସ୍ୱାମୀଙ୍କ କୃପାରୁ ସେ ଦିବ୍ୟଜ୍ଞାନ ଲାଭକରି ସମକାଳୀନ ସମାଜରେ ମଣିଷର ଅଧପତନକୁ ରକ୍ଷା କରିବାରେ କର୍ଣ୍ଣଧାର ସାଜିଥିଲେ । ପ୍ରଚଳିତ ଉଚ୍ଚ-ନୀଚ ଭାବ, ଜାତିଭେଦ-ଜାତିପ୍ରଥା, ପିତୁଳା ପୂଜା ଓ କୁସଂସ୍କାର ବିରୁଦ୍ଧରେ ସେ ଦୃଢ଼ଭାବେ ସ୍ୱରଉତ୍ତୋଳନ କରି କଳୁଷିତ ସମାଜର ଉତ୍ଥାନ ପାଇଁ ଲେଖି ଚାଲିଥିଲେ ରାଶି ରାଶି ଜଣାଣ, ଭଜନ ଓ ଚଉତିଶା । ଭୀମ ଭୋଇଙ୍କ ପ୍ରତିଷ୍ଠିତ ସାହିତ୍ୟ ଓ ଦାର୍ଶନିକ ଚିନ୍ତନର ସମୀକ୍ଷାତ୍ମକ ଦୃଷ୍ଟିଭଙ୍ଗୀରେ ରଚିତ ପ୍ରବନ୍ଧ ଗୁଡ଼ିକ 'ଦିବ୍ୟଦ୍ରଷ୍ଟା ଭୀମ ଭୋଇ' ପୁସ୍ତକରେ ସ୍ଥାନିତ ହୋଇଅଛି ।

ସ୍ଥାବର ଜଙ୍ଗମ କୀଟରୁ ପତଙ୍ଗ
ଚାହିଁଦେଲେ ଅନୁସରି ।
ସକଳ ଘଟରେ ପୂରି ସମାନରେ
ନୋହେ ସାନବଡ଼ କରି ॥

– ସନ୍ଥକବି ଭୀମ ଭୋଇ




କିସ୍ ମାନିତ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

Price ₹400/-

ISBN 978-81-957941-0-2

